ନୀତିପୂର୍ଣ୍ଣ

# ଲୋକନାଥ ଗ୍ରନ୍ଥାବଳୀ

(ଦ୍ୱିତୀୟ ଭାଗ)

ଂ କବି ଡ଼ାକ୍ତର ଲୋକନାଥ ମିଶ୍ର

# ନୀତିପୂର୍ଣ୍ଣ
# ଲୋକନାଥ ଗ୍ରନ୍ଥାବଳୀ
## (ଦ୍ୱିତୀୟ ଭାଗ)


ଲେଖକ :
୰ କବି ଡା. ଲୋକନାଥ ମିଶ୍ର



ପ୍ରକାଶକ :
ଶ୍ରୀ ରାମଚନ୍ଦ୍ର ମିଶ୍ର, I.A.S.
(ଅବସରପ୍ରାପ୍ତ)



ସଂପାଦନା :
ପ୍ରାଧ୍ୟାପକ ଶ୍ରୀ ଅନ୍ନଦାଚରଣ ମିଶ୍ର
ଏମ୍.ଏ. (ଓଡ଼ିଆ), ଏମ୍.ଏ. (ହିନ୍ଦୀ) (ଅବସରପ୍ରାପ୍ତ)
ଖଲ୍ଲିକୋଟ (ସ୍ୱୟଂଶାସିତ) ମହାବିଦ୍ୟାଳୟ
ବ୍ରହ୍ମପୁର



ମୁଦ୍ରଣ :
ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର-୧

ମୂଲ୍ୟ 75/- ଟଙ୍କା ମାତ୍ର







ଁ କବି ଡ଼ାକ୍ତର ଲୋକନାଥ ମିଶ୍ର

ଆବିର୍ଭାବ : ଏପ୍ରେଲ୍ ୪ ତାରିଖ, ୧୯୦୯

ତିରୋଧାନ : ଜାନୁୟାରୀ ୧୦ ତାରିଖ, ୧୯୯୮

# ॥ ସୂଚୀପତ୍ର ॥

ବିଷୟ　　　　　　　　　　　　　　　　　ପୃଷ୍ଠା

## ପ୍ରଥମ ସ୍ତବକ



## ଦ୍ୱିତୀୟ ସ୍ତବକ

### ପ୍ରଥମ ସର୍ଗ



### ଦ୍ୱିତୀୟ ସର୍ଗ



### ତୃତୀୟ ସର୍ଗ

| ବିଷୟ | | ପୃଷ୍ଠା |
|---|---|---|



## ଚତୁର୍ଥ ସର୍ଗ



# ତୃତୀୟ ସ୍ତବକ

## ଏଣୁ ତେଣୁ

## ଚତୁର୍ଥ ସ୍ତବକ



## ପଞ୍ଚମ ସ୍ତବକ



## ଷଷ୍ଠ ସ୍ତବକ

### ଚେତନାବଳୀ-୨



୦୦୦

# ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ
## (ଦ୍ୱିତୀୟ ଭାଗ)



### ସଂପାଦନା ଓ ପ୍ରକାଶନର ପୃଷ୍ଠଭୂମି :—

ଆଲୋଚ୍ୟ – "ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ" (ଦ୍ୱିତୀୟ ଭାଗ)ର ଚଳନ୍ତି ପ୍ରକାଶନ ଓ ସମ୍ପାଦନା ସମ୍ପର୍କରେ ଏକ ଆକସ୍ମିକ ପୃଷ୍ଠଭୂମି ରହିଛି । ତାହା ଏହି ଯେ ଯଦିଓ ସ୍ୱର୍ଗତ କବି ବରେଣ୍ୟ ଡାକ୍ତର ଲୋକନାଥ ମିଶ୍ର ମୋର ପୂର୍ବ ପରିଚିତ, ବର୍ଷୀୟାନ ଗୁରୁଜନ ଅଟନ୍ତି ତଥାପି ସେ ନିଜ ମୃତ୍ୟୁର ପୂର୍ବ ସଂଧ୍ୟାରେ – ଏହି ବହିଟିରେ ସ୍ଥାନ ପାଇଥିବା ଏକାଧିକ ରଚନାବଳୀ କିମ୍ବା ପାଣ୍ଡୁଲିପି ଇତ୍ୟାଦିକୁ ଏକତ୍ରିତ କରି "ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ" (ଦ୍ୱିତୀୟ ଭାଗ) ରୂପରେ ଛାପିବା ପାଇଁ ଅନ୍ତିମ ଇଚ୍ଛା ପ୍ରକାଶ କରିଥିଲେ । ତେଣୁ ସେ ଏ ସଂସାରରୁ ଚିର ବିଦାୟ ନେବା ପୂର୍ବରୁ ନିଜର ସୁଯୋଗ୍ୟ ପୁତ୍ର ଶ୍ରୀଯୁକ୍ତ ରମଚଂଦ୍ର ମିଶ୍ର, **I.A.S. (Retd.)** ଙ୍କ ମାଧ୍ୟମରେ ମୋତେ ବ୍ୟକ୍ତିଗତ ରୂପରେ ସଂକଳିତ ସାମଗ୍ରୀକ ରଚନାର ସମ୍ପାଦନା ଓ ପ୍ରକାଶନର ଗୁରୁଦାୟିତ୍ୱ ଅର୍ପଣ କରି ଯାଇଥିଲେ । ମୁଁ ମଧ୍ୟ ସେହି ଅନୁରୋଧକୁ ସସଂଭ୍ରମେ ନିର୍ବାହ କରିବା ଲାଗି ସ୍ୱୀକୃତି ଜଣାଇଥିଲି । ସେହି ବ୍ୟକ୍ତ ଏବଂ ଲୁକ୍କାୟିତ ଧାରାବାହିକ ପ୍ରକ୍ରିୟାର ଶେଷ ପରିଣତି ହେଉଛି, ଆଜି ସଦ୍ୟ ହସ୍ତଲବ୍ଧ ଗ୍ରନ୍ଥାବଳୀ ପୁସ୍ତକଟି । ଏହା ସଂକଳିତ, ସଂଗୃହିତ ଏବଂ ସମ୍ପାଦିତ ହୋଇ ଆଜି ଦେଶ–ଜାତି–ଭାଷାଭାଷୀ ତଥା ସାହିତ୍ୟ ଲିପ୍ସୁ ବିଭିନ୍ନ ପାଠକ-ପାଠିକାଙ୍କର କରକମଳରେ ସମର୍ପିତ ରହିଲା ।

ଏହି ସମ୍ବନ୍ଧରେ ସ୍ୱର୍ଗତ କବି ଲୋକନାଥଙ୍କର ବ୍ୟକ୍ତିଗତ ରଚନା ପଦ୍ଧତି ଓ ଅଧ୍ୟବସାୟ ସମ୍ପର୍କରେ ଏଠାରେ ସାମାନ୍ୟ ସୂଚନା ଦେବା ପ୍ରାସଂଗିକ ମନେ କରେ । ତା ଭିତରୁ ପ୍ରଥମ କଥା ଏହି ଯେ ସ୍ୱର୍ଗତ ମିଶ୍ର ଜଣେ ନିରଳସ ଅଧ୍ୟବସାୟୀ ପ୍ରତିଭାବାନ ବ୍ୟକ୍ତି ଥିଲେ । ସେ ଦୈନନ୍ଦିନ ଜୀବନରେ ରୋଗୀ ଚର୍ଚ୍ଚା ଏବଂ ସେବା କରିସାରି ପ୍ରତ୍ୟେକ ଦିନ ସଂଧ୍ୟା ୯ଟାରେ ଶୋଇ ପଡୁଥିଲେ ଏବଂ ରାତି ଦୁଇଟା ପରେ ଶଯ୍ୟାରୁ ଉଠିପଡ଼ି ନିତ୍ୟ ନୈମିତ୍ତିକ ରୂପରେ କିମ୍ବା ଅଭ୍ୟାସ ଚେତନା ବଳରେ ଯାହାକିଛି ମନକୁ ଛୁଇଁଲା ତାକୁ ନିର୍ଭୀକ ରୂପରେ ଲେଖିଯିବା ଲାଗି ଉଦ୍ୟମୀ ଥିଲେ । ଏହା ତାଙ୍କରି ନୀତିଗତ ଓ ପ୍ରକୃତିଗତ ଅଭ୍ୟାସ ଥିଲା । ସୁତରାଂ ଆଲୋଚ୍ୟ ସଦ୍ୟ ପ୍ରକାଶିତ ଗ୍ରନ୍ଥାବଳୀ (ଦ୍ୱିତୀୟ ଭାଗ) ଭିତରେ କୌଣସି ସ୍ଥାୟୀ ବିଷୟବସ୍ତୁର କ୍ରମାନୁୟତା ନାହିଁ । ବରଂ ସେହି ସବୁ ରଚନା ସୃଷ୍ଟି ବିକ୍ଷିପ୍ତ ଏବଂ ଅସଂପୃକ୍ତ ରଚନାର ସମାହାର ମାତ୍ର । ଏଥିରେ ବ୍ୟବହୃତ ହୋଇଥିବା କାବ୍ୟ ସୃଷ୍ଟିର ସମ୍ପାଦନା ଭିତରେ ସାମଗ୍ରୀକତା, ଅସ୍ୱାଭାବିକତା ତଥା କବି ପ୍ରାଣର ଆକୁଳ ନିବେଦନ ମାତ୍ର ଦେଖିବାକୁ ମିଳେ । ତଥାପି

୰ କବିଙ୍କର ଶେଷ ଇଚ୍ଛା ପ୍ରକାରେ ଉପଲବ୍ଧ ଯାବତୀୟ ସାମଗ୍ରୀକୁ ଏକାଠି କରି ରଖି ଯତ୍ପରେନାସ୍ତି ବିଭଗ ରଚନା କରି ପ୍ରକାଶିତ 'ସ୍ତବକ' ରୂପେ ଛାପାଯାଇଛି । ହୁଏତ ୰ କବି ଧବ-ବିଧେରତା, ଉଚ୍ଛ୍ୱାସ ଏବଂ ଅନ୍ତସରତା ଭିତରେ କାହିଁ କେତେବେଳେ ପୁନରୁକ୍ତି ଦୋଷ କରି ବସିଛନ୍ତି ତ ଅନ୍ୟ କେଉଁ ଅବସ୍ଥା ଭିତରେ ନିଜ ପୂର୍ବ ବର୍ଣ୍ଣିତ ସାମଗ୍ରୀକୁ ଭିନ୍ନ ସ୍ଥଳରେ ଅଧିକ ମାତ୍ରାରେ ଲେଖିଯିବା ପାଇଁ ଆଗ୍ରହୀ ହୋଇ ପଡ଼ିଛନ୍ତି । ମାତ୍ର ତାଙ୍କରି ମୂଳଧ୍ୟେୟ କିମ୍ବା ଲକ୍ଷ୍ୟ ଏକ ଓ ଅଭିନ୍ନ ଥିଲା । ତାହାହିଁ ପ୍ରକାଶନା ଓ ସମ୍ପାଦନା କ୍ଷେତ୍ରରେ ଜଟିଳତା ସୃଷ୍ଟି କରିଛି । ତଥାପି ୰ କବିଙ୍କର ବୃତ୍ତି, ପ୍ରବୃତ୍ତି ଓ ସାଧନାକୁ ପ୍ରଶଂସା ନକରି ରହି ହେଉନାହିଁ । ଏହି ଦୃଷ୍ଟିରୁ ସ୍ୱର୍ଗତ ଲୋକନାଥ ବାବୁ ଦୀର୍ଘକାଳ ଧରି ପ୍ରାଦେଶିକ ତଥା ଜାତୀୟ କ୍ଷେତ୍ରରେ ଯଶସ୍ୱୀ ଓ ସମ୍ମାନିତ ରହିବେ । ତାଙ୍କରି ଶ୍ରମସାଧନା ଦେଶଦଶର ଉପକାରରେ ଲାଗିବ ଏଥିରେ କିଛି ସନ୍ଦେହ ନାହିଁ ।

## ଜୀବନ-ସାଗର-ତୀରେ :—

ଗତ ତା ୧୦-୧-୯୮ ରିଖ ଶନିବାର ରାତ୍ରିଟି ଥିଲା ଏକ କାଳରାତ୍ରୀ କିମ୍ବା କଠୋର ଦୁଃସମ୍ବାଦର ବାର୍ତ୍ତାବହ । କାରଣ ସେହି ରାତ୍ରୀର ୨ ଘଣ୍ଟା ବେଳେ ବିଶିଷ୍ଟ ସମାଜସେବୀ, ଧୁରିକିଧ୍ସକ, ଗାନ୍ଧୀବାଦୀ ନେତା, ବହୁ ପ୍ରତିଭାର ଅଧିକାରୀ, ସମାଜରେ ସୁପ୍ରତିଷ୍ଠିତ ବ୍ୟକ୍ତିତ୍ୱ ଡାକ୍ତର ଲୋକନାଥ ମିଶ୍ରଙ୍କର ଆସିକା ସହରର ମହାତ୍ମା ଗାନ୍ଧୀ ରୋଡସ୍ଥ ବାସଭବନରେ ଏକ ଆକସ୍ମିକ ମୃତ୍ୟୁ ଘଟିଲା । ଏହି ଦୁଃସମ୍ବାଦଟି ତା'ପରଦିନ ପ୍ରଭାତରୁ ଚତୁର୍ଦ୍ଦିଗରେ ସ୍ପଷ୍ଟ ହୋଇଗଲା । ସଭା ସମିତି, ବେତାର, ପତ୍ରପତ୍ରିକା ତଥା ଲୋକ ତୁଣ୍ଡରେ ଏହା ଦୁଃଖର ଲହରୀ ଖେଳାଇ ଦେଇଥିଲା । ଅବଶ୍ୟ ପବିତ୍ର ଗୀତାର ମହତ୍‌ବାଣୀ ଅନୁସାରେ – "**ଜାତସ୍ୟ ହି ଧ୍ରୁବୋମୃତ୍ୟୁ**" .... .... । ତଥାପି ଏହାର ଅନ୍ତରାଳରେ ବହୁତ କିଛି ସମ୍ଭାବନା ଓ ଅବଦାନରାଶି ଲୁଚି ଯାଇଛି । କାରଣ କବିବର ରାଧାନାଥ ରାୟଙ୍କ ଭାଷାରେ ମଧ୍ୟ ଲେଖିବା କଥା ଯେ :–

"ରହି ନାହିଁ କେହି ରହିବ ନାହିଁଟି
ଭବରଙ୍ଗ ଭୂମି ତଳେ;
ସର୍ବେ ନିଜ ନିଜ ଅଭିନୟ ସାରି
ବାହୁଡ଼ିବେ କାଳ ବଳେ ।"

x x x x

ଏହି ମଣିଷ ଜୀବନର ସାଂସାରିକ କର୍ମଜାଲ ବା ଅଭିନୟ ହିଁ ତାହାରି ଆତ୍ମଶକ୍ତିର ଯଥାର୍ଥ ମୂଲ୍ୟାୟନ କରିଥାଏ । ଏହା ପ୍ରତ୍ୟେକ ବ୍ୟକ୍ତିର ଚିନ୍ତାଶୀଳ ମାନସିକ ସ୍ତରରେ ସ୍ମରଣୀୟତାକୁ କେନ୍ଦ୍ର କରି ଜୀବନ୍ତ ଧାବରେ ନାଚି ଉଠେ । ସେହି ଦୃଷ୍ଟିରୁ ଦେଖିଲେ ସ୍ୱର୍ଗତ ଡାକ୍ତର ଲୋକନାଥ ବାବୁ ବିଭିନ୍ନ ଦୃଷ୍ଟିରୁ ଅସାଧାରଣ ବିଚକ୍ଷଣ ପ୍ରତିଭା ଓ ଗୁଣାବଳୀର ଅଧିକାରୀ ଥିଲେ । ନିମ୍ନରେ ସଂକ୍ଷିପ୍ତ ଧାବରେ ତାହା ଦୃଷ୍ଟାନ୍ତ ସାପେକ୍ଷ ମନେହୁଏ ।

ତାଙ୍କ ବ୍ୟକ୍ତିଗତ ଜୀବନୀରୁ ଜଣାଯାଏ ଯେ ସ୍ୱର୍ଗତ ମିଶ୍ର ତା ୪-୪-୧୯୦୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ମାଟ୍ରିକ୍ ପରୀକ୍ଷା ପରେ ୧୯୩୨ ମସିହାରେ, ବ୍ରିଟିଶ ଅମଳରେ ସର୍ବପ୍ରଥମେ ପୋଲିସ୍ ବିଭାଗରେ ଚାକିରୀ ଆରମ୍ଭ କରିଥିଲେ । କିନ୍ତୁ ତତ୍କାଳୀନ ଯୁଗରେ ଇଂରେଜମାନଙ୍କ ଦ୍ୱାରା ଭାରତୀୟ ଜନତା ଉପରେ ଅକଥନୀୟ ଦମନ ଲୀଳା, ଅନ୍ୟାୟ ଓ ଅତ୍ୟାଚାର ଚାଲିଥାଏ । ତେଣୁ ସ୍ୱାଭିମାନୀ, ସ୍ୱାଧୀନଚେତା ଲୋକନାଥ ବାବୁ ସେହି ପୋଲିସ୍‌ରାଜ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି, ଉକ୍ତ ଚାକିରୀରୁ ଇସ୍ତଫା ଦେଇଥିଲେ । ଏହାଦ୍ୱାରା ସମାଜରେ ଏକ ତୀବ୍ର ଏବଂ ସଂଗ୍ରାମୀ ଜନ-ସଚେତନତା ସୃଷ୍ଟି କରିବା ତାଙ୍କରି ଏକମାତ୍ର ଅଭିପ୍ରାୟ ଥିଲା । ତେଣୁ ସେ ଜୀବନରେ ଚିକିତ୍ସା ବୃତ୍ତିକୁ ଏକମାତ୍ର ସ୍ୱାଧୀନ ବ୍ରତ ରୂପେ ଗ୍ରହଣ କରି ନେଇ ପରବର୍ତ୍ତୀ ଯୁଗରେ ଲୋକପ୍ରିୟ ଏବଂ ଅମୃତହସ୍ତା ଯଶସ୍ୱୀ ଡାକ୍ତର ହୋଇ ପାରିଥିଲେ ।

ଏହି ଦୃଷ୍ଟିରୁ ସେ ନିଜର ପୂର୍ବ ବାସସ୍ଥଳୀ କିମ୍ବା ଜନ୍ମପୀଠ ନୟାଗଡ଼କୁ ତ୍ୟାଗ କରି ଆସି ସ୍ଥାୟୀ ଭାବରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ 'ଆସିକା'ରେ ବସବାସ ଆରମ୍ଭ କରିଥିଲେ । ତାହାହିଁ ତାଙ୍କର ଭିଟାମାଟିରେ ପରିଣତ ଓ ପରିବର୍ତ୍ତିତ ହୋଇ ଯାଇଥିଲା । ସେଠାରେ ରହି ସେ ହୋମିଓପ୍ୟାଥିକ୍ ଚିକିତ୍ସା ଆରମ୍ଭ କରି ଦେଇଥିଲେ । ସେ ଜଣେ ନିରଳସ, କର୍ମଠ, ଅମୃତହସ୍ତା ଡାକ୍ତର ଥିବା ଯୋଗୁଁ କ୍ରମଶଃ ସାରା ଦେଶଦଶରେ ପ୍ରଚାରିତ, ପ୍ରତିଷ୍ଠିତ ଓ ସମ୍ମାନିତ ଖ୍ୟାତିସମ୍ପନ୍ନ ହୋଇ ପାରିଥିଲେ ।

ଏତଦ୍‌ବ୍ୟତୀତ ସେ ୧୯୬୨ ମସିହାରେ ଆସିକାରେ ଆୟୋଜିତ ହୋଇଥିବା "ପ୍ରଜାତନ୍ତ୍ର ପତ୍ରିକାର ରଜତ ଜୟନ୍ତୀ" ଉତ୍ସବର ମଧ୍ୟ ଆୟୋଜନ କରିଥିଲେ । ଏହି ଅନୁଷ୍ଠାନରେ ସେ ଜଣେ ସକ୍ରୀୟ ଉଦ୍ୟୋକ୍ତା ମଧ୍ୟ ରହିଥିଲେ । ଫଳରେ ସଂଗଠନକାରୀ ତାଙ୍କରି ଭୂମିକାରେ ମୁଗ୍ଧ ହୋଇ ସ୍ୱର୍ଗତ ଡକ୍ଟର ମହତାବଙ୍କୀ ତାଙ୍କୁ ନିଜର ବିଶ୍ୱସ୍ତ ଏବଂ ଆତ୍ମୀୟ କରି ନେଇଥିଲେ । ତାହାହିଁ ଦୁଇଟି ମହାନ୍ ସ୍ୱର୍ଗତ ଆତ୍ମାର ମିଳନବିନ୍ଦୁ ଥିଲା । ପରବର୍ତ୍ତୀ କାଳରେ ସେହି ଧାରା କ୍ରମଶଃ ସାହିତ୍ୟିକ ଓ ରାଜନୈତିକ ଜୀବନର ସୌହାର୍ଦ୍ଦ୍ୟରେ ପରିଣତ ହୋଇ ଆଜୀବନ ସ୍ଥାୟୀ ବନ୍ଧୁତାରେ ଗଢ଼ି ଉଠିଥିଲା ।

ସାହିତ୍ୟ କ୍ଷେତ୍ରରେ ସ୍ୱର୍ଗତ ମିଶ୍ରଙ୍କର ଯେଉଁ ନିପୁଣତା, ଆଗ୍ରହ ଓ ସାଧନା ଥିଲା, ତାହା ତାଙ୍କୁ ଜୀବନର ଅବଶିଷ୍ଟ କାଳରେ ଏକ ସୁପ୍ରସିଦ୍ଧ ସମ୍ମାନିତ ସାରସ୍ୱତ ସାଧକରେ ପରିଣତ କରିଦେଲା । ଫଳରେ ସେ ଶତାଧିକ କବିତା ଗୁଚ୍ଛର ସଂକଳନ ଓ ରଚନା କରି ଯାଇଛନ୍ତି । ଆଜି ସେଥି ଭିତରୁ କେତୋଟି ମାତ୍ର ଅଂଶକୁ ସଂଗ୍ରହ କରି ରଖି ଆଲୋଚ୍ୟ "ନୀତିପୂର୍ଣ୍ଣ ଲୋକନାଥ ଛନ୍ଦାବଳୀ" (ଦ୍ୱିତୀୟ ଭାଗ)ର ପ୍ରକାଶନ ସମ୍ଭବପର ହୋଇ ପାରିଛି । କବିଙ୍କ ରଚିତ ଉପାଦେୟ ସୃଷ୍ଟିସମ୍ଭାର ଲାଗି ସେ ପ୍ରାଦେଶିକ ସ୍ତରରେ ସାହିତ୍ୟ ଏକାଡେମୀ ଦ୍ୱାରା ତଥା ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତରଫରୁ ମଧ୍ୟ ସସମ୍ମାନରେ ଯଥୋଚିତ ଭାବରେ ପ୍ରଶଂସିତ ରହି ପାରିଛନ୍ତି । ତାଙ୍କୁ ଏହି ଦୃଷ୍ଟିରୁ ବଳିଷ୍ଠ ସମ୍ବର୍ଦ୍ଧନା ମଧ୍ୟ ଦିଆ ଯାଇଛି । ଏହିଭଳି ବହୁ ଜନହିତୈଷୀ ଅନୁଷ୍ଠାନ ଦ୍ୱାରା ମଧ୍ୟ ସେ ବହୁରୂପରେ ସମ୍ମାନିତ ଓ ପ୍ରଶଂସିତ ରହି ପାରିଛନ୍ତି ।

ସ୍ୱର୍ଗତ ମିଶ୍ର ପ୍ରାଦେଶିକ ସ୍ତରରେ ଜଣେ ପ୍ରକୃତ ସମବାୟ ଆନ୍ଦୋଳନର ଉଦ୍ୟୋକ୍ତା ଏବଂ ପ୍ରବନ୍ଧକ ଥିଲେ । ଏଥିପାଇଁ ସେ ସାରା ରାଜ୍ୟରେ ଜଣେ ବଳିଷ୍ଠ 'ସମବାୟ-ପ୍ରେମୀ' ହିସାବରେ ପରିଚିତ ରହିଛନ୍ତି । ସୁତରାଂ ସେ ରାଜ୍ୟ ସମବାୟ ୟୁନିଅନ୍ ପକ୍ଷରୁ ମଧ୍ୟ ସମ୍ମାନିତ ହୋଇଥିଲେ । ବଡ ଆଶ୍ଚର୍ଯ୍ୟର କଥା ଯେ ସ୍ୱର୍ଗତ ମିଶ୍ର ଜଣେ ବହୁମୁଖୀ ପ୍ରତିଭା ଓ ବିଚକ୍ଷଣତାର ଅଧିକାରୀ ଥିଲେ । ସେ ଏକାଧାରରେ ପ୍ରଦେଶ, ଦେଶ ଓ ରାଜନୀତିରେ ଜଡିତ ରହି ସରକାରୀ ନିର୍ବାଚନ ପ୍ରକ୍ରିୟାରେ ବିଜୟ ଲାଭ କରି ଆସିକା ଅଞ୍ଚଳରୁ ନିର୍ବାଚିତ ପ୍ରତିନିଧି ରୂପେ ବଳିଷ୍ଠ ଓ ସ୍ଥାୟୀ କାର୍ଯ୍ୟ ସମ୍ପାଦନ କରି ଯାଇଛନ୍ତି । ଏତଦ୍‌ବ୍ୟତୀତ ସେ ଆସିକା ବିଜ୍ଞାପିତ ଅଞ୍ଚଳରୁ ମଧ୍ୟ ନିର୍ବାଚିତ ନଗରପାଳ ରୂପେ କାର୍ଯ୍ୟ କରି ଯାଇଛନ୍ତି । ଏପରିକି ସାରା ଭାରତବର୍ଷରେ ପ୍ରଚ୍ଛରିତ ଓ ପ୍ରସାରିତ ହୋଇ ପାରିଥିବା "ଉତ୍କଳ ଆୟୁର୍ବେଦ ସମବାୟ ଫର୍ମାସୀ"ର ବହୁବର୍ଷ ଧରି ଜଣେ ମୁଖ୍ୟ କର୍ମକର୍ତ୍ତା ରୂପେ ଦାୟିତ୍ୱ ନିର୍ବାହ କରି ଯାଇଛନ୍ତି ।

ସବୁଠାରୁ ବିରଳ ଦୃଷ୍ଟାନ୍ତ ଏହି ଯେ, ସ୍ୱର୍ଗତ ଲୋକନାଥ ମିଶ୍ର ଆସିକା ଅଞ୍ଚଳରୁ ନିର୍ବାଚିତ ବିଧାୟକ ରୂପେ କର୍ତ୍ତବ୍ୟ ସମ୍ପନ୍ନ କରିଥିବା ଯୋଗୁଁ ତତ୍ ସମ୍ପର୍କୀୟ ସରକାରୀ ପେନ୍‌ସନ୍ ଭତ୍ତା ପାଇବା ଲାଗି ଯୋଗ୍ୟ ବିବେଚିତ ହୋଇଥିଲେ । କିନ୍ତୁ ଏହି ବ୍ୟବସ୍ଥା ତାଙ୍କରି ରୁଚି ବିରୁଦ୍ଧ ଥିଲା । ସେ ମହାନ ଆଦର୍ଶବାଦର ବଶବର୍ତ୍ତୀ ହୋଇ ଉକ୍ତ ଆର୍ଥିକ ଲାଭକୁ ସହର୍ଷ ପ୍ରତ୍ୟାଖ୍ୟାନ କରି ଦେଇଥିଲେ । ତାଙ୍କ ଦୃଷ୍ଟିରେ କୌଣସି ଅଞ୍ଚଳରୁ ଏକ ଲୋକ ପ୍ରତିନିଧି ବିଧାୟକ ରୂପରେ ନିର୍ବାଚିତ ହେବା ପରେ ସେ ଲୋକ ସେବକ ପାଲଟିଯାଏ । ତେଣୁ ସଂପୃକ୍ତ ଅଞ୍ଚଳରେ ସେବା, ତତ୍ତ୍ୱାବଧାନ, ଦୁଃଖ ସୁଖର ସାଥୀ ହେବା, ତାହାରି ଉନ୍ନୟନ ଓ ଆବଶ୍ୟକତାକୁ ଯଥାର୍ଥ ଭାବରେ ସରକାର ନିକଟରେ ଉପସ୍ଥାପିତ କରିବା ହିଁ ମୁଖ୍ୟ କର୍ମ ହୋଇପଡେ । ତେଣୁ ଏପରି କ୍ଷେତ୍ରରେ 'ପେନ୍‌ସନ୍‌ଧାରୀ କର୍ମଚାରୀ' ହେବା ଉଚିତ ନୁହେଁ । ଏହି ନଜିରଟି ତତ୍କାଳୀନ ଯୁଗରେ ସାରା ଦେଶରେ ଚହଳ ସୃଷ୍ଟି କରିଥିଲା । ଏହି ଦୃଷ୍ଟିରୁ ମଧ୍ୟ ସେ ଦେଶବାସୀଙ୍କର ଆଗରେ ଚିରକାଳ ସ୍ମରଣୀୟ ହୋଇ ରହିବେ ।

ଘରୋଇ ଭାବରେ ଜଣାଯାଏ ଯେ, ସ୍ୱର୍ଗତ ମିଶ୍ର ସୁଦୀର୍ଘ ୧୦ ବର୍ଷ ଧରି ରୁଗ୍‌ଣ ରହିଥିଲେ । ବିଶେଷତଃ ଏକଦା ଘର ଭିତରେ ଦୁର୍ଘଟଣାର ଶିକାର ହୋଇ ସେ ନିଜର ଗୋଟିଏ ଗୋଡ ହରାଇ ଚାଲିବାକୁ ଅକ୍ଷମ ହେଲେ । ହାଡଭଙ୍ଗା ଘଟଣା ଯୋଗୁଁ ଚଲାବୁଲା କରିପାରୁ ନଥିଲେ । ତଥାପି ସେହି ଅବସ୍ଥାରେ ପଡିରହି ମଧ୍ୟ କେବେ ହେଲେ ଆଶୁ ଆରୋଗ୍ୟ ଲାଭ କରିବା ଲାଗି ଏଲୋପ୍ୟାଥିକ୍ ଔଷଧ କିମ୍ବା ସେବାର ଅଧୀନ ହୋଇ ନଥିଲେ । ସେହି ଅବସ୍ଥାରେ ପୀଡିତ ରହି ମଧ୍ୟ ନିତି ପ୍ରତିଦିନ ଶତ ସହସ୍ର ରୋଗୀଙ୍କୁ ଅକ୍ଳାନ୍ତ ସେବା ଚିକିତ୍ସା କରି ଆରୋଗ୍ୟ ପ୍ରଦାନ କରି ଯାଇଛନ୍ତି ।

ତାଙ୍କରି ଅପୂର୍ବ ଦେଶସେବା, ପ୍ରତିପତ୍ତି ଓ ସୁନାମରେ ମୁଗ୍‌ଧ ରହି ସ୍ୱର୍ଗତ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ତଥା ତାଙ୍କରି ଦାୟାଦ ସାଂସଦ ନବୀନ ବାବୁ ମଧ୍ୟ ବ୍ୟକ୍ତିଗତ ରୂପେ ସ୍ୱର୍ଗତ ଲୋକନାଥ ମିଶ୍ରଙ୍କ ଘରକୁ ଯାଇ ବିଶେଷ କିଛି ଖୋଜଖବର କିମ୍ବା କୁଶଳ ଜିଜ୍ଞାସା କରି ଆସୁଥିଲେ । ସମସ୍ତେ ପ୍ରାୟ 'ଚୂନ ଚିହ୍ନେ ଚୁଣିଆ' ଭାବରେ ସେଠାରେ ପହଞ୍ଚୁଥିଲେ ।

ସର୍ବ ଶେଷରେ ଲେଖିବା କଥା ଯେ, ସ୍ୱର୍ଗତ ଲୋକନାଥ ମିଶ୍ରଙ୍କର ମର ଶରୀରକୁ କାଳ-ଶ୍ମଶାନ ଗ୍ରାସ କରି ସାରିଲାଣି । ତଥାପି ତାଙ୍କରି ଉଜ୍ଜ୍ୱଳ ଅମର ଆତ୍ମା ଆଜି ମୁକ୍ତ ଆକାଶର ଧ୍ରୁବତାରକା ଭଳି ତେଜିୟାନ ରହିବ । ତାହା ହୁଏତ ନିର୍ବାପିତ ହୋଇ ଥାଇପାରେ, କିନ୍ତୁ ଏକ ସୁଗନ୍ଧିତ ସଦ୍ୟ ପ୍ରସ୍ଫୁଟିତ ଫୁଲ ଭଳି ନିଜର ଚତୁର୍ଦ୍ଦିଗରେ ସୁରଭିତ ଏବଂ ସୁଗନ୍ଧିତ ରହି ସାରା ଜନମାନସକୁ ଆନ୍ଦୋଳିତ ଏବଂ ପ୍ରଭାବିତ ରଖିଥିବ । କବି ସ୍ୱର୍ଗତ ଗୋଦାବରୀଶ ମିଶ୍ରଙ୍କର ଭାଷାରେ :—

"ସଂପଦ ଗୌରବ ସଂଭୋଗ ମହୀରେ
ସକଳ ଅଚିର ଏକା
ବର୍ଷା ପାଣି ବକ୍ଷେ ବୁଦ୍‌ବୁଦ୍ ପରାଏ
ନିମିଷେ ଦିଅନ୍ତ ଦେଖା ।"

× × × ×

ଏହାହିଁ ଶେଷ ପରିଚିତି ଏବଂ ଶେଷ କଥା । ଆଜି ସେହି ଶତ ପାଖୁଡ଼ା ପଦ୍ମ—ଭୂଇଁରେ ଲୋଟି ଝରି ପଡ଼ଛି, କିନ୍ତୁ ତାହାରି ମହକ ଏବେ ଯୁଦ୍ଧା ଲୋପ ପାଇ ନାହିଁ !!

(ସ୍ୱର୍ଗତ କବି ଡାକ୍ତର ଲୋକନାଥ ମିଶ୍ରଙ୍କୁ 'ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ' ତରଫରୁ ପ୍ରଦତ୍ତ 'ସମ୍ବର୍ଦ୍ଧନା'ର ନକଲକିତା) :—

# ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ

## ଡାକ୍ତର ଶ୍ରୀଯୁକ୍ତ ଲୋକନାଥ ମିଶ୍ର

ମହାମାନବ ମହାତ୍ମା ଗାନ୍ଧୀଙ୍କ ସାନ୍ନିଧ୍ୟ ଲାଭ କରିବାର ସୁଯୋଗ ଯେଉଁମାନେ ପାଇଛନ୍ତି, ସେମାନେ ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇଛନ୍ତି । ମହାତ୍ମାଜୀଙ୍କର ଯାଦୁକରୀ ବ୍ୟକ୍ତିତ୍ୱ ସେମାନଙ୍କର ଜୀବନ ପଥକୁ କରିଛି ପୁଷ୍ପିତ । ଏମାନଙ୍କର ସଂଖ୍ୟା ଧୀରେ ଧୀରେ ହ୍ରାସ ପାଇବାକୁ ଲାଗିଛି ଏବଂ ଗଠନମୂଳକ ବାଣୀ ଅରଣ୍ୟ ରୋଦନରେ ପରିଣତ ହେଉଅଛି । ତଥାପି ଏମାନଙ୍କର ମଧ୍ୟରେ ହିଁ ଗାନ୍ଧିଜୀଙ୍କ ଆଦର୍ଶ ଓ ରାମରାଜ୍ୟର ସ୍ୱପ୍ନ ସଂଜୀବିତ । ଆସିକା ନିବାସୀ ଅମୃତହସ୍ତା ହୋମିଓପ୍ୟାଥିକ୍ ଡାକ୍ତର ଶ୍ରୀଯୁକ୍ତ ଲୋକନାଥ ମିଶ୍ର ଏହିପରି ଜଣେ ଗାନ୍ଧିବାଦୀ କୃତି ପୁରୁଷ ।

ଶରଣକୁଳର ମିଶ୍ର ଗଳିରେ ଡାକ୍ତର ମିଶ୍ରଙ୍କର ଜନ୍ମ । ଦାରିଦ୍ର୍ୟ ପ୍ରପୀଡ଼ିତ ୰ କୃଷ୍ଣଚଂଦ୍ର ମିଶ୍ର ଓ ସାବିତ୍ରୀ ଦେବୀଙ୍କ ପରିବାରର କନିଷ୍ଠ ପୁତ୍ର ରୂପେ ସେ ୧୯୦୯ ମସିହା ଏପ୍ରିଲ ମାସ ୪ ତାରିଖ ଦିନ ଭୂମିଷ୍ଠ ହୋଇଥିଲେ । ଜ୍ୟେଷ୍ଠ ଭ୍ରାତା ୰ ପଣ୍ଡିତ ବିନାୟକ ମିଶ୍ର ଓଡ଼ିଆ ସାହିତ୍ୟର ଜଣେ ଖ୍ୟାତିସମ୍ପନ୍ନ ଅଧ୍ୟାପକ ଓ ସମାଲୋଚକ । ବିନାୟକଙ୍କ ଆନୁଷ୍ଠାନିକ ଶିକ୍ଷା ସପ୍ତମ ଶ୍ରେଣୀରେ ହିଁ ସମାପ୍ତ

ହୋଇଥିଲେ ହୁଦ୍ଧା, ଲୋକନାଥ ପୁରୀ ଜିଲ୍ଲା ସ୍କୁଲରୁ କୃତିତ୍ୱର ସହ ମାଟ୍ରିକ୍ୟୁଲେସନ ପାସ୍ କରିଥିଲେ । ଏହି ସ୍କୁଲର ଛାତ୍ର ଥିଲାବେଳେ ପୁରୀଠାରେ ତାଙ୍କର ମହାତ୍ମା ଗାନ୍ଧୀଙ୍କ ସହ ସାକ୍ଷାତ ହୋଇଥିଲା । ସେହିଦିନ ଠାରୁ ସେ ଗାନ୍ଧିଜୀଙ୍କର ଆଦର୍ଶରେ ନିଜକୁ ଗଠନ କରିବା ପାଇଁ ଚେଷ୍ଟା କରି ଆସିଛନ୍ତି ।

ଡାକ୍ତର ମିଶ୍ର ଜଣେ ଶିକ୍ଷକ ଭାବେ ପ୍ରଥମେ ନିଜର କର୍ମମୟ ଜୀବନ ଆରମ୍ଭ କରିଥିଲେ । କିନ୍ତୁ ପରିସ୍ଥିତିର ତାଡନାରେ ସେ ସ୍ୱଳ୍ପ ସମୟ ପରେ ପୋଲିସ୍ ବିଭାଗରେ ଏ. ଏସ୍. ଆଇ. ରୂପେ ଯୋଗ ଦିଅନ୍ତି । ଗାନ୍ଧିଜୀଙ୍କର ଆଦର୍ଶରେ ଅନୁପ୍ରାଣିତ ଲୋକନାଥଙ୍କ ପାଇଁ ଏହି କର୍ମକ୍ଷେତ୍ର ଅବଶ୍ୟ ଉପଯୁକ୍ତ ନଥିଲା । ତେଣୁ ଅନ୍ୟାୟ ଓ ଅତ୍ୟାଚାରର ପ୍ରତିବାଦ କରି ସେ ମାତ୍ର ଦୁଇ ବର୍ଷ ନଅ ମାସ ପରେ ଏଥିରୁ ଇସ୍ତଫା ଦେଇଥିଲେ । ଚାକିରୀ ପରିତ୍ୟାଗ କରିବା ଠାରୁ ଆଜି ପର୍ଯ୍ୟନ୍ତ ଡାକ୍ତର ମିଶ୍ର ଜନସେବାକୁ ହିଁ ଜୀବନର ପବିତ୍ର ବ୍ରତ ରୂପେ ଗ୍ରହଣ କରି ନେଇଛନ୍ତି ।

ଜ୍ୟେଷ୍ଠ ଭ୍ରାତାଙ୍କ ପଦାଙ୍କ ଅନୁସରଣ କରି ସେ ହୋମିଓପ୍ୟାଥିକ୍ ଚିକିତ୍ସା ଆରମ୍ଭ କରନ୍ତି । ବ୍ରହ୍ମପୁରରେ ତିନି ବର୍ଷ ରହିବା ପରେ ମାତୃ ବିୟୋଗ ହେତୁ ସେ କିଛିବର୍ଷ ପୁଣି ଗାଁକୁ ଫେରି ଯାଇଥିଲେ । କିନ୍ତୁ ସେଠାର ପରିବେଶ ଓ ପରିସ୍ଥିତି ଅନୁକୂଳ ନ ହେବା ଯୋଗୁଁ ୧୯୪୧ ମସିହା ଜୁଲାଇରୁ ସେ ଆସିକାକୁ ନିଜର କର୍ମଭୂମି ରୂପେ ଗ୍ରହଣ କରି ନେଇଛନ୍ତି । ହୋମିଓପ୍ୟାଥି ଚିକିତ୍ସାରେ ଅପୂର୍ବ ସାଫଲ୍ୟ ତାଙ୍କୁ ଏ ଅଞ୍ଚଳରେ ଲୋକପ୍ରିୟ କରିପାରିଛି । ତାଙ୍କରି ଅମୃତ ହସ୍ତରୁ ଔଷଧ ସେବନ କରି ହଜାର ହଜାର ଅସାଧ୍ୟ ତଥା ନିରାଶ ରୋଗୀ ରୋଗମୁକ୍ତ ହୋଇଛନ୍ତି । ଏହି ଚିକିତ୍ସାର ଉନ୍ନତି ପାଇଁ ସେ ନିକଟବର୍ତ୍ତୀ ମଙ୍ଗଳପୁର ଗ୍ରାମରେ ଏକ ଦାତବ୍ୟ ଚିକିତ୍ସାଳୟ ପ୍ରତିଷ୍ଠା କରିଛନ୍ତି ଏବଂ ଏହାର ସୁପରିଚାଳନା ପାଇଁ ଚାଳିଶି ହଜାର ଟଙ୍କାର ଏକ ପାର୍ଣ୍ଣି ବେଙ୍କ୍‌ରେ ଜମା ଦେଇଛନ୍ତି । ହୋମିଓ ଚିକିତ୍ସା ସାର ତାଙ୍କରି ଏକ ଉପାଦେୟ ଗ୍ରନ୍ଥ ।

ସମବାୟ ଆନ୍ଦୋଳନ ପାଇଁ ମଧ୍ୟ ଡାକ୍ତର ମିଶ୍ରଙ୍କର ଦାନ ଅବିସ୍ମରଣୀୟ । ଆସିକାର ପ୍ରତିଟି ସମବାୟ ଅନୁଷ୍ଠାନ ସହ ସେ ଓତଃପ୍ରୋତ ଭାବେ ଜଡ଼ିତ । ଆସିକା ସମବାୟ କେନ୍ଦ୍ର ବ୍ୟାଙ୍କର ସଭାପତି ଭାବେ ଦଶ ବର୍ଷ ରହି ସେ ଏହାର ପ୍ରଭୂତ ଉନ୍ନତି ସାଧନ କରିଛନ୍ତି । ଉତ୍କଳ ଆୟୁର୍ବେଦିକ ସମବାୟ ଫର୍ମାସୀ, ଆସିକା ଚିନି କାରଖାନା ପ୍ରଭୃତିର ବିକାଶ ପାଇଁ ଅନ୍ୟତମ ନିର୍ଦ୍ଦେଶକ ଭାବେ ସେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛନ୍ତି । ଆସିକା ଏନ୍. ଏ. ସି. ର ଅଧ୍ୟକ୍ଷ ଭାବେ ମଧ୍ୟ ତାଙ୍କରି କାର୍ଯ୍ୟକ୍ରମ ଅତୀବ ପ୍ରଶଂସନୀୟ । ତାଙ୍କରି ଏହି ଲୋକପ୍ରିୟତା ଯୋଗୁଁ ସେ ୧୯୬୧ରେ ଆସିକା ନିର୍ବାଚନ ମଣ୍ଡଳୀରୁ ଓଡ଼ିଶା ବିଧାନସଭାର ସଭ୍ୟ ରୂପେ ନିର୍ବାଚିତ ହୋଇଥିଲେ । ଏଠାରେ ଏକାନ୍ତ ଉଲ୍ଲେଖଯୋଗ୍ୟ ଯେ ଡାକ୍ତର ମିଶ୍ର ଦୀର୍ଘଦିନ ଧରି ବିଭିନ୍ନ ସରକାରୀ କଳ ଓ ସମବାୟ ଅନୁଷ୍ଠାନର ବହୁ ପଦ ପଦବୀରେ ରହି ଆସିଥିଲେ ହୁଦ୍ଧା, କୌଣସି ଅନୁଷ୍ଠାନରୁ ଗସ୍ତ ଖର୍ଚ୍ଚ କିମ୍ବା ଅନ୍ୟ କୌଣସି ଭତ୍ତା ଗ୍ରହଣ କରି ନାହାନ୍ତି । ଏପରିକି ସେହି ଅନୁଷ୍ଠାନଗୁଡ଼ିକର ଅର୍ଥରୁ ଚାହା କପିଏ ମଧ୍ୟ ସ୍ପର୍ଶ କରି ନାହାନ୍ତି । ବିଧାୟକ-ମାନଙ୍କୁ ମିଳୁଥିବା ପେନ୍‌ସନ ମଧ୍ୟ ସେ ପ୍ରତ୍ୟାଖ୍ୟାନ କରିଛନ୍ତି । ବରଂ ସରଳ ଓ ନିରାଡ଼ମ୍ବର ଜୀବନ-ଯାପନ ପୂର୍ବକ ଚିକିତ୍ସାରୁ ମିଳୁଥିବା ସ୍ୱଳ୍ପ ଅର୍ଥରୁ କିଛି ସଞ୍ଚୟ କରି ରଖି ସେ ମନ୍ଦିର ପ୍ରତିଷ୍ଠା, ପୁଷ୍କରିଣୀ

ଖନନ ପ୍ରଭୃତି ଲୋକ ହିତକର କାର୍ଯ୍ୟରେ ତାକୁ ବିନିଯୋଗ କରିଅଛନ୍ତି । ସଂସ୍କୃତ ଶିକ୍ଷାର ପ୍ରସାର ପାଇଁ ସେ ଟୋଲର ମେଧାବୀ ଛାତ୍ରମାନଙ୍କୁ ପ୍ରତି ମାସରେ ପଚଶ ଟଙ୍କା କରି ଦେଇ ଆସୁଛନ୍ତି । ଭବିଷ୍ୟତରେ ଏହି ବୃତ୍ତି ଯେମିତି ଛାତ୍ରମାନଙ୍କୁ ମିଳିପାରିବ ସେଥିପାଇଁ ମଧ୍ୟ ଛଅ ହଜାର ଟଙ୍କା ବେଙ୍କରେ ଗଚ୍ଛିତ କରାଯାଇଛି ।

ପଦ୍ୟ ରଚନା ଶ୍ରୀଯୁକ୍ତ ମିଶ୍ରଙ୍କର ଏକ ବିଳାସ । ଏ ପର୍ଯ୍ୟନ୍ତ ସେ ପ୍ରାୟ ୩୦ ଖଣ୍ଡ ବହି ଲେଖିଛନ୍ତି । ଏ ଗୁଡକ କେବଳ ବିତରଣ ପାଇଁ ଉଦ୍ଦିଷ୍ଟ । ଗାନ୍ଧିଜୀଙ୍କର ବାଣୀ ପ୍ରଚାର କରିବା, ଦୁର୍ନୀତି ବିରୋଧରେ ଜନ ସଚେତନତା ସୃଷ୍ଟି କରିବା ଏବଂ ଏକ ଆଦର୍ଶ ସମାଜ ପ୍ରତିଷ୍ଠା କରିବା ପାଇଁ ଆହ୍ୱାନ ଦେବା ଏ ଗୁଡକର ମୁଖ୍ୟ ଲକ୍ଷ୍ୟ । ଏଥିପାଇଁ ସେ ଓଡ଼ିଶା ସାହିତ୍ୟ ଏକାଡେମୀ ଦ୍ୱାରା ମଧ୍ୟ ସମ୍ମାନିତ ହୋଇଛନ୍ତି । ଏ ବୟସରେ ସୁଦ୍ଧା ତାଙ୍କ ଲେଖନୀ ଚିର ଚଞ୍ଚଳ ରହିଅଛି ।

ଏହିପରି ଜଣେ ଆଦର୍ଶ ଜନସେବୀ, ଅମୃତହସ୍ତା ଚିକିତ୍ସକ, ଜଣେ ସାହିତ୍ୟିକ, ନିଷ୍ଠାପର ଦେଶ ସେବକ, ଆଦର୍ଶ ଚରିତ୍ରବାନ ତଥା ଅକୁଣ୍ଠ ଦାନଶୀଳ ବ୍ୟକ୍ତିର ଅନାମୟ ଦୀର୍ଘ ଜୀବନ କାମନା କରିବା ସଙ୍ଗେ ସଙ୍ଗେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ଆଜିର ଏହି ସ୍ମରଣୀୟ ଦିବସରେ ତାଙ୍କୁ ସମ୍ମାନ ପ୍ରଦର୍ଶନ କରି ନିଜକୁ ଧନ୍ୟ ମନେ କରୁଛି ।

କୁଳ ସଚିବ
**ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ**

# ଓଡ଼ିଶା ସାହିତ୍ୟ ଏକାଡେମୀ, ଭୁବନେଶ୍ୱର

## ମାନନୀୟ ଶ୍ରୀଯୁକ୍ତ ଲୋକନାଥ ମିଶ୍ର

ମହୋଦୟ,

ଓଡ଼ିଆ ସାହିତ୍ୟକୁ ଆପଣଙ୍କର ଦାନ ଅବିସ୍ମରଣୀୟ । ଧାରବାହିକ ଭବରେ କାବ୍ୟ କବିତାମାନ ରଚନା କରି ଆପଣ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରି ଅଛନ୍ତି ।

ପ୍ରାଚୀନ କାବ୍ୟ ଓ ପୁରଣର ଉଚ୍ଚ ଆଦର୍ଶପୂର୍ଣ୍ଣ ଉପାଖ୍ୟାନ ଅବଲମ୍ବନରେ ଆପଣ ଜନସାଧାରଣଙ୍କର ପାଇଁ ଯେଉଁ କାବ୍ୟ ରଚନା କରିଅଛନ୍ତି, ତାହା ସାଧାରଣ ପାଠକଙ୍କର ଉପଭୋଗ୍ୟ ସଂପଦରେ ପରିଣତ ହୋଇଅଛି ।

ଆଜି ଏହି ଶୁଭ ଅବସରରେ **'ଓଡ଼ିଶା ସାହିତ୍ୟ ଏକାଡେମୀ'** ଆପଣଙ୍କୁ ସମ୍ବର୍ଦ୍ଧନ ଜ୍ଞାପନ କରି ନିଜକୁ ଗୌରବାନ୍ୱିତ ମନେ କରୁଅଛି ।

**ଯଦୁନାଥ ଦାସ ମହାପାତ୍ର**
ସଭାପତି

**ମନୋରଞ୍ଜନ ଦାସ**
ସଂପାଦକ
ତା ୩-୪-୭୪

# ଗ୍ରନ୍ଥାବଳୀଟିର ରଚନା ସମ୍ଭାର ଉପରେ ଏକ ବିହଙ୍ଗମ ଦୃଷ୍ଟି

ବିଷୟର ଦୃଷ୍ଟିରୁ ଆଲୋଚନା କରି ଦେଖିଲେ ସମଗ୍ର ଗ୍ରନ୍ଥାବଳୀ (ଦ୍ୱିତୀୟ ଭାଗ) ଅନୁସାରେ 'ସୂଚୀପତ୍ର'ର ତାଲିକା ପ୍ରକାରେ କେବଳ ୫୭ (ସତାବନ) ଗୋଟି ଗୀତ ରଚନା ଆତ୍ମପ୍ରକାଶ ଲାଭ କରିଛି । ସେହିଗୁଡ଼ିକରେ କଥାବସ୍ତୁର ଚୟନ ଦୃଷ୍ଟିରୁ ସମତା ଅଥବା କ୍ରମବିକାଶ ଧାରା ନାହିଁ । କେବଳ ରଚନାଧର୍ମୀ ଇଂଦ୍ରଧନୁଷୀ ଆଭାରେ— ଏହି କୃତିଗୁଡ଼ିକ ଭାସ୍ୱର ।

ତେଣୁ କବିଙ୍କର ଅନ୍ତଃସ୍ୱର ମୌଳିକତାକୁ ମଧ୍ୟ ବୁଝି ରଖିବା ଦରକାର । କାରଣ ବ୍ୟକ୍ତିଗତ ରୂପରେ ସେ ଜଣେ ଉଚ୍ଚକୋଟୀର ସ୍ୱାବଲମ୍ବୀ, ସ୍ୱାଭିମାନୀ ତଥା ସ୍ୱଚ୍ଛ ବିଚାରଧାରାର ଶିଳ୍ପୀ ଥିଲେ । ବିଶେଷତଃ କୌଣସି ଧରଣର ଲାଭ କିମ୍ବା ଲୋଭର ସେ ବଶବର୍ତ୍ତୀ ନଥିଲେ । ତେଣୁ କେବଳ ଆତ୍ମସନ୍ତୋଷ ଲାଭ ପାଇଁ ଏହି ସବୁ ରଚନା ସମ୍ଭାର ସୃଷ୍ଟି କରି ଯାଇଅଛନ୍ତି । ସୁତରାଂ ମନେହୁଏ ଯେ ବିଖ୍ୟାତ ହିନ୍ଦୀ ସାହିତ୍ୟର ମହାକବି ସନ୍ଥ ତୁଳସୀ ଦାସଙ୍କ ପରି ଯଥା :—

"ସ୍ୱାନ୍ତ ସୁଖାୟ କବି ରଘୁନାଥ ଗାଥା"

x x x

ରଚନା କଳାଭଳି, ନିଜ ସାମଗ୍ରୀ, ଶୈଳୀ ଓ ପ୍ରକାଶନଭଙ୍ଗୀ ବାଛି ନେଇଛନ୍ତି ।

ଦ୍ୱିତୀୟତଃ ବର୍ଣ୍ଣ୍ୟ ବିଷୟ ଚୟନ ବା ବର୍ଣ୍ଣନା ଭିତରେ କବି ନିଜେ କିଛି ସୁଦ୍ଧା ସଙ୍କୋଚବୋଧ କରିନାହାନ୍ତି । ବରଂ ପଣ୍ଡିତ ୰ ନୀଳକଣ୍ଠ ଦାଶଙ୍କ ପରି ଅନେକ କିଛି ସତ୍ୟ ଓ ତଥ୍ୟରାଜୀକୁ ନିର୍ଭୀକ, ଉଗ୍ର, ପ୍ରଚଣ୍ଡ ଭାବରେ ଲେଖି ଯାଇଛନ୍ତି । ତାହା ଆଜିର ଯୁଗ-ଜୀବନ ମାପଦଣ୍ଡରେ କଟୂସତ୍ୟ ଅଥବା ପରିପନ୍ଥୀ ପରି ସ୍ଥଳ ବିଶେଷରେ ଦେଖାଯାଏ । ତଥାପି ୰ କବି ସେଥିପ୍ରତି ଭ୍ରୂକ୍ଷେପ ସୁଦ୍ଧା କରି ନାହାନ୍ତି । ସେପରି ବିଷୟ, ସ୍ଥଳ ଓ ପ୍ରସଙ୍ଗ ଇତ୍ୟାଦିକୁ କବିଙ୍କର ନିଜସ୍ୱ ମତ କିମ୍ବା ବ୍ୟକ୍ତିଗତ ରୁଚିର ପ୍ରତିଫଳନ ବୋଲି ଭାବିନେବା ଦରକାର । ଏହି ପରିସ୍ଥିତିରେ ଆଲୋଚନା କିମ୍ବା ସମ୍ପାଦନା କରିଯିବା ବେଳେ ମୁଁ ନିଜକୁ ସଂପୂର୍ଣ୍ଣ ମୁକ୍ତ ଓ ସ୍ୱତନ୍ତ୍ର ରଖି ଅଗ୍ରସର ହୋଇଛି ।

ତୃତୀୟ କଥା ଏହି ଯେ, ଅଧିକାଂଶ କବିତାର ରଚନା ବିଧାନରେ କୌଣସି ମୂଳସ୍ୱରୂପ ଚିନ୍ତା ଅଥବା କାବ୍ୟକଳାର ନୀତି ବନ୍ଧନ ନାହିଁ । ସେଥିରେ ଧାରାବାହିକତା ଦୃଷ୍ଟିରୁ ଖଣ୍ଡକାବ୍ୟ, କାବ୍ୟ ଅଥବା

ମହାକାବ୍ୟଧର୍ମୀ ରୂପ ଓ ରୂପାନ୍ତର ନାହିଁ । ଯାହାକିଛି ପରିଦୃଶ୍ୟମାନ ସ୍ୱରୂପ ରହିଛି—ସେଗୁଡ଼ିକ ଭିତରେ ଅଧିକାଂଶ ମୁକ୍ତ-ପ୍ରସଙ୍ଗ, ସମାଲୋଚନାଧର୍ମୀ ଗୀତି ଅଥବା ପ୍ରାଚୀନ କାବ୍ୟ ପୁରାଣର ଉଚ୍ଚ ଆଦର୍ଶପୂର୍ଣ୍ଣ ବର୍ଣ୍ଣନା ମାତ୍ର ଦେଖାଯାଏ । ଯାହାକି ସାଧାରଣ ପାଠକଙ୍କ ପାଇଁ ଉପଭୋଗ୍ୟ ହୋଇପାରିଛି ।

ତଥାପି ପରିଶେଷରେ ଏହା ସ୍ୱୀକାର୍ଯ୍ୟ ଯେ ଏହି ସମସ୍ତ ରଚନାବଳୀର ଅନ୍ତରାଳରେ ଯେଉଁସବୁ ଅନ୍ୟାନ୍ୟ ଗୁଣ-ଧର୍ମ ଓ ଆବଶ୍ୟକତା ରହିଛି ତାହା ଅସାଧାରଣ ମନେହୁଏ । ଏହାରି ପ୍ରତ୍ୟେକ ସୃଷ୍ଟି ଭିତରେ କବିଙ୍କର ଆତ୍ମା ଗାଇ ଉଠିଛି ।

ବିଶେଷତଃ ଏକ ଅନୁଭୂତିସମ୍ପନ୍ନ ବ୍ୟକ୍ତି ହିସାବରେ ସମାଜ, ଜୀବନ ଓ ଜାତିକୁ ସବିଶେଷ 'ନୀତିଶିକ୍ଷା' ପ୍ରଦାନ ଉଦ୍ଦେଶ୍ୟରେ ସ୍ୱର୍ଗତ ଲେଖକ ଏହି ଗ୍ରନ୍ଥାବଳୀଟିର ରଚନା ସମ୍ପାଦନ କରିଥିବା ମନେହୁଏ । ସୁତରାଂ ଏହାରି ନାମକରଣକୁ ସେ ଜାଣିଶୁଣି 'ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ' ରୂପରେ ନାମିତ କରି ଯାଇଛନ୍ତି ।



# ମନ୍ତବ୍ୟ....

ସ୍ୱର୍ଗତ କବି ଲୋକନାଥ ମିଶ୍ରଙ୍କ ଦ୍ୱାରା ରଚିତ 'ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ' କବିତାଗୁଚ୍ଛଟି ଦେଖିଲି । ଆଜିକାଲିକା ଛନ୍ଦହୀନ ଓଡ଼ିଆ କବିତା ଲେଖା ଯୁଗରେ ଛନ୍ଦୋମୟୀ କବିତାଗୁଡ଼ିକର ବୈଶିଷ୍ଟ୍ୟ ପ୍ରଦର୍ଶନପୂର୍ବକ କବି ଯେଉଁ ଓଡ଼ିଆ କାବ୍ୟିକ ପରମ୍ପରାର ଦୃଷ୍ଟାନ୍ତ ଉପସ୍ଥାପନ କରି ଯାଇଛନ୍ତି ତାହା ସର୍ବୋତଭାବେ ପ୍ରଶଂସନୀୟ । କେବଳ ଛନ୍ଦରେ ନୁହେଁ ଭାବ, ଭାବନା, ନୀତି ଉପଦେଶାଦି ଦ୍ୱାରା କବିତାଗୁଡ଼ିକୁ ଆଦର୍ଶ ସ୍ଥାନୀୟ କରିବା ସଙ୍ଗେ ସଙ୍ଗେ ଦେଖାଇ ଦେଇଛନ୍ତି ଯେ ତଥାକଥିତ ପ୍ରେମ ବା ଶୃଙ୍ଗାର ରସ ହିଁ କବିତାର ଉପଜୀବ୍ୟ ନୁହେଁ ତହିଁରେ ସାମାଜିକ କଲ୍ୟାଣ ତଥା ଉନ୍ନତ ଜୀବନଯାପନ ସହିତ ଦେଶ ଓ ଜାତିର ମାନୋନ୍ନତି କରିବାରେ ମଧ୍ୟ ସେଗୁଡ଼ିକର ଉପଯୋଗିତା ଯଥେଷ୍ଟ ବେଶୀ । କବିତାଗୁଡ଼ିକ ସ୍ୱତଃସ୍ଫୂର୍ତ୍ତ ଭାବେ ଗିରି ନିର୍ଝରିଣୀ ତୁଲ୍ୟ ସ୍ୱାଭାବିକ ରୀତିରେ ପ୍ରବାହମାନ ହୋଇଥିଲା ପରି ଲାଗେ । ସେଥିରେ ଶବ୍ଦର ଆଡମ୍ବର ନାହିଁ କିମ୍ବା ଜଟିଳ ଆଳଂକାରିକତାର ଅବସ୍ଥାନ ନାହିଁ । ତେଣୁ ପାଠକ ପକ୍ଷେ ସହଜବୋଧ୍ୟ ହେବା ସଙ୍ଗେ ସଙ୍ଗେ ହୃଦୟସ୍ପର୍ଶୀ ହେବା ସ୍ୱାଭାବିକ । କବି ଜଣେ ସଚ୍ଚୋଟ ଦେଶପ୍ରେମୀ ଓ ସମାଜସେବୀ ଥିବା ଯୋଗୁଁ ହୃଦୟର ନିଭୃତ କନ୍ଦରରୁ ସେଗୁଡ଼ିକ ଆପେ ଆପେ ପରିସ୍ଫୁଟ ହୋଇ ପଡ଼ିଛି । କାନ୍ତୋପଦେଶ ଭଳି ମନୋମୁଗ୍ଧକର ତଥା ଅନ୍ତରସ୍ପର୍ଶ କରିବା ସାମର୍ଥ୍ୟ ଲାଭ କରିଛି । ପତିତ, ଦଳିତ, ଅବହେଳିତ ଜାତିର ଅଭ୍ୟୁତ୍ଥାନ ନିମିତ୍ତ କବିଙ୍କ ସମ୍ବେଦନଶୀଳତା ବହୁତ୍ର ପରିଲକ୍ଷିତ । ଏଣୁ କବିତାଗୁଡ଼ିକୁ ଉଚ୍ଚକୋଟୀର ବୋଲି କହିବା ଆଦୌ ଅଯୌକ୍ତିକ ନୁହେଁ । ତାଦୃଶ କବିତାବଳୀର ଏକତ୍ର ସଂକଳନ କରି ଗ୍ରନ୍ଥାକାରରେ ପ୍ରକାଶ କରିବାରେ ସଂକଳକ ଶ୍ରୀ ଅନ୍ନଦାଚରଣ ମିଶ୍ର ଏବଂ କବିଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ ରମଚଂଦ୍ର ମିଶ୍ର ସର୍ବଥା ଧନ୍ୟବାଦାର୍ହ । ଗ୍ରନ୍ଥାବଳୀଟି ନିଶ୍ଚିତଭାବେ ଲୋକପ୍ରିୟ ହେବ ବୋଲି ବିଶ୍ୱାସ ।

ଚଂଦ୍ରପ୍ରଭ ସାହି,
ବ୍ରହ୍ମପୁର (ଗଂଜାମ)
୩୦-୧୦-୧୯୯୮

ଡ. ବେଣୀମାଧବ ପାଢ଼ୀ

# ନୀତିବାଦୀ କବି ଲୋକନାଥ

ସ୍ୱର୍ଗତ ଡାକ୍ତର ଲୋକନାଥ ମିଶ୍ରଙ୍କର 'ନୀତିପୂର୍ଣ୍ଣ ଗୁଚ୍ଛାବଳୀ' ପାଠକରି ବିଶେଷ ଆନନ୍ଦ ଅନୁଭବ କଲି । ଲୋକନାଥ ବାବୁ ଥିଲେ ଗାନ୍ଧୀ ଗୋପବନ୍ଧୁଙ୍କ ଆଦର୍ଶାନୁପ୍ରାଣିତ ଜଣେ ଦେଶସେବକ ଓ ସ୍ୱାଧୀନତା ସଂଗ୍ରାମୀ । ସେ ମଧ୍ୟ ସ୍ୱାଧୀନ ଭାରତରେ ବିଧାନସଭାର ସଭ୍ୟ ହୋଇଥିଲେ । ତାଙ୍କର କର୍ମମୟ ଜୀବନ ଭିତରେ ସେ ଓଡ଼ିଶାର ସମବାୟ ଆନ୍ଦୋଳନରେ ଥିଲେ ଜଣେ ନିଷ୍ଠାପର ପୁରୋଧା । ସଂସ୍କୃତ ଶିକ୍ଷା ପ୍ରସାର କ୍ଷେତ୍ରରେ ମଧ୍ୟ ସେ ନେତୃତ୍ୱ ନେଇଥିଲେ । ସେ ନିଜେ ହୋମିଓପ୍ୟାଥି ଚିକିତ୍ସା ଦ୍ୱାରା ଦରିଦ୍ର ଅସହାୟ ଜନସାଧାରଣଙ୍କର ସେବା ଶୁଶ୍ରୂଷା କରି ଉକ୍ତର ଜୀବନ ଅତିବାହିତ କରିଥିଲେ । ଦେଶ, ଜାତି ଓ ଜନସାଧାରଣଙ୍କ ସେବା ଥିଲା ତାଙ୍କ ଜୀବନର ମୁଖ୍ୟ ବ୍ରତ । ସେଥିପାଇଁ ସାରା ଓଡ଼ିଶାରେ ସେ ଥିଲେ ଜଣେ ସର୍ବମାନ୍ୟ ନେତୃସ୍ଥାନୀୟ ବ୍ୟକ୍ତି । ସେ ସାନଠାରୁ ବଡ଼ ପର୍ଯ୍ୟନ୍ତ ସମସ୍ତଙ୍କର ଶ୍ରଦ୍ଧା ଓ ବିଶ୍ୱାସ ଅର୍ଜନ କରିପାରିଥିଲେ ।

ସେ କାଳର ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠଙ୍କ ପରି ସେ ଦେଶ ଓ ଜାତିର ସେବା ପାଇଁ ରାଜନୀତି କରୁଥିଲେ । କ୍ଷମତାରୂଢ ହେବାପାଇଁ ନୁହେଁ । ଭାରତର ପାରମ୍ପରିକ ଆଦର୍ଶ ଓ ମୂଲ୍ୟବୋଧ ଉପରେ ସେ ଦୃଢ଼ଭାବେ ଦଣ୍ଡାୟମାନ ଥିଲେ । ସେଥିପାଇଁ ଭାରତର ସଂସ୍କୃତି ପ୍ରତି ଲୋକମାନଙ୍କର ସଚେତନତା ଆଣିବା ପାଇଁ ମଧ୍ୟ ସେ ତାଙ୍କର ସାହିତ୍ୟକୁ ଏକ ମାଧ୍ୟମ ରୂପେ ଗ୍ରହଣ କରି ନେଇଥିଲେ । ସ୍ୱଭାବତଃ ସେ ଥିଲେ ମଧୁସୂଦନ ଓ ଗୋପବନ୍ଧୁଙ୍କ ସାରସ୍ୱତ ସାଧନା ଦ୍ୱାରା ଅନୁପ୍ରାଣିତ । ତାଙ୍କରି ଅଜସ୍ର ସାନବଡ଼ କବିତା ପାଠକଲେ ଜଣାପଡ଼େ, ସେ କିପରି ମାନବୀୟ ଆଦର୍ଶ ମୂଲ୍ୟବୋଧ ଓ ନୈତିକତାକୁ ଜୀବନର ଅବଲମ୍ବନ କରିବା ପାଇଁ ବ୍ୟାକୁଳ ଥିଲେ । 'କଳା ପାଇଁ କଳା' ବା 'ସାହିତ୍ୟ ପାଇଁ ସାହିତ୍ୟ' ତାଙ୍କ ସାରସ୍ୱତ ଜୀବନର ଲକ୍ଷ୍ୟ ନଥିଲା । ଜନସାଧାରଣଙ୍କ ଚେତନାକୁ ଓ ଜୀବନଚର୍ଯ୍ୟାକୁ ଏକ ଉଚ୍ଚତର ନୈତିକ ଆଦର୍ଶରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିବା ଥିଲା ତାଙ୍କ କବିତା-ଗୁଡ଼ିକର ମୌଳିକ ଭାବଭିତ୍ତି ।

ସେଥିପାଇଁ ତାଙ୍କର ବହୁ କବିତା ଯେପରି ଦେଶାତ୍ମବୋଧର ଆବେଗରେ ହୃଦୟସ୍ପର୍ଶୀ ହୋଇଛି, ସେହିପରି ବହୁ କବିତା ସେ ପଞ୍ଚାୟତିରାଜ, ନିର୍ବାଚନ, ଅର୍ଥନୈତିକ ଯୋଜନାଗୁଡ଼ିକ ଉପରେ ଲେଖିଛନ୍ତି । ଆଉ କେତେକ କବିତାରେ ସେ ବର୍ତ୍ତମାନର ଶାସନ ପଦ୍ଧତିରେ ମିଥ୍ୟାଚାର ଓ ଦୁର୍ନୀତିକୁ ନେଇ ବ୍ୟଙ୍ଗ ବିଦ୍ରୂପ କରିଛନ୍ତି । ଆଉ କେତେକ କବିତାରେ ସେ ସମାଜର ବହୁ କୁସଂସ୍କାର ଉପରେ ଶାଣିତ ବିଦ୍ରୂପ କରିଛନ୍ତି । ଚିରନ୍ତନ ମୂଲ୍ୟବୋଧ ଓ ନୈତିକ ଆଦର୍ଶ ପ୍ରତି ତାଙ୍କର ଧ୍ରୁବଲକ୍ଷ୍ୟ ଥିବା ହେତୁ ସେ ସାଂପ୍ରତିକ ସମାଜର ବହୁ ଦୋଷ ଦୁର୍ବଳତାକୁ ମଧ୍ୟ ପ୍ରତ୍ୟକ୍ଷଭାବେ ଲେଖନୀଦ୍ୱାରା ଆକ୍ରମଣ କରିଛନ୍ତି ।

ତାଙ୍କର ବହୁ କବିତାରେ ପ୍ରକୃତିର ସୌନ୍ଦର୍ଯ୍ୟ ଓ ମହିମା ସହିତ ଆଧ୍ୟାତ୍ମିକ ଅନୁଭୂତିର ମଧ୍ୟ ସମନ୍ୱୟ ଘଟିଛି । ସେହି ପରିପ୍ରେକ୍ଷୀରେ ସେ ବହୁ ପ୍ରାଚୀନ ଛାନ୍ଦ ଓ ରାଗରାଗିଣୀ ବ୍ୟବହାର କରି ଭାଗବତ

ଓ ମହାଭାରତର ଅନେକ ଉପାଦେୟ କାହାଣୀକୁ ସୁନ୍ଦର ଭାବମୟ କାବ୍ୟରୂପ ଦେଇଛନ୍ତି । ଏହି କାବ୍ୟରୀତିରେ ସେ ଭକ୍ତକବି ମଧୁସୂଦନଙ୍କର ଉତ୍ତରସାଧକ ଥିଲେ ବୋଲି ମଧ୍ୟ କୁହାଯାଇପାରେ ।

ମୋଟ ଉପରେ ଲୋକନାଥ ବାବୁଙ୍କ ସାରସ୍ୱତ କୃତିଗୁଡ଼ିକ ଭାବଗଠନ ଦୃଷ୍ଟିରୁ ଯେତିକି ଉପାଦେୟ— ସାରସ୍ୱତ କୀର୍ତ୍ତି ଦୃଷ୍ଟିରୁ ମଧ୍ୟ ସେହିପରି ମହାନ୍ । ସେ ନିଜେ ଥିଲେ ଜଣେ ଆଦର୍ଶବାଦୀ ନୀତିବାନ୍ ମଣିଷ । ତେଣୁ ତାଙ୍କର କାବ୍ୟ କବିତାଗୁଡ଼ିକରେ ତାଙ୍କ ଜୀବନର ସେହି ସବୁ ନୈତିକ ଓ ଭାବାଦର୍ଶଗୁଡ଼ିକର ଭାବମୟ ପ୍ରକାଶ ଘଟିଛି । ଯଦିଓ ସେ ପାରମ୍ପରିକ ଭାଷାଶୈଳୀରେ ନିଜର ନାଟନୀକ ଓ ନୈତିକ ଭାବଗୁଡ଼ିକୁ ପ୍ରକାଶ କରିଛନ୍ତି—ତଥାପି ସେଗୁଡ଼ିକରେ ତାଙ୍କର ଆନ୍ତରିକ ଭାବନାଗୁଡ଼ିକ ଏପରି ସରଳ ଓ ସହଜ ଭାବରେ ପ୍ରକାଶ କରିଛନ୍ତି ଯେ, ସେଗୁଡ଼ିକ ପାଠ କଲୁକରୁ ପାଠକର ହୃଦୟ ବିଚଳିତ ହୋଇଯାଏ ।

ସାଂପ୍ରତିକ ନୀତି ଓ ଆଦର୍ଶହୀନ ଯୁଗରେ ଲୋକନାଥ ବାବୁଙ୍କର ଏହି କାବ୍ୟ କବିତାଗୁଡ଼ିକ ନିଶ୍ଚୟ ଆମର ନବୀନ ଯୁବକ ଯୁବତୀମାନଙ୍କୁ ଏକ ଆଲୋକିତ ପଥର ନିର୍ଦ୍ଦେଶ ଦେବ, ଏଥିରେ ସନ୍ଦେହ ନାହିଁ । ମୁଁ ଏହି କବିଙ୍କର କବିତାଗୁଡ଼ିକର ପ୍ରସାର କାମନା କରୁଛି । ଇତି ।

**ମହାପାତ୍ର ନୀଳମଣି ସାହୁ**
୨୪-୯-୯୮
ଭୁବନେଶ୍ୱର

# କାବ୍ୟ ପରମ୍ପରାର ରକ୍ଷକ କବି ଲୋକନାଥ ମିଶ୍ର

କବି ଲୋକନାଥ ମିଶ୍ର ଏକାଧାରରେ ଜଣେ ଆତ୍ମସଚେତନ ସାରସ୍ୱତ ସାଧକ ଏବଂ ସମାଜ ସଚେତନ ରାଜନୈତିକ ଜନ ପ୍ରତିନିଧି । ସେ ମଧ୍ୟ ଥିଲେ ଜଣେ ଜନସେବକ ଚିକିତ୍ସକ । ପ୍ରାକ୍ ସ୍ୱାଧୀନତା ଯୁଗର ଗାନ୍ଧିବାଦୀ ନୈତିକତା ସହିତ ସତ୍ୟବାଦୀ ଯୁଗର ଓଡ଼ିଆ କାବ୍ୟ-ସାହିତ୍ୟ ପରମ୍ପରାର ମୌଳିକ ଆଦର୍ଶ, ଜାତୀୟ ଚେତନାକୁ, ପାଥେୟ କରି ସେ ନିଜର ଦୀର୍ଘ ଜୀବନକୁ ଜନସେବା ତଥା ସାରସ୍ୱତ ସାଧନାରେ ଉତ୍ସର୍ଗୀକୃତ କରିଥିଲେ । ଏହି ସାରସ୍ୱତ ସାଧନାର ଫଳଶ୍ରୁତି ସ୍ୱରୂପ ପରବର୍ତ୍ତୀ ପୀଢ଼ିର ସାଂସ୍କୃତି ସଚେତନ ଓଡ଼ିଶାବାସୀଙ୍କ ଅବଗତି ପାଇଁ ସେ ଛାଡ଼ ଯାଇଛନ୍ତି ଅନେକଗୁଡ଼ିଏ ପ୍ରକାଶିତ ଓ ଅପ୍ରକାଶିତ ଗ୍ରନ୍ଥ ଏବଂ ପାଣ୍ଡୁଲିପି । ତନ୍ମଧ୍ୟରୁ କେତୋଟିର ପୁରୁଣା ସଂସ୍କରଣ ବର୍ତ୍ତମାନ ଆମର ଦୃଷ୍ଟି ଆକର୍ଷଣ କରୁଛି ଏବଂ ଏଗୁଡ଼ିକର ନୂତନ ସଂସ୍କରଣ ପାଇଁ ଉଦ୍ୟମ ଆରମ୍ଭ ହୋଇଛି ଜାଣି ମୁଁ ବ୍ୟକ୍ତିଗତ ଭାବେ ଆନନ୍ଦିତ ।

ଐତିହାସିକ କାରଣରୁ ସମଗ୍ର ଭାରତବର୍ଷରେ ଆଧୁନିକ ଓଡ଼ିଶା ହିଁ ଏକମାତ୍ର ରାଜ୍ୟ ଯାହାର ରାଜନୈତିକ ପରିଚୟ ଭାଷାଭିତ୍ତିକ । ରାଜନୀତି ସହିତ ଭାଷା ଓ ସାହିତ୍ୟର ସଂପର୍କ ପ୍ରତିଷ୍ଠାରୁ ଏଇ ଉତ୍କଳ, କଳିଙ୍ଗ, କଙ୍ଗୋଦ, ତୋଷଳ, କୋଶଳର ସମନ୍ୱୟ ସମ୍ଭବ ହୋଇପାରିଥିଲା ଏବଂ ତା'ରି ଫଳପ୍ରାପ୍ତି ଘଟିଥିଲା ୧୯୩୬ ଏପ୍ରିଲ ପହିଲାରେ । ଆଧୁନିକ ଓଡ଼ିଶା ପ୍ରଦେଶ ଗଠନରେ ଭାଷା, ସାହିତ୍ୟର ବ୍ରହ୍ମାସ୍ତ୍ର ପ୍ରୟୋଗ ବିଦ୍ୟା ଓଡ଼ିଶାର ଲୋକଙ୍କୁ ଯେଉଁ କୁଳବୃଦ୍ଧମାନେ ଶିକ୍ଷା ଦେଇଥିଲେ ସେଇ ମଧୁସୂଦନ, ଫକୀରମୋହନ, ଗୋପବନ୍ଧୁ, ଗୋଦାବରୀଶଙ୍କ ପ୍ରେରଣାରୁ ଓଡ଼ିଶାରେ ଜନ୍ମିଛନ୍ତି ବହୁବହୁ ସମାଜସେବୀ କବି ସାହିତ୍ୟିକ ପରବର୍ତ୍ତୀ କାଳରେ ମଧ୍ୟ । ସମାଜ ସେବକର ଲକ୍ଷ୍ୟ କେବଳ ଅର୍ଥନୈତିକ ଅଭ୍ୟୁଦୟ ଦ୍ୱାରା ଗରିବଙ୍କୁ ରାତାରାତି ଧନୀ କରିବା ନୁହେଁ ସେମାନଙ୍କୁ ସଭ୍ୟ, ଶିକ୍ଷିତ, ସଂସ୍କୃତି ସଚେତନ ସ୍ୱଦେଶୀ ଓ ସର୍ବୋପରି ନୀତିବାନ ମଣିଷ କରି ଗଢ଼ିବା ମଧ୍ୟ ସମାଜସେବାର ମୂଳ ଆଦର୍ଶ । ଏଇ ଆଦର୍ଶକୁ ଆଜିର ରାଜନୈତିକ ନେତୃବୃନ୍ଦ ଭୁଲି ଯାଇଥିଲେ ମଧ୍ୟ କବି ଡାକ୍ତର ଲୋକନାଥ ମିଶ୍ର ଜଣେ ଜନପ୍ରତିନିଧି ଭାବେ ତାହା ଭୁଲିପାରିନଥିଲେ । ତେଣୁ, ବିଧାନସଭାର ସଭ୍ୟ ପଦ ବା ଆସିକା କେନ୍ଦ୍ରବ୍ୟାଙ୍କର ସଭାପତି ଦାୟିତ୍ୱ ତାଙ୍କୁ ତାଙ୍କର ମୌଳିକ ଆଦର୍ଶରୁ ବିଚ୍ୟୁତ କରିପାରିନଥିଲା । ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରତିପାଳିତ ତାଙ୍କର କାବ୍ୟ ପୁରୁଷ ତାଙ୍କୁ ଆଜୀବନ ଅଭିପ୍ରେରିତ କରିଥିଲା ସାରସ୍ୱତ ସାଧନା ପଥରେ । ପ୍ରାଚୀନ କାବ୍ୟ ପରମ୍ପରା ସହିତ ଆଧୁନିକ ଯୁଗର ସମାଜସଚେତନତାର ନିବିଡ଼ ସଂଶ୍ଳେଷଣରୁ ସେ ସୃଷ୍ଟି କରି ଚାଲିଥିଲେ, ତାଙ୍କ ସାଧ୍ୟମତେ, ଅନେକ ନୀତିପୂର୍ଣ୍ଣ ପଦାବଳୀ ଏବଂ ଖଣ୍ଡକାବ୍ୟ ଯାହାର ପରିପ୍ରକାଶ ଘଟିଛି "ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ"ରେ ଏବଂ "ସଂସାର ଚିନ୍ତା" "ନିର୍ଜନ ଚିନ୍ତା", "ବାଇ ମହାନ୍ତ ପାଞ୍ଜି", "ଏଣୁତେଣୁ" ପ୍ରଭୃତି ପୁସ୍ତକ ପୁସ୍ତିକାରେ ।

କବି ଲୋକନାଥଙ୍କର ଜନ୍ମଭୂମି ନୟାଗଡ଼ର ଶରଣକୁଳ । ତେଣୁ ଭଞ୍ଜୀୟ ରୀତି ଯୁଗର ଉତ୍ତରଦାୟାଦ ରୂପେ ସେ ନିଜକୁ ପରିଚିତ କରିବାକୁ ଭୁଲିଯିବାର ଆଶଙ୍କା ପ୍ରକଟିତ ହୁଏନା, ତାଙ୍କ କବିତା

ଓ ପଦ୍ୟ ସର୍ଜନାଗତ ସମ୍ବେଦନରେ । ଆଧୁନିକ କବିତାରେ ସାଙ୍ଗୀତିକତାର ଦାରିଦ୍ର୍ୟ ଓ ଉପଧା ଅମେଳଜନିତ ସ୍ୱେଚ୍ଛାକୃତ ଅଙ୍ଗହାନି କବିଙ୍କୁ ବିବ୍ରତ କରିଥିଲା—ସ୍ୱାଧୀନତା ପରବର୍ତ୍ତୀ କାଳର ନବଯୁଗର ପ୍ରାରମ୍ଭରେ । ତେଣୁ, ସେ ସଂପୂର୍ଣ୍ଣ ସଚେତନତାବଶତଃ ଏକ ବୈପ୍ଳବିକ ପଦକ୍ଷେପ ଗ୍ରହଣ କରିଥିଲେ ଆଧୁନିକତା ନାମଧାରୀ ରୁଚିହୀନ ସୃଜନାତ୍ମକତା ବିରୁଦ୍ଧରେ—୧୯୫୦ରେ । ଜନପ୍ରିୟ ସାହିତ୍ୟ ଓ ଯୁଗପ୍ରବାହରୁ ସୃଷ୍ଟ ଆଧୁନିକ ସାହିତ୍ୟ–ଏଇ ଦୁଇ ଧାରରେ ବିଭକ୍ତ ଭାରତୀୟ ତଥା ଓଡ଼ିଆ ସାହିତ୍ୟର ପରମ୍ପରନିଷ୍ଠ ଧାର ଅର୍ଥାତ୍ ସାଙ୍ଗୀତିକ, ରୀତିବାଦୀ କବିମାନେ ଏବେ ମଧ୍ୟ ଜନପ୍ରିୟତାର ଶୀର୍ଷରେ ଆସୀନ ହୋଇ ରହିଛନ୍ତି ଏବଂ ରହିବେ ମଧ୍ୟ । ହିନ୍ଦୀ ସାହିତ୍ୟରେ ତୁଳସୀଦାସ, କବୀର, ମୀରବାଈ ବଞ୍ଚିଛନ୍ତି ଓ ଅଧିକରୁ ଅଧିକ ଜନପ୍ରିୟତା ଅର୍ଜନ କରିଚାଲିଛନ୍ତି, ବିଂଶଶତାବ୍ଦୀର ଶେଷ ଭାଗରେ ମଧ୍ୟ । ସେହିପରି ଓଡ଼ିଶାରେ ବଞ୍ଚି ରହିଛନ୍ତି ଉପେନ୍ଦ୍ର ଭଞ୍ଜ, ଜଗନ୍ନାଥ ଦାସ ଏବଂ ଅନବଦ୍ୟ ବୈଷ୍ଣବ କବିଗଣ । ସଂସ୍କୃତ କାବ୍ୟ ପରମ୍ପର ସମଗ୍ର ଭାରତୀୟ କାବ୍ୟ ଚେତନାକୁ ଆବୃତ କରି ରଖିଛି—ଅନନ୍ତଶୟନ ବିଷ୍ଣୁଙ୍କ ଉପରେ ଅନନ୍ତଙ୍କର ସହସ୍ର ଫଣାତୁଲ୍ୟ । ଏହି ପରମ୍ପରରୁ ବିଚ୍ୟୁତ ହୋଇ କେହି ନିଜକୁ ଭାରତୀୟ ସାହିତ୍ୟିକ ବା କବି ବୋଲି ପରିଚିତ କରଇ ପାରେନା ।

କବି ଲୋକନାଥ ମିଶ୍ର ସେହି ଦୃଷ୍ଟିରୁ ଜଣେ ଭାରତୀୟ ପରମ୍ପରର ସେବକ ଓ ସ୍ୱାଭିମାନୀ ଓଡ଼ିଆ । ରାଜନୀତିରେ ନୈତିକତା ଏବଂ କାବ୍ୟରେ ଉଚ୍ଚ କାବ୍ୟାଦର୍ଶ—ଉଭୟର ସମ୍ମିଳନୀକୁ ସେ ସ୍ୱାଧୀନତା ପରବର୍ତ୍ତୀ ଯୁଗର ଭାରତୀୟ ଆଦର୍ଶ ରୂପେ ଗ୍ରହଣ କରିଥିଲେ । ଏ ଆଦର୍ଶ ଆଜିର ଭାରତୀୟଙ୍କ ପାଇଁ ଦୁର୍ଲଭ ହେଲେ ମଧ୍ୟ ଇତିହାସର ବୃତ୍ତାକାର ଗତି ସମ୍ପର୍କରେ ଅବଗତ ସଚେତନ ସମାଲୋଚକମାନେ ସିଂହାବଲୋକନ ପୂର୍ବକ ବର୍ତ୍ତମାନ ବିସ୍ମୃତି ଗର୍ଭରୁ ଭାରତୀୟତାର ପୁନରୁଦ୍ଧାର ପାଇଁ ସମୟ ପ୍ରକୃଷ୍ଟ ବୋଲି ମତପୋଷଣ କରନ୍ତି ।

ପ୍ରାଚୀନତାର ସଂରକ୍ଷଣ ସହିତ ପ୍ରାଚୀନକୁ ନବୀନ କରି ଗଢିବା ପ୍ରଚେଷ୍ଟାକୁ ବଞ୍ଚାଇ ରଖିପାରିଥିବା ବ୍ୟକ୍ତିମାନେହିଁ ଯଥାର୍ଥରେ ସଂସ୍କୃତି ସଚେତନ ସୃଜନଶୀଳ ଦେଶସେବକ । ସେଇ ଦୃଷ୍ଟିରୁ କବି ଲୋକନାଥ ମିଶ୍ର ଜଣେ ଯଥାର୍ଥ ଗାନ୍ଧିବାଦୀ ଦେଶସେବକ ଏବଂ ପରମ୍ପରର ରକ୍ଷକ, ଓଡ଼ିଆ ଭାଷା, ସାହିତ୍ୟର ନମସ୍ୟ କାବ୍ୟ ପୁରୁଷ ।

ଭୁବନେଶ୍ୱର
ତା ୧୩–୯–୯୮

ଶାନ୍ତନୁକୁମାର ଆଚାର୍ଯ୍ୟ

# ଗ୍ରନ୍ଥାବଳୀ ସମ୍ପର୍କରେ ପଦେ....

ପୂର୍ବତନ ବିଧାନସଭା ସଦସ୍ୟ ଗାନ୍ଧିବାଦୀ, ଗଞ୍ଜାମ ଆସ୍କାର ସୁପ୍ରତିଷ୍ଠିତ ସ୍ୱାଧୀନତା ସଂଗ୍ରାମୀ ତଥା ସମ୍ମାନିତ କବି ଓ ବିଶିଷ୍ଟ ହୋମିଓ ଚିକିତ୍ସକ ଲୋକନାଥ ମିଶ୍ରଙ୍କର ୧୭ ଖଣ୍ଡି ନୀତି ସମ୍ବଳିତ କବିତାଗୁଡ଼ିକ ସ୍ୱାଧୀନତାର ପରଠାରୁ ଆଜି ପର୍ଯ୍ୟନ୍ତ ପ୍ରକାଶିତ ହୋଇଛି । ତାଙ୍କର ସୁଯୋଗ୍ୟ ପୁତ୍ର ଶ୍ରୀ ରାମଚନ୍ଦ୍ର ମିଶ୍ର ଉତ୍କଳବାସୀଙ୍କ କଲ୍ୟାଣ ପାଇଁ, ସେଗୁଡ଼ିକୁ ୨ୟ ଭାଗ ଗ୍ରନ୍ଥାବଳୀରେ ସଙ୍କଳିତ କରି ଛାପିବା ଲାଗି ଉଦ୍ୟମ କରିଅଛନ୍ତି । ଏହା ଅତ୍ୟନ୍ତ ଆନନ୍ଦର ବିଷୟ । ସାମାଜିକ, ନୈତିକ ଅଧଃପତନ ବେଳେ ଏଭଳି ଉପଦେଶାତ୍ମକ ପଦ୍ୟାବଳୀର ପ୍ରାସଙ୍ଗିକତା ଅଧିକ ଅନୁଭୂତ ହେଉଛି । ଏଥିରେ ଯେଉଁ ଉଚ୍ଚକୋଟିର ଚିନ୍ତନକୁ କବିତା ମାଧ୍ୟମରେ ପ୍ରକାଶ କରାଯାଇଛି ତାହା ଏ ଯୁଗର ପାଠକ ପାଠିକାଙ୍କୁ ସତ୍‌ମାର୍ଗରେ ପରିଚାଳିତ କରିବ । ଉଦାହରଣ ସ୍ୱରୂପ "ବାଇ ମହାନ୍ତି ପାଞ୍ଜି" ସଂପ୍ରତି ମୂଲ୍ୟବୋଧର ଅବକ୍ଷୟ ବେଳେ ସରଳ ସୁନ୍ଦର ପଦ୍ୟ ଛଳରେ ବହୁ ମୂଲ୍ୟବାନ ତଥ୍ୟ ଓ ନୀତି ଉପଦେଶ— "ବାଇ ମହାନ୍ତି ପାଞ୍ଜି" କବିତା ପୁସ୍ତିକାରେ ଲିପିବଦ୍ଧ ରହିଛି । ସେଗୁଡ଼ିକ ରତ୍ନମାଳା ପରି ସାଧାରଣ ଜୀବନରେ ପ୍ରତ୍ୟେକ ବ୍ୟକ୍ତି ଧାରଣ କରିବା ଉଚିତ । ଯଥା —

ବିବେକ ଆହ୍ୱାନ ନଶୁଣି ମଣିଷ
ପାଉଅଛି କ୍ଲେଶ ଜୀବନେ ଅନିଶ
ବାଟଘାଟେ ଦେଖି ଉଠାଣି ଗଡ଼ାଣି
ଚେତୁ ନାହିଁ କେବେ ସବୁ ଜାଣି ଜାଣି ।
x x x
ପରକୁ କେବେହେଁ ନକର ନିର୍ଭର
ଆପେ କରି ଚିନ୍ତା ସୁବାଟକୁ ଧର ।
ଅଥବା
ବିଚାର ଶକତି ଥାଇ ମଣିଷର
ଅବାଟରେ ପଶି ହୁଏ ହରବର
କଣ୍ଠାଗତ ଦେଶ ବଡ଼ ଋଣଭାର
ଅପବ୍ୟବହାର ଆଜି କ୍ଷମତାର
x x x

ଅତୀତର ଇତିହାସରୁ ଉଦାହରଣ ଦେଇ ସେ ଲେଖିଅଛନ୍ତି—

କିଏ ନଜାଣିଛି ଇଟାଲୀ ଜର୍ମାନ
ପୁଣି ସର୍ବହରା ଋଷିଆ ଜାପାନ
ବିଗତ ଯୁଦ୍ଧରେ ହରାଇ ସର୍ବସ୍ୱ
ଦେଶକୁ ଗଢ଼ିଲେ ନଆଣି ପରସ୍ୱ
x x x

ସ୍ୱାଧୀନତା ସଂଗ୍ରାମୀ ମିଶ୍ର କ୍ଷୋଭ ପ୍ରକାଶ କରି ଲେଖିଛନ୍ତି —

ନପଶି ଯୁଦ୍ଧରେ ବିଶାଳ ଭରତ
ହାତ ପତାଇଲା ହଗଇ ମହତ

x x x x

ଭରତର ସଂସ୍କୃତି ଓ ସଂସ୍କାର ଲୋପ ପାଉଥିବା ଦେଖି ସେ ଲେଖିଲେ—

ମୋ ଦେଶ ସଂସ୍କୃତି ମୋ ଦେଶ ବିଭର
ଯାଉଛି ଉଭେଇ ପୁଣି ଶିଷ୍ଟାଚର

x x x x

ଏହିଭଳି ପ୍ରକାଶ କରୁଥିବା ଲେଖକ ଏ ଯୁଗରେ ଅପସଂସ୍କୃତିର ପ୍ରବେଶ ଦେଖି—ତାଙ୍କରି ମନୋବ୍ୟଥା ବ୍ୟକ୍ତ କରିଛନ୍ତି ଏବଂ ତାହା ସଙ୍ଗେ ସଙ୍ଗେ ଉପଦେଶ ମଧ୍ୟ ଦେଇଛନ୍ତି—

ନୈତିକତା ହାନୀ କରିଛି କ୍ଷମତା
ଏକଥା କହିବ ଆଜି ବୃକ୍ଷଲତା
କ୍ଷମତା କ୍ଷମତା କରୁଅଛି ବାୟା
ମଦପାଣି ଟଙ୍କା ଶାସକର ଛାୟା

x x x x

ସେହିଭଳି ଏଣୁତେଣୁ କ୍ଷୁଦ୍ର ପୁସ୍ତିକା ସାଂପ୍ରତିକ ପରିସ୍ଥିତି ଓ ମୂଲ୍ୟବୋଧର ଅବକ୍ଷୟରେ ଅଧିକ ପ୍ରାଣର ପରିପ୍ରକାଶ । ଏହା ଏକାଧାରରେ ଶିକ୍ଷଣୀୟ, ସରଳ ଓ ସୁଖପାଠ୍ୟ ହୋଇପାରିଛି । ସମାଜକୁ ସତ୍‌ପଥରେ ଆଣିବା ପାଇଁ ମିଶ୍ର ମହାଶୟ କେତେ ଉତ୍କଣ୍ଠିତ ତଥା ବ୍ୟସ୍ତଥିଲେ ତାହା ତାଙ୍କରି ରଚିତ ଗଳ୍ପାବଳୀରୁ ପ୍ରମାଣିତ ଓ ପ୍ରତିଫଳିତ ରହିଛି । ଭଷା ସରଳ ଓ ସ୍ୱାବଲମ୍ବନଶୀଳ । ସର୍ବୋପରି ଦେଶପ୍ରେମରେ ସରସ ସମୃଦ୍ଧ । ସେ ଗାନ୍ଧିବାଦୀ, ପ୍ରକାଶ ଥାଉକି ମୁଁ ମିଶ୍ରଙ୍କର ଏହି ଗଳ୍ପାବଳୀଟିକୁ ଆଧୁନିକ ଯୁଗର ପଥଭ୍ରଷ୍ଟ ରାଜନୀତିଜ୍ଞମାନଙ୍କୁ ବାଟ ଦେଖାଇବ ।

ଏହା ପ୍ରତି ପାଠାଗାରର ମର୍ଯ୍ୟାଦା ବୃଦ୍ଧି କରିବ ବୋଲି ମୁଁ ଉଚିତ ମନେ କରୁଛି । ଇତି ।

ମନୋରମା ମହାପାତ୍ର
ସମ୍ପାଦକ–ସମାଜ
୪।୧୨।୯୮
ପଦାରବିନ୍ଦ ନିଳୟ
ତୁଳସୀପୁର (କଟକ)

# ସ୍ୱୀୟ ବକ୍ତବ୍ୟ...

ମୋର ପରମପୂଜ୍ୟ ପିତୃଦେବ ସ୍ୱର୍ଗତ ଡାକ୍ତର ଲୋକନାଥ ମିଶ୍ର ୧୯୭୪ ମସିହାରେ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କ ଦ୍ୱାରା କବି ଭାବରେ ସମ୍ମାନିତ ହୋଇଥିଲେ । ତା'ପରେ ସେ ଆଉ କେତେକ କାବ୍ୟ କବିତା ଲେଖି ପୁସ୍ତିକା ଆକାରରେ ପ୍ରକାଶ କରିଥିଲେ । ୭୪ ପୂର୍ବର ଏବଂ ପରବର୍ତ୍ତୀ କାଳର ଲେଖାଗୁଡ଼ିକ ୧୯୮୪ ରେ 'ନୀତିପୂର୍ଣ୍ଣ ଲୋକନାଥ ଗ୍ରନ୍ଥାବଳୀ' ରୂପେ ପ୍ରକାଶିତ କରିଥିଲେ । କିନ୍ତୁ ତା'ପରେ ସେ, ଯେଉଁସବୁ ପୁସ୍ତକ ପ୍ରକାଶିତ ହୋଇଥିଲା–ସେଗୁଡ଼ିକୁ 'ଦ୍ୱିତୀୟ ଭାଗ' ଗ୍ରନ୍ଥାବଳୀ ରୂପ ଦେବାକୁ ମନସ୍ଥ କରିଥିଲେ । ତିରୋଧାନର ୨/୩ ମାସ ପୂର୍ବରୁ ବନ୍ଧୁ ଶିକ୍ଷାବିତ୍ ଅନ୍ନଦାଚରଣ ମିଶ୍ରଙ୍କ ଜରିଆରେ ବହିଗୁଡ଼ିକ ବ୍ରହ୍ମପୁରର 'ସ୍ୱାଧୀନ ପ୍ରେସ୍'କୁ ପଠାଇଥିଲେ । କିନ୍ତୁ ଦୁର୍ଭାଗ୍ୟବଶତଃ ତାଙ୍କର ଜୀବିତାବସ୍ଥାରେ ସେହି ଗ୍ରନ୍ଥାବଳୀ ପ୍ରକାଶିତ ହୋଇପାରିଲା ନାହିଁ । ଯାହାହେଉ ବିଳମ୍ବରେ ହେଲେ ସୁଦ୍ଧା ବର୍ତ୍ତମାନ ତାହା ପ୍ରକାଶ ପାଇଥିବାରୁ ମୁଁ ଉକ୍ତ ପ୍ରେସ୍‌ର ମାଲିକ ଶ୍ରୀ ଗୋପୀନାଥ ସାହୁ ତଥା ଅନ୍ନଦାବାବୁଙ୍କୁ କୃତଜ୍ଞତା ଜ୍ଞାପନ କରୁଛି । ଯେଉଁ ସହୃଦୟ ସାହିତ୍ୟିକ ବନ୍ଧୁମାନେ ଗ୍ରନ୍ଥାବଳୀର ସମ୍ପର୍କରେ ସେମାନଙ୍କ ସୁଚିନ୍ତିତ ମତାମତ ପ୍ରଦାନ କରିଛନ୍ତି, ସେମାନଙ୍କୁ ମଧ୍ୟ ମୋର ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛି ।

ରାମଚନ୍ଦ୍ର ମିଶ୍ର
୨୪।୧୨।୯୮
ଆସିକା

# ଜଣାଣ

ଆହେ ପ୍ରଭୁ ଆର୍ତ୍ତତ୍ରାଣ       ଜୀବକୁ ଦେଇଛ ପ୍ରାଣ
ପୁଣି କର ପରିତ୍ରାଣ ଅସମୟରେ
ତୁମ୍ଭ ବିନା କେହି ଭବେ       ହୁଅନ୍ତି କି ସାହା ଲବେ
ରହିଛନ୍ତି ଯେତେ ଜୀବ ସ୍ୱାର୍ଥ ଜଳରେ
ଧାଇଁଛନ୍ତି ମନୁଷ୍ୟ ପୂଗ
କିହେଲା କିହେଲା ଘଇ ଏ କଳିଯୁଗ । ୧ ।

ବୁଲନ୍ତି ବ୍ରହ୍ମାଣ୍ଡ ଯିଏ       ଠକିପାରିବ କି କିଏ
ଜାଣୁଛନ୍ତି ସବୁ ସିଏ ତ୍ରିଭୁବନରେ
ନଜାଣି ମାନବଚୟ       ନୁହନ୍ତି କି ଦୟାମୟ
ତାଙ୍କ ପଦେ ସଦା ଲୟ ରହୁ ମନରେ
ସ୍ୱାର୍ଥ ଆଶା ନରହୁ ଚିତ୍ତେ
ନଯାଉ ନଯାଉ ମନ ଅଧର୍ମ ବିତ୍ତେ । ୨ ।

ଆହେ ପ୍ରଭୁ ଜଗନ୍ନାଥ       ତୁମେ ଅନାଥର ନାଥ
ଭଜୁଅଛି ଲୋକନାଥ ତବ ପୟରେ
କରୁଅଛ ଯେତେ ସୃଷ୍ଟି       ପଡେ କି କାହାର ଦୃଷ୍ଟି
ଲୋଡା ବା ଅଲୋଡା ଦୃଷ୍ଟି ପଡେ ନେତ୍ରରେ
ଧର୍ମାଧର୍ମ ନାହିଁ ବିଚାର
ହେଉଅଛି ସଦାଲୋକ ଭୃତ୍ୟ ଆଶାର । ୩ ।

ବୁଲନ୍ତି ବ୍ରହ୍ମାଣ୍ଡେ ଯିଏ       ଠକିପାରିବ କି କିଏ
ଜାଣୁଛନ୍ତି ସବୁ ସିଏ ତ୍ରିଭୁବନରେ
ତୁମ୍ଭ ବିନା କେହି ଲବେ       ହୁଅନ୍ତି କି ସାହା ଭବେ
ଦେଖୁଛ ଯେତେ ମାନବ ଆଶା ସ୍ୱାର୍ଥରେ
ଧାଉଁଛନ୍ତି ଅନବରତ
ହେଉଛି ମଣିଷ ପୁଣି ପରାନୁଗତ । ୪ ।

ରାଗ ହିଂସା ରଖି ମନେ       ନକରି ଦମନ ଜନେ
ଆଶା ରଖି ସଦା ଧନେ ହରାଇ ବୁଦ୍ଧି
ନ୍ୟାୟ ଅନ୍ୟାୟ ବିଚାର       ଅଛି କି ଲବେ କାହାର
ଚଉଦିଗେ ବ୍ୟଭିଚାର ହୃଦୟ ଶୁଦ୍ଧି
ନାମପରା ଏ କଳିଯୁଗ
ଅବାଟେ ପଶନ୍ତି ଏବେ ମାନବ ପୂଗ । ୫ ।

ତବ ନାମ ଧରି ଧରି       ଜୀବନ ଯାଉଛି ସରି
ଡାକି ଡାକି ହରି ହରି ସଦା ଅଦୃଶ୍ୟ
ବିବେକ ବିଚାର ବୁଦ୍ଧି       ଏତିକି ରଖିଲେ ଶୁଦ୍ଧି
ଲୋଡବ ନାହିଁ କେ ଋଦ୍ଧି ସାରା ଜୀବନେ
ମୁକ୍ତି ପାଇଁ କର କାମନା
ଜୀବନ ଯାଉଛି ସରି କରି ଧ୍ୟାନା । ୬ ।

⊙ ⊙ ⊙

ଆଜି କୋଟିପତି କାଲି ଫକୀର
ଦେଖୁଛନ୍ତି ଲୋକେ ନୀତି ମହୀର । ୧ ।

ତଥାପି ମଣିଷ ଲୋଭରେ ପଡ
ପାପ କରମରେ ଧାଉଛି ସଢି । ୨ ।

ଅଭେଇ ଦିନକୁ ଖାଇଭଉଣୀ
କରନ୍ତି କି ଚିନ୍ତା ଯେତେ ? ଶୁଣି । ୩ ।

ଏକା ମାଆ ପେଟୁ ହୋଇ ଜନମ
ନବୁଝନ୍ତି କିଏ ବିଧି ମରମ । ୪ ।

ଆଶାର ବୋଲରେ ପଡ଼ ମାନବେ
ସ୍ୱାର୍ଥ ପଛେ ଲୋକ ଧାଆନ୍ତି ଭବେ । ୫ ।

ତେଣୁ ଲଗିଅଛି କନ୍ଦଳ ନିତି
କିଏ ବୁଝୁଅଛି ନିୟତି ନୀତି ।୬।
ଘାଣ୍ଟୁଅଛି ସ୍ୱାର୍ଥ ରହି ମନରେ
ସୃଷ୍ଟିର ଗତିକି ନ ଚିନ୍ତି ଥରେ ।୭।
ଭଇ ଭଇ ମଧ୍ୟେ ନିତି କନ୍ଦଳ
ଦେଖାଇ ହୁଅନ୍ତି ଯେ ଯାହା ବଳ ।୮।
ନ ଦେଖୁଛି କିଏ ନୀତି ନିୟତି
ଭ୍ରମରେ ପଡୁଛି ମଣିଷ ନିତି ।୯।
ଯହିଁରେ ଆନନ୍ଦ ନମିଳେ ଲବେ
ତହିଁରେ ପଡନ୍ତି ମାନବ ଭବେ ।୧୦।
ଭବନା ରହିତ ମନ ଯାହାର
ସ୍ୱାର୍ଥ ପଛେ ଥିବ ମନ ତାହାର ।୧୧।
ଦେଖିଲେ ହେଁ ନିତି ବିଧି–ବିଧାନ
ଅବାଟେ ଚାଲନ୍ତି ଲୋକ ବିତାନ ।୧୨।
ହରାଇ ବିବେକ ବିଚାର ବୁଦ୍ଧି
ନ କରନ୍ତି କିଏ ହୃଦୟ ଶୁଦ୍ଧି ।୧୩।
ଛାଡ଼ଦେଇ ସତ୍ୟ ମିଛ ଆଚରି
ଶୁଣିବେ କି କେବେ ଜପିଲେ ହରି ।୧୪।
କରିଲେ ଅନ୍ୟାୟ ପାଇବ ଦଣ୍ଡ
ବୁଝି ରଖୁ ମନେ ସଦା ପାଷାଣ୍ଡ ।୧୫।
ଆପଣା ଦୋଷକୁ ଘୋଡାଇ ଲବେ
ନ ବୁଲନ୍ତୁ କେହି ଦୁଛାକୁ ଭବେ ।୧୬।
ଯା ଯୋଗୁଁ ପାଇଛ ମନୁଷ୍ୟ ପ୍ରାଣ
କରନ୍ତୁ ଅବଶ୍ୟ ସେ ପରିତ୍ରାଣ ।୧୭।
ବିଚାରି ସନ୍ତତ ନ୍ୟାୟ ମନରେ
ସୁଖେ କଟିଯାଉ କାଳ ଭବରେ ।୧୮।
ହିଂସା ମଣିଷର ବଡ ଅଗତି
କାହିଁକି ଘୋଷୁଛ ଦିବସ ରାତି ।୧୯।
ପାଇଛ ବିବେକ ବିଚାର ବୁଦ୍ଧି
ଭିଆଏ କଳହ କେବଳ ରଦ୍ଧି ।୨୦।

ଚଉଦିଗେ ଦେଖି ଅନ୍ୟାୟ ଚୟ
ଡାକୁଛି ଆରତେ ହେ ଦୟାମୟ ।୨୧।
ହେଉଛି ଅଥୟ ସଦା ମୋ ମନ
ପକ୍ଷପାତ ବଳେ ଚାଲେ ଶାସନ ।୨୨।
ସର୍ବତ୍ର ଉତ୍କୋଚ ହେଲଣି କାଳ
ଅଦିନରେ ଆସେ ବରଷା କାଳ ।୨୩।
ଯେତେକ ଫସଲ୍ କରଇ ଚଷା
କରିଦିଏ କ୍ଷତି ଆସି ବରଷା ।୨୪।
ହନ୍ତସନ୍ତ ଦେଖୁଁ ସର୍ବତ୍ର ଲୋକେ
କିଏ ମରୁଅଛି ଉପାସେ ଭୋକେ ।୨୫।
ବିବେକ ବିଚାର ବୁଦ୍ଧି ହରାଇ
ନଯାପ ସମୟ କଳି ଭିଆଇ ।୨୬।
କିହେଲା ଶାସନ ଏ ଦେଶେ ଆଜି
ହେଉଛନ୍ତି ଧନୀ ବେପାରୀ ରଜି ।୨୭।
ହେବାରୁ ଶାସନ ଅତି ହୁଗୁଳା
ନେବା ପାଇଁ ସଦା ବାଞ୍ଛ ବୁଜୁଳା ।୨୮।
ଭଙ୍ଗି ଦେଇଥିବା କଂଗ୍ରେସ ଦଳ
କିପରି ଚେକନ୍ତି ମୁଣ୍ଡେ ସକଳ ।୨୯।
ନାହାନ୍ତି ସୁବାସ ନାହାନ୍ତି ଗାନ୍ଧୀ
ଲୋକଙ୍କ ମନକୁ ଯେ ଥିଲେ ବାନ୍ଧି ।୩୦।
ଘରେ ଘରେ ମଦ ପୁଣି ଉତ୍କୋଚ
ନେବାଲାଗି କେହି ନୁହେଁ ସଙ୍କୋଚ ।୩୧।
ରେ ମଣିଷ କିପାଁ ପିଉଛୁ ମଦ
ନିଜ ଶରୀରକୁ ଆଣୁ ବିପଦ ।୩୨।
ଅକାଳ ମରଣ କରୁ ବରଣ
ସହିବୁ ଜୀବନେ କେତେ କଷଣ ।୩୩।
ନିଜ ପରିବାର ଦିଅନ୍ତି ଗାଳି
ଜାଣି ଜାଣି ମୁଖେ ବୋଳୁଛ କାଳି ।୩୪।
କିଏ କେତେ କଥା କହେ ପଛରେ
ସଢ଼ିବ ଶରୀର ସଦା ଲାଜରେ ।୩୫।

କଟାଇବୁ ଦିନ ଖେଳ ଉପାସେ
ଫେରିବୁ ସଂସାରୁ ନିଜେ ନିରାଶେ ।୩୬।

କେଉଁଆଡେ ଗଲା ତୋର ବିବେକ
ନରଖିଲୁ କେବେ ତାହାର ଠେକ ।୩୭।

ବିଚାର ବୁଦ୍ଧିକୁ ଦେଲୁ ହଜାଇ
ନିଜ କୁଟୁମ୍ବକୁ ସଦା କନ୍ଦାଇ ।୩୮।

ଆଗ ପଛ କିଛି ନାହିଁ ବିଚାର
ପଳାଇବୁ ଦିନେ ତେଜି ସଂସାର ।୩୯।

ତୋର ପଛେ ପଛେ ତୋ ପରିବାର
ପାଉଥିବେ ଦୁଃଖ ଥରକୁ ଥର ।୪୦।

ଯେତିକି ଅନ୍ୟାୟ ପଡେ ଦୃଷ୍ଟିରେ
କିଞ୍ଚିତ ଅଛିକି ଇଶ ହୃଦରେ ।୪୧।

ପାଖରେ ରହିଛି ନ୍ୟାୟ ନିକିତି
ତୁଳୁଛନ୍ତି ସଦା ନୀତି ଅନୀତି ।୪୨।

ପାଇଛି ମଣିଷ ଶ୍ରେଷ୍ଠ ଜୀବନ
କେବେହେଲେ ନାହିଁ ଟିକେ ଚିନ୍ତନା ।୪୩।

ପାଇଅଛୁ ଜିଭ କହିବା ପାଇଁ
ପୁଣି ଅଛି ବୁଦ୍ଧି ବିଚାର ନାହିଁ ।୪୪।

ଜଡୁଆଳ ହୋଇଅଛି ବିବେକ
ରଖୁ ନାହିଁ କିଏ ତାହାର ଠେକ ।୪୫।

ନିବୃତ୍ତି ଯାହାକି କରୁଛି ମନା
ଦେଉଛି ପ୍ରବୃତ୍ତି ତାକୁ ତାଡନା ।୪୬।

ତେଣୁ ଆଶା ସ୍ୱାର୍ଥ ହୋଇ ବଢୁଆ
ଭିଆନ୍ତି କନ୍ଦଳ ଦେଖେ ଦୁନିଆଁ ।୪୭।

ଆପଣା ଲାଭକୁ ଦେଖନ୍ତି କେତେ
ତେଣୁ ପକ୍ଷପାତ ବଢୁଛି ଏତେ ।୪୮।

ଏଣେ ଦୁର୍ଯୋଧନ ତେଣେ ରାବଣ
ପରାଏ କେ କରେ ଅନୁକରଣ ।୪୯।

ନିଜ ଲାଭ ଲାଗି କ୍ଷମତା ବ୍ୟସ୍ତ
ଟିକେ ଚିନ୍ତା ନାହିଁ କାଲିକି ଅସ୍ତ ।୫୦।

ଖଡକି ନୁହେଁ କି ପେଡକି ନୁହେଁ
ଲାଜରେ ରହୁଛି କାହାର ମୁହଁ ।୫୧।

ରହିଛି ଲୋଚନ ଅନ୍ଧ ଦୂରରେ
ଶ୍ରବଣ ରହିଛି ବହୁ ଦୂରରେ ।୫୨।

ଏ ତ କଳିଯୁଗ ମହା ବିଷମ
ଅଛି କି ଲୋକର ଲବେ ସଂଯମ ।୫୩।

ଏଣେ ଅଦାଲତ କଲେ ଅନ୍ୟାୟ
କହିବାକୁ ନାହିଁ କାର ଉପାୟ ।୫୪।

ଦେଖ ହସ କାନ୍ଦ ଲାଗିଛି ନିତି
ଅନବରତ ତା ପ୍ରକୃତି ନୀତି ।୫୫।

ଚାଲିଛି କରମ ମନ ଇଚ୍ଛାରେ
ଦେଖାଇ ବଡାଇ ଏହି ସଂସାରେ ।୫୬।

କାହାର ଶକତି ଅଛି କି ଲବେ
ଦେଖିବାକୁ ଟିଠି ବିଶାଳ ଭବେ ।୫୭।

ତ୍ରେତୟା ଯୁଗରେ ରାବଣ ବଂଶ
ଦ୍ୱାପରେ କୌରବେ ହେଲେ ବିଧ୍ୱଂସ ।୫୮।

ଅନୀତିରେ ଯାଇ ଭେଟିଲେ ଯାହା
ପୁରାଣେ ବର୍ଣ୍ଣିତ ହୋଇଛି ତାହା ।୫୯।

ତେଣୁରେ ମଣିଷ ଚିନ୍ତା ଶକତି
ସୁଧିବୁ ନିରତ ରଖି ଭକତି ।୬୦।

ଯାହା ଯୋଗୁଁ ଲୋକ ଶ୍ରେଷ୍ଠ ଜୀବନ
ପାଇଛି ଜଗତେ ଦେଖେ ଲୋଚନ ।୬୧।

ସେ ପଦ କମଳେ ରଖି ମନକୁ
ତୁଳି ନିରନ୍ତର ନ୍ୟାୟ ଦଣ୍ଡକୁ ।୬୨।

ପ୍ରଶଂସା ନିନ୍ଦାକୁ ରଖି ଦୃଷ୍ଟିରେ
କିଛି ନୁହେଁ ଚିର ମର ସୃଷ୍ଟିରେ ।୬୩।

ଅଲ୍ପେଇ ଦିନକୁ ଧନ ଜୀବନ
ଜାଣିଲା କି ଲୋକେ କାହାର ମନ ।୬୪।

ହିଂସା କପଟତା ଖେଳୁଛି ଖେଳ
ଭାବିବାକୁ ନାହିଁ କାହାର ବେଳ ।୬୫।

କେଉଁଠାରେ ନାହିଁ ବିଚାର ଶକ୍ତି
ଗୁରୁଜନଠାରେ ନାହିଁ ନା ଭକ୍ତି । ୬୬ ।

ଦଶରଥ ଘରେ ମନ୍ଥରା ଯଥା
ଗ୍ରାମେ ଗ୍ରାମେ ଆଜି ଦେଖୁଛି ତଥା । ୬୭ ।

ମଦିରା ପାନରେ ଲୋକେ ଉନ୍ମତ୍ତ
ତା ବିନାଶ ଲଗି ଚାଲୁ ଯତନ । ୬୮ ।

ପକ୍ଷପାତ ଆଜି ଧରିଛି ତଣ୍ଟି
କୃଷକ ଯେସନ ଲଙ୍ଗଳ କଣ୍ଟି । ୬୯ ।

ପରମେଶ ପଦେ ରଖିଣ ମନ
ସାର୍ଥକ କରରେ ନିଜ ଜୀବନ । ୭୦ ।

ନ୍ୟାୟ ପନ୍ଥା ଧରି ଚଳ ଜୀବନେ
ଅନ୍ୟାୟକୁ ସ୍ଥାନ ନଦିଅ ମନେ । ୭୧ ।

ଯାହାକୁ କହୁଛ କବି ସମ୍ରାଟ
କରିଛନ୍ତି ଗୀତେ ନାନା ବିଭ୍ରାଟ । ୭୨ ।

ରମଣୀମାନଙ୍କ ରୂପ ବର୍ଣ୍ଣନା
ନିନ୍ଦନୀୟ ସଦା ନାହିଁ ଚେତନା । ୭୩ ।

ଧିକରେ ମଣିଷ ଧିକ୍ ବିଚାର
କେଉଁଆଡେ ଗଲା ବୁଦ୍ଧି କାହାର । ୭୪ ।

ଦେଖିଲେ ହେଁ ନିତି ବିଧି - ବିଧାନ
ତହିଁକି ନଯାଏ ନୟନ କାନ । ୭୫ ।

ପରର ଅର୍ଥରେ ଚଳେ ଶାସନ
କହିବ ଅବଶ୍ୟ ସଦା ଭୁବନ । ୭୬ ।

କେଉଁଆଡେ ଗଲା ଗାନ୍ଧିଜୀ ବୁଢା
ଦେଖିଥାନ୍ତା ବଣ୍ଡା ମଦ କୁକୁଡା । ୭୭ ।

କରିବ କରମ ବଢାଇ ବିତ୍ତ
ଭାବିଲା କି କେବେ ତାହାର ଚିତ୍ତ । ୭୮ ।

ନିତି ଯା ଦେଖୁଛ ଚଉଦିଗରେ
ଦିନେ ନଭାବିଲୁ କେବେ ମନରେ । ୭୯ ।

କାହିଁକିରେ ମନ ଜମାଉ ଏତେ
କେହି ନେଇ ନାହିଁ ତହିଁରୁ କେତେ । ୮୦ ।

କିଏ ଶୁଣୁଅଛି କାହାର ଦୁଃଖ
ସମସ୍ତେ ଲୋଡନ୍ତି ଆପଣା ସୁଖ । ୮୧ ।

ଦେଖିଲେ ହିଁ ନିତି ସୃଷ୍ଟି ଭବର
କୁତ୍ସିତ ଭାବନା ନାହିଁ ଲୋକର । ୮୨ ।

ଧିକ୍‌ରେ ମଣିଷ ଧିକ୍ ଜୀବନ
କାହିଁକି ସ୍ୱାର୍ଥରେ ବଳାଉ ମନ । ୮୩ ।

ରହିଅଛି କାନ ପୁଣି ନୟନ
ଶୁଣୁଛୁ କରୁଛୁ ନିତି ଦର୍ଶନ । ୮୪ ।

ଦୁଆର ମୁହଁରେ ରହି ବିବେକ
ତା ବୋଲ ମାନିଲେ ରହନ୍ତା ଟେକ । ୮୫ ।

ବିଚାରକୁ ନେଇ ନକରୁ କର୍ମ
ବୁଡାଇ ଦେଉଛୁ ସକଳ ଧର୍ମ । ୮୬ ।

ଭବିଷ୍ୟତ କଥା ନଭାବୁ ଲବେ
ଅନ୍ଧାର ଘରେ ତୁ ପଶିବୁ ଯେବେ । ୮୭ ।

ଅବା ରକ୍ତ ବୋହି ହୋଇବ ଗାଡ
ବାଡିଲେ ଗୋଡକୁ ଭାଙ୍ଗିବ ହାଡ । ୮୮ ।

ମଣିଷ ଜୀବନେ ରହିଛି ବୁଦ୍ଧି
ନକରୁଛୁ କିପାଁ ଅନ୍ତର ଶୁଦ୍ଧି । ୮୯ ।

ଅଢେଇ ଦିନକୁ ଆସିଛୁ ଭବେ
କି ଜନ୍ମ ପାଇବୁ ବିଚାର ଲବେ । ୯୦ ।

ଧନ ଧନ ବୋଲି ନଯାଉ ଚିତ୍ତ
କରିବ କଅଣ ବଢାଇ ବିତ୍ତ । ୯୧ ।

ଉଠାଣି ଗଡାଣି ସ୍ଥଳ ଭିତରେ
ତଥା ଉର୍ମିମାଳ ଦେଖ ସାଗରେ । ୯୨ ।

ନ୍ୟାୟ ଅନ୍ୟାୟକୁ ସଦା ଦୃଷ୍ଟିରେ
ରଖିବାକୁ ହେବ ଏହି ସୃଷ୍ଟିରେ । ୯୩ ।

ଯେତେ ରହୁଁଥାଅ ନିଜ ପିଠିକି
ଦିଶିବନି କେବେ ନିଜ ଆଖିକି । ୯୪ ।

ଖେଳୁଛି ପବନ ନିଜ ଦେହରେ
ବାଜିବା ଆସିବା କେ ଦେଖିପାରେ । ୯୫ ।

କରିବ ଯେବେ ଯେ ସୃଷ୍ଟି କି ଲୟ
ଜାଣିବ ଅବଶ୍ୟ ଈଶ୍ୱରମୟ । ୯୬ ।
ନିତି ଦେଖି ଦେଖି ସୃଜନ ନୀତି
କାହାପାଇଁ ଏତେ ରଖୁ ସାଇତି । ୯୭ ।
ଧର୍ମ ଅଧର୍ମକୁ ବିଚାରି ଜନେ
କରମ କରନ୍ତୁ ସଦା ଭୁବନେ । ୯୮ ।
ବୁଲନ୍ତ ଈଶ୍ୱର ଚଉଦିଗରେ
ସବୁ ଜାଣୁଛନ୍ତି ନିମିଷକରେ । ୯୯ ।

⊙ ⊙ ⊙

କିଏ ସେ କାହାର ଭବିଦେଲେ ଥରେ
ହେଉଛି ବାଉଳି ମନ
ଆପଣା ଶରୀରେ ଅଥବା ବାହାରେ
ଅଦୃଶ୍ୟ ସଦା ପବନ । ୧ ।

ପ୍ରବୃତ୍ତି ନିବୃତ୍ତି ଏ ଶରୀରେ ଥାଇ
ଲଗୁଛନ୍ତି କଳି ନିତି
ଭବୁଥିଲେ କିଏ ନଥାନ୍ତା ଦୁର୍ଦ୍ଦଶା
ରହିଥାନ୍ତା ଦେଶପ୍ରୀତି । ୨ ।

ଦେଶପ୍ରତି ମନ ଥିଲା ଯାହାଙ୍କର
ନାହାନ୍ତି ଏ ଦେଶେ ଆଜି
ହିଂସା କପଟତା ରହି ମନେ ମନେ
କରିଲାଣି ସ୍ୱାର୍ଥ ପାଜି । ୩ ।

ନ୍ୟାୟ ଅନ୍ୟାୟକୁ ନ ବାଛ ମଣିଷ
ଗୋଡ଼ାଇ ଆଶା ପଛରେ
ସ୍ୱାର୍ଥ ଗର୍ଣ୍ଣି ଧନ ଫିଟାଇ ନପାରି
ଯାଇଛି ଲାଖି ଧନରେ । ୪ ।

ପ୍ରାଣୀ ମଧ୍ୟେ ଶ୍ରେଷ୍ଠ ମଣିଷ ଜୀବନ
ଅଛି ଜାଣିବା ଶକତି
ନାନା ଭବନାରେ ଛନ୍ଦ ହୋଇ ଲୋକ
ନିରତ ଅଛି ର ମତି । ୫ ।

ପାଇଛି ଶକତି ଦର୍ଶନ ଶ୍ରବଣ
ପୁଣି ପାଇଅଛି ବୁଦ୍ଧି
ହେଉଅଛି ଘାର୍ଣ୍ଣି ସାରା ଜୀବନରେ
ମନେ ଥାଇ ସଦା ଋଦ୍ଧି । ୬ ।
ଜୀବ ମଧ୍ୟେ ଶ୍ରେଷ୍ଠ ମଣିଷ ଜୀବନ
ଅଛି ଜାଣିବା ଶକତି
ନାନା ଭବନାରେ ଛନ୍ଦ ହୋଇ ସିନା
ନିରତ ଅଛି ର ମତି । ୮ ।
ଆପଣା ସ୍ଥାନକୁ ଯାଉଛନ୍ତି ଜୀବ
ସଙ୍ଗେ ସଙ୍ଗେ ମରଣର
ତେବେ ଲୋକଗଣ ନ ବିଚାରି ଲଭେ
ଲୋଭେ ପଡ଼ ହରବର । ୯ ।

⊙ ⊙ ⊙

ପ୍ରବୃତ୍ତି ନିବୃତ୍ତି ନ ଲାଗିଲେ କଳି
ଅବଶ୍ୟ ଏ ଦେଶ ଦିନେ ଯିବ ଜଳି । ୧ ।
କୋଟି କୋଟି ଟଙ୍କା ଋଣ ଏ ଦେଶର
ଏଥି ପଡ଼ ଦୃଷ୍ଟି ନପଡେ ଲୋକର । ୨ ।
ଏ ଦେଶ ମାଟିରେ ପାଇଲୁ ଜନମ
ନାହିଁ କା ମନରେ କିଞ୍ଚିତ ସଂଯମ । ୩ ।
ନିଜ ପାଇଁ ଲୋକେ ଖୋଜନ୍ତି ଉପାୟ
ନ ଖୋଜନ୍ତି କେବେ ନ୍ୟାୟ ବା ଅନ୍ୟାୟ । ୪ ।
ନିଜ ସ୍ୱାର୍ଥ ଲାଗି ଧାଉଁଅଛି ମନ
ଦେଖୁ ମନୁଷ୍ୟକୁ ଟାଣେ ପ୍ରଲୋଭନ । ୫
ବିଚାର ଶକତି ଅଛି କି କାହାର
କରିବାକୁ କେବେ ଦେଶ ଉପକାର । ୬ ।
ଗତ ଜନଗଣା ଜାଣିଥିବେ ଲୋକେ
ନଫିଟେ କା ପାଟି ରହିଲେ ହେଁ ଭେକେ । ୭ ।
ଆଜ୍ଞା ଠକାଠକି ଚାଲିଛି ଦେଶରେ
ବୁଝୁଛି କିଏ ସେ ଯା ମନ ସ୍ୱାର୍ଥରେ । ୮ ।
ମହାତ୍ମାଙ୍କୁ ମାରି ଦେଶ ଛାରଖାର
ସତ ଅବା ମିଛ କରନ୍ତୁ ବିଚାର । ୯ ।

⊙ ⊙ ⊙

## ବାସ୍ତବତା

ହସିବା କାନ୍ଦବା ବିଧାତା ଭିଆଣ
ନ ଦେଖୁଛି କିଏ ନିଜେ ଏ ଭବେ,
ଜାଣି ଜାଣି ସବୁ ନ ଜାଣିଲା ପରି
ରହୁଛି ମଣିଷ ନଖବି ଲବେ ।

ପ୍ରାଣବାୟୁ ଦେହୁ କେତେବେଳେ କାର
କେଉଁବାଟେ ଖସିଯାଏ ପଳାଇ,
ପାରୁଛି କି ଜାଣି ତ୍ରିଭୁବନେ କେହି
ଶତ ଶତ ଲୋକ ପାଖରେ ଥାଇ ।

ବିକଳ ବୋବାଳି କେତେ ଲୋକଙ୍କର
ଉଚ୍ଛୁଳାଇ ଦିଏ ସିନା ଘରକୁ,
ପଶୁଛି କି କାନେ ଚୋଟିଏ ଅକ୍ଷର
କେବଳ 'ହୁଅଁନା' ଶୁଭେ ଦାନ୍ତକୁ ।

ଅଡ଼ଶା ପଡ଼ଶା ଦିଅନ୍ତ ସାନ୍ତ୍ୱନା
ଘଡ଼କ ଉତ୍ତାରୁ ପାଛି କାହାର,
ଶୁଭୁ ନାହିଁ ଆଉ ଦେଖି ବିଚିତ୍ରତା
ଶବ ଜାଳିବାକୁ ଚଳେ ବିଚାର ।

ଜେତେ ଆଶା ମଞ୍ଜି ଦେଇଥିଲା ପୋତି
ନ ପାଇବ ଆଉ ମଦାଏ ପାଣି
ଉଷୁନା ଧାନ କି ଧାନ ହେବ କାହିଁ
କହୁ ତ ମଣିଷ ଥିଲେ ବା ଜାଣି ।

ଜୀବନ ଭିତରେ କରିଥିଲେ 'ଭଲ'
ଶୁଭିବ ପ୍ରଶଂସା ଛାଡ଼ିଲେ ଭବ,
କରିଥିଲେ ମନ୍ଦ କାର୍ଯ୍ୟ କେତେବେଳେ
ପଡ଼ିବ କାନରେ ନିନ୍ଦାର ରବ ।

କିଏ କାହା ସଙ୍ଗେ ହେବ ନାହିଁ ଭେଟ
ଅଢ଼େଇ ଦିନକୁ ଏତେ କପଟ,
ରଖି ହୃଦୟରେ ଯାଉଛି ଜୀବନ
କାହା ପାଇଁ ଭଲ, ଏ ଛଟପଟ ।

⊙ ⊙ ⊙

## ଗୀତ—ଅଭିଆଡ଼ୀ

ପେଟକୁ ନିଅଣ୍ଟ ହେବାରୁ ଅର୍ଜନ
ଝିଅ ପାଇଁ ବର କରି ନପାରି
ମୁଣ୍ଡ ଟୋଡି ପୋତି ଯାଉଅଛି ବାପ
ଶୁଣୁଛି କିଏ ସେ ତାର ଗୁହାରି ।

ସଂଖ୍ୟାଧିକ ବୋଲି କହିବା ଯାହାକୁ
ଖାଉଛି କି ପେଟ ପୂରଇ ଅନ୍ନ
ଗାନ୍ଧିଜୀଙ୍କ ବୋଲ ନଶୁଣି ଶାସକେ
ଆପଣାର ଲାଭେ ରଖିଲେ ମନ ।

ଗାଆଁ ଗାଆଁ ବୁଲି ଅଭିଆଡ଼ୀ ଏଣେ
ରହିଲେଣି କେତେ ପାରିବୁ ଜାଣି
ତୁଚ୍ଛାକୁ ଗରବ କରନ୍ତି ଶାସକେ
ଯୋଡନ୍ତ ସଭରେ ମିଛ ବଖାଣି ।

କାହାକୁରେ ଲୋଡା ସେତୁ ଶୁଭଦିଆ
ଅଭିଆଡ଼ୀ ଝିଅ ମାଆର ଦୁଃଖ
ବୁଝୁଛି କି କେହି ଗାଆଁ ଗାଆଁ ଯାଇ
ଚଉକିରେ ବସି ଲଭେ ସେ ସୁଖ ।

କେତେ ଉପାସରେ ଅହିଂସା ନୀତିରେ
ସର୍ବସ୍ୱ ବରଜି ପିନ୍ଧି ଖଦଡ
ଆଣିଲେ ଯେ ଦେଶ ତାଙ୍କ ଉପଦେଶ
କିଅଟି ତ ନଜାଣି ବୋଲଅ ବଡ ।

ଧାନ ନଉତି କି ଟଙ୍କା ଥିଲା ଦର
ପଞ୍ଚତ୍ରିଂଶ ବର୍ଷ ତଳେ ଦେଶର
ହିସାବ କରନ୍ତୁ ଗଣିତଜ୍ଞଗଣ
ଏବେ ତ୍ରିଂଶ ଟଙ୍କା କିପାଁ ତା ଦର ।

ଏ ଦେଶର ଖାଦ୍ୟ ଯାଉଛି ପଳାଇ
ସୂତ୍ରରେ ବିଦେଶ କାହା ସଲାରେ
ଶାସକ ଗୋଷ୍ଠୀଏ ନପାରନ୍ତ ଜାଣି
ଅବା ପାଉଛି କେ ଭାଗ ଏଥିରେ ।

⊙ ⊙ ⊙

# ଜାତକ ଦେଖା

ତୁଚ୍ଛାକୁ ଲଗିଛି ଜାତକ ଦେଖା
କେ କରିବ ଆନ କପାଳ ଲେଖା ।

ଯାହା ଘଟୁଅଛି ଏହି ମର୍ତ୍ତ୍ୟରେ
ଜାଣୁଛି କି କିଏ କେଉଁ ଯୁଗରେ ।

ନବେ ମସିହାର ବଳି କି ହେତୁ
ଅଦ୍ୟାପି ରହିଛି ତାହାର ନେତୁ ।

ଥିଲା କି ପାଞ୍ଜିରେ କହନ୍ତୁ ସତ
ଜ୍ୟୋତିଷମାନଙ୍କ ଗଲା ମହତ ।

ବିଧାତା ବିଧାନ ଘଟୁଛି ଯାହା
ସାଧ୍ୟ ନାହିଁ କା'ର ଜାଣିବା ତାହା ।

ଭାଗ୍ୟ ନିୟନ୍ତ୍ରଣ କରୁଛି ଯିଏ
ରହନ୍ତି ଅଦୃଶ୍ୟ ସନ୍ତତ ସିଏ ।

ପଞ୍ଚାନବେ ବଳି କରିଲେ ହେତୁ
ଚୌଦିଗେ ଭଙ୍ଗିଲା ଅନେକ ସେତୁ ।

ଠକିବାକୁ ନାହିଁ କାହାର ସାଧ୍ୟ
ସହିବାକୁ ଲୋକ ହେଉଛି ବାଧ୍ୟ ।

ନିତି ହଣାହଣି ପଡୁଛି କାନେ
ହେଉଛନ୍ତି ତୁନି ଜ୍ୟୋତିଷମାନେ ।

ଦେଖୁ ପାଞ୍ଜି ଦେଖା ସଦା ଅନ୍ୟଥା
ନରହୁ ନରହୁ କେବେ ଏ ପ୍ରଥା ।

ସମୟ ଘଣ୍ଟାର ନୁହଁଇ ଏକ
ପୁଛନ୍ତୁ ପୁଛନ୍ତୁ କେତେକ ବିବେକ ।

ପୃଥିବୀରେ ଖ୍ୟାତି ଉର୍ଢି ପତାଣି
ଫେରିଲେ ହତାଶେ ଦିନ ନଢାନ୍ତି ।

ପୃଥିବୀରେ ଖ୍ୟାତି ନଥିଲା କାର
ଏଣୁ ପଢ଼ ଲୋକ କରୁ ବିସ୍ମୟ ।

ଥିଲା କିରେ ପ୍ରଥା ପୂର୍ବେ ଏ ଦେଶେ
ପଢ଼ନ୍ତୁ ପଢ଼ନ୍ତୁ ବେଦ ଜ୍ୟୋତିଷେ ।

ଦେଇଥିଲେ ଯୋଗ ବଶିଷ୍ଠ ଋଷି
ଶୁଣି ଦଶରଥ ହୋଇଲେ ଖୁସୀ ।

ନୋହିଲା ସେ କଥା ଅଛି ପୁରାଣେ
ଯୁଗେ ଯୁଗେ ତାହା ଥିବ ଜଣାଣେ ।

"ଭାଗ୍ୟଂ ଫଳତି ସର୍ବତ୍ର
ନ ବିଦ୍ୟା ନ ଚ ପୌରୁଷଂ ।"



ଲୋଚନେ ପଡୁଛି ଜନମ ମରଣ,
କାଟୁଛ କି ଚିନ୍ତା ତହିଁର କଷଣ ?
ନାରାୟଣ ନାମ ଘୋଷି ନିରନ୍ତର,
ଥୟ କର ତୁମ ଦୂଷିତ ଅନ୍ତର ।
ମିଶି ପରସ୍ପର ଦେଶର ଉନ୍ନତି,
ଶ୍ରଦ୍ଧା ସହ କଲେ ଘୁଞ୍ଚିବ ବିପତ୍ତି ।
ଘଣ୍ଟ ବାଜିଲଣି ଗାଆଁ ମନ୍ଦରରେ,
ରବ୍ୟୁଦୟ ଦେଖି ପଗଟୀ ବକ୍ଷରେ ।
ଆକାଶରେ ତାର ଗୋଟିଏ ଗୋଟିଏ,
ସିତକର ସହ ଅଦୃଶ୍ୟ ଅଭିଏଁ ।
କାଆ କାଆ ରବେ ଚେତାଇ ବାୟସେ,
ଉଠ ଶେଯୁଁ ବୋଲି ଡାକନ୍ତ ରଭସେ । (ଶୀଘ୍ର)




# ସଂସାର ଚିନ୍ତା




( ରାଗ-ଚୋଖି )

ଶରଣ ରକ୍ଷକ ହରି — ତୁମେ ଭବସିନ୍ଧୁ ତରୀ
ଦୁଷ୍ଟଙ୍କୁ ଦମନ କରି ଅର୍ଜୁଛ ଯଶ
ଜୀବକୁ ଦେଇ ଜନମ — ପରଖୁଛ ତା କରମ
ନ ଜାଣି ଟିକେ ଅଧମ ଜୀବନ ରସ
ଉପଭୋଗେ ବଳାଏ ମନ
ଧିକ ଧିକ ମଣିଷରେ, ଧିକ ଯୌବନ । ୧ ।

ଡେରିଥାଅ ସଦା କାନ — ଶୁଣିବାକୁ ଭକ୍ତ ଗାନ
ନାହିଁ କା'ର କିଛି ଜ୍ଞାନ ତୋ ଗତି ରୀତି
ଜାଣନ୍ତ କି କେହି ଲବେ — ତୁଚ୍ଛାକୁ ଧନ ଗରବେ
ଉଦ୍ଭ୍ରାନ୍ତ ଟୋଳ ଭବେ ଦେଖୁଛ ନିତି
ନାହିଁ କା'ର ଜ୍ଞାନ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ । ୨ ।

ଯା ନାମ କରୁଣା ସିନ୍ଧୁ — ତହିଁରୁ ପାଇଲେ ବିନ୍ଦୁ
ଉର୍ଦ୍ଧ୍ୱ ବା ହୃଦେ ଇନ୍ଦୁ ଭବ ଜଳରେ
ପଡ଼ ଯାଉଅଛି ବୁଡ଼ — ଅତୀତକୁ ସଦା ଦୃଢ଼
ପ୍ରାଣପକ୍ଷୀ ଯିବ ଉଡ଼ କାହା ସଙ୍ଗରେ
ଭେଟିବ କି କାହା ଜୀବନ
ଧିକ ଧିକ ମଣିଷରେ, ଧିକ ଯୌବନ । ୩ ।

ଅନ୍ୟାୟକୁ ଲୋପ କର — ଆହେ ପ୍ରଭୁ ଚକ୍ରଧର
ହେଲଣି ପ୍ରବଳତର ମନ ଅଥୟ
ସ୍ୱାର୍ଥ ଲାଗି ତୁଚ୍ଛା କଳି — ମହତ୍ତ୍ୱକୁ ଦେଇ ବଳି
ପଡ଼ିଲେଣି କେତେ ଭଳି ଲାଗୁଛି ଭୟ
ଭବ ଢଙ୍ଗ କରି ଦର୍ଶନ
ଧିକ ଧିକ ମଣିଷରେ, ଧିକ ଯୌବନ । ୪ ।

ପଡ଼ିଲେ ମାଟିରେ ପଡ଼ — କୁଆଁ କୁଆଁ କରି ରଡ଼
ମାଆର କୋଳରେ ବଢ଼ି ହେଲୁ ମଣିଷ
ପିଲା ଦିନର ସେ କଥା — ଘେନୁ ନାହିଁ ଟିକେ ମଥା
ଭବିଲେ ଲାଗୁଛି ବୃଥା ଚିନ୍ତା ଅନିଶ,
ଆପଣାର ସୁଖ ବର୍ଦ୍ଧନ
ଧିକ ଧିକ ମଣିଷରେ, ଧିକ ଯୌବନ । ୫ ।

ଲୋଡ଼ିଲୁ ସଙ୍ଗ ଯାହାର — ଦେଖି ସେ ତୋର ଆଦର
ଚିଆରିଲା ବାର ବାର ନ ଦେଲୁ କାନ
ଧଇଲୁ ଆପଣା ବାଟ — ଭିଆଇଲୁ ନାନା ନାଟ
ପରକୁ ବଢ଼ାଇ ଛାଡ଼ି ନାହିଁ ସମ୍ମାନ
ଲୋଡ଼ିଲୁ ସତତ ବ୍ୟସନ
ଧିକ ଧିକ ମଣିଷରେ, ଧିକ ଯୌବନ । ୬ ।

ହୃଦୟେ ଆସୁ ଭକତି — ଚପଳ ନରହୁ ମତି
ଉପୁଜି ଧୀରେ ଶକତି ଯାଉ ଜୀବନ
ତବ ନାମ ଧରି ଧରି — ତବ ପଦ ସେବା କରି
ଏତିକି ମାଗୁଣି ହରି ସବୁ ସ୍ୱପନ
ଅନ୍ୟ ଯାହା ଦେଖେ ନୟନ
ଧିକ ଧିକ ମଣିଷରେ, ଧିକ ଯୌବନ । ୭ ।

## ଶାସକ ବା ରାଜାର କର୍ତ୍ତବ୍ୟ

ସର୍ପିଣୀ ମୁଖେ ଚୁମ୍ବନ କଠିନ ଯେମନ୍ତ
ରାଜନୀତି ଅବଲମ୍ବ ଦୁଃସାଧ୍ୟ ତେମନ୍ତ ।
କାମ କ୍ରୋଧ ଲୋଭ ମୋହ ମାତ୍ସର୍ଯ୍ୟାଦି ଅରି
ପ୍ରଜାନୁରଞ୍ଜନ ଲାଗି ପରିହାର କରି,
ଅବଲମ୍ବି ମିତାକ୍ଷର ଶାସନର ଭର
ତୁଲାଇଲେ ପ୍ରଜା ତୋଷ ଲଭଇ ଅପାର

ପ୍ରତ୍ୟୁଷରୁ ଉଠି ଭୂପ ପୁର ପୂଜା ସାରି
ରାଜ କଥା ବୁଝିବେ ଅମାତ୍ୟ ହଜାରି ।

ନରହିଲେ ସଦାଗ୍ରତ ପରଜା ପାଳନେ
ପ୍ରସରଇ ଅସନ୍ତୋଷ ଭବନେ ଭବନେ ।

ରାଜ୍ୟରେ ଅରାଜକତା କରଇ ପ୍ରବେଶ
ନ୍ୟାୟ ପ୍ରତି ସଦା ଦୃଷ୍ଟି ନ ଦେଲେ ନରେଶ ।

ଅନ୍ୟାୟକୁ ଅବଲମ୍ବି କେ ତିଷ୍ଟିତି ଭବେ
ଅବଶ୍ୟମ୍ଭାବି ପତନ ଅନ୍ୟାୟର ଜବେ ।

ଶତ୍ରୁତା ମିତ୍ରତା ଜନ୍ମେ ଆଚରଣ ବଶେ,
ଅନ୍ତର ବିଶୁଦ୍ଧି ସାଥି ପଉରଷ ଯଶେ ।

ମଣିଷ ଜନମ ଲଭି ହେଲେ ନୀତି ଭ୍ରଷ୍ଟ
ଅଳପ କାଳରେ ସେହି ଭୋଗେ ବହୁ କଷ୍ଟ ।

ଅନ୍ଧକୋଠା ଭିତରେ ପଡୁଛି ନଜର,
ନିଜ କୃତ ଦୁଷ୍କୃତିରୁ ସିନା ହରବର ।
ସାକ୍ଷୀ ସିନା ଅନ୍ତରାତ୍ମା ସତତ କର୍ମରେ,
ଲଭିବ ବିଷମ ଦଣ୍ଡ ପର ଜନମରେ ।

ଦୁଷ୍ଟକୁ ରଖିବ ଦୂରେ ଶିଷ୍ଟକୁ ପାଶରେ
ରଖିଲେ ସାହାଯ୍ୟ ମିଳେ ବିପଦ କାଳରେ ।

ପାପପୁଣ୍ୟ ନ ବିଚାରି କରେ ଯେ କରମ
ନ ଲଭେ ସେ ସିଦ୍ଧି କେବେ ବୃଥା ତା ଜନମ ।

ଅପରାଧୀ ନ ପାଇଲେ ଯଥା ଯୋଗ୍ୟ ଦଣ୍ଡ
କ୍ଷଣେ ବଢେ ସଙ୍କଟ ଦେଶ ଖଣ୍ଡ ଖଣ୍ଡ ।

ପ୍ରଜାକୁ କରଇ ରକ୍ଷା ଦଣ୍ଡହିଁ କେବଳ,
ଦଣ୍ଡ ଭୟେ ଭାଙ୍ଗିଯାଏ ଅପରାଧୀ ବଳ ।

ଚୋରି କରିବାକୁ ଚୋର ନକରେ ସାହସ,
ଦଣ୍ଡସିନା ନିରନ୍ତର ପୀଡଇ ମାନସ ।

ନଥାନ୍ତା ଜଗତେ ଯେବେ ଦଣ୍ଡର ବିଧାନ,
ନୀଚଠାରୁ ଉଚ୍ଚ କେବେ ନପାନ୍ତା ସମ୍ମାନ ।

ଦଣ୍ଡକୁ ବୋଲନ୍ତି ଧର୍ମ ପଣ୍ଡିତ ସରବେ,
ଦେଖାଏ ସେ ନ୍ୟାୟପଥ ମଣିଷକୁ ଭବେ ।

ଅଳସୁଆ ସଦା ସିନା ଲୋଡଇ ବିଳାସ,
ରକ୍ଷକ, ଭକ୍ଷକ ହେଲେ ଘଟଇ ବିନାଶ ।

ନିର୍ବୋଧ ବିଷୟାସକ୍ତ ପୁଣି ଲୋଭୀ ଜନ,
ନ୍ୟାୟପଥ ଛାଡ଼ ସଦା ପାପଲିପ୍ତ ମନ ।

ବଢ଼ଇ ରାଜାର ଯଶ ଶତ୍ରୁ ଦମନରେ,
ଅକପଟ ବ୍ୟବହାର ମିତ୍ରର ସଙ୍ଗରେ ।

ପୂରଣ କରିବା ଲାଗି ନିଜ ଅଭିଳାଷ,
ତତ୍ପର ହୋଇ ମଣିଷ ଘଟାଏ ବିନାଶ ।

ନକରି ସମର କେହି ଆତ୍ମସମର୍ପଣ,
କଲେ ତାକୁ ମିତ୍ର ରୂପେ କରିବ ଗ୍ରହଣ ।

ଜୟ ପରାଜୟ ଯୁଦ୍ଧେ ଦଇବ ଅଧୀନ,
ନ ବିଚାର କେତେବେଳେ ଆପଣାକୁ ହୀନ ।

ବ୍ୟସନେ ଆସକ୍ତ ହେଲେ ରାଜା ଏ ସଂସାରେ,
ନୁହନ୍ତି ସକ୍ଷମ କେବେ ପ୍ରଜା ପାଳିବାରେ ।

ଅବିନୟ ହେତୁ ରଜା ନହୁଷ ସୁଦାସ,
ନାନା କ୍ଲେଶ ପାଇ ଶେଷେ ଲଭିଲେ ବିନାଶ ।

ଜିତେନ୍ଦ୍ରିୟ ହୋଇ ରାଜା ପ୍ରଜାଙ୍କୁ ବଶରେ
ରଖିଲେ, ଲଭି ପ୍ରଶଂସା ସିନା ଏ ଧରାରେ ।

ଦିବାନିଦ୍ରା ଅକ୍ଷକ୍ରୀଡା ବୃଥା ଅଭିମାନ,
ଅସୂୟା ଖଳ ତା ପରଦ୍ରୋହ ମଦ୍ୟପାନ ।

ଜୀବନର ସାଙ୍ଗ ହେଲେ ଘଟାନ୍ତି ପ୍ରମାଦ,
ସର୍ବଥା ବର୍ଜନ କଲେ ଘୁଞ୍ଚଇ ବିଷାଦ ।

ବ୍ୟସନୀ ଦିନକୁ ଦିନ ଲଭେ ଅବନତି
ନିର୍ବ୍ୟସନ ଅହରହ ଅର୍ଜଇ କୀରତି ।

ସତ୍ପାତ୍ରରେ ବିନିଯୋଗ ଉପାର୍ଜିତ ଅର୍ଥ
କଲେ ଲଭନ୍ତି ଆନନ୍ଦ ଦେଶେ ପ୍ରଜା ସାର୍ଥ । (ସମୂହ)

ନ୍ୟାୟାନ୍ୟାୟ ବିଚାରରେ ନିବେଶିବ ମନ
କାର୍ଯ୍ୟଶୀଳ ହେବ କରି ଆଳସ୍ୟ ବର୍ଜନ ।

ହିତକର କାର୍ଯ୍ୟେ ରାଜା ବଳାଇଲେ ମତି,
ଦିନୁଁ ଦିନ କରେ ସିନା ଦେଶ ଅଗ୍ରଗତି ।

ଦେଶର କଲ୍ୟାଣ କର ନ୍ୟାୟେ ଅର୍ଜି ଧନ,
ପରଜା ଶୋଷଣେ କେବେ ନଯାଉ ଏ ମନ ।

ଅଧ୍ୟବସାୟ ସଂପନ୍ନ ହୁଅଇ ଯେ ନର,
ଲଭଇ ସେ ଆଜୀବନ ଚପଳା ଆଦର ।

ସର୍ବଶାସ୍ତ୍ର ବିଶାରଦ ଚତୁର କୁଳୀନ,
ରାଜଦୂତ ହେବାଲାଗି ଅଟେ ସମୀଚୀନ ।

ଶୁଦ୍ଧଚିତ୍ତ ସ୍ମୃତିଶାଳୀ ସର୍ବଜନ ପ୍ରିୟ,
ନିର୍ଲୋଭ ନିର୍ଭୀକ ଯେହୁ ହୁଏ ପୂଜନୀୟ ।

ପ୍ରଜାର ସକଳ କାର୍ଯ୍ୟ ହେଲେ ଅବଗତ,
ସୁଶାସକ ବୋଲି ଘୋଷେ ଦୁନିଆଁ ସନ୍ତତ ।

ଧାର୍ମିକ ବହୁଳ ଦେଶ ଧନଧାନ୍ୟଶାଳୀ
ହୁଅନ୍ତ ରୋଗାଦି ଶୂନ୍ୟ ସଦା ପ୍ରଜା ବଳି । (ସମୂହ)

ଧର୍ମାଧର୍ମ ପ୍ରତି ଦୃଷ୍ଟି ଦେଇ ନରପତି,
ଶାସିଲେ ପରଜାତତି ଲଭନ୍ତ ତୃପତି ।

ପୁତ୍ର ପରି ସ୍ନେହ କରି ପରଜା ପାଳନ,
କରିବାରେ ତ୍ରୁଟି କେବେ ନକରୁ ରାଜନ ।

ନ କରିବ ବନ୍ଧୁ ସଙ୍ଗେ କପଟାଚରଣ,
ନ ଦିଅ ପ୍ରଶ୍ରୟ କେବେ ପରସ୍ତ୍ରୀ ହରଣ ।

ଆପଣା ଛିଦ୍ରକୁ ଶତ୍ରୁ ନଜାଣେ ଯେପରି,
କରୁଥିବ ଅବିରାମ କାର୍ଯ୍ୟ ସେହିପରି ।

ଶତ୍ରୁ ସଙ୍ଗେ ଯୁଦ୍ଧେ ହେବ ବଳ କଷାକଷି
ନ ପାରିଲେ ଶଶା ପରି ପଳାଇବ ଖସି ।

ଧାନ୍ୟ କ୍ଷେତ୍ରେ ଚଷା ଯଥା ଉପାଡଇ ଘାସ,
କରିବ ନୃପତି ତଥା ବିରୋଧୀ କି ନାଶ ।

ଜ୍ଞାନେ ବା ଅଜ୍ଞାନେ ରାଜା କଲେ ଅବିଚାର,
ଜଳି ଉଠେ ବିଦ୍ରୋହାଗ୍ନି ଦେଶେ ବାରମ୍ବାର ।

ରାଜ ଭୃତ୍ୟ ପ୍ରବଞ୍ଚକ ନ ହେଲା ପରାଏ
ସମୀଚୀନ ସଦା ନେବା ଯତନ ରଜାଏ ।

ଆତ୍ମାହିଁ ନିଜର ସାକ୍ଷୀ ଶୁଭଶୁଭ କର୍ମେ
ମିଛ କହି ଏଣୁ କେବେ ନଯାଅ ଅଧର୍ମେ ।

ପ୍ରଜାବର୍ଗ ଅସନ୍ତୁଷ୍ଟ ହେଲେ ରଜା ପ୍ରତି
ପରିଣାମେ ହୁଏ ତାର ଅମଙ୍ଗଳ ଗତି ।

ମନ୍ତ୍ରଣା କରିବ ରଜା ନିଭୃତ ସ୍ଥାନରେ,
ଯେତେବେଳେ ରମଣୀ କେ ନଥିବ ପାଶରେ ।

ଶାସନେ ଅସାଧୁ ଲୋକ ହେବ ଯଦି ଭର,
ନ୍ୟାୟ ପ୍ରତି ଅନୁରକ୍ତି ନରହେ ତାଙ୍କର ।

ଜଳସେଚନ ବ୍ୟବସ୍ଥା ନକଲେ ଦେଶରେ,
ଶସ୍ୟହୀନ ହୁଏ ଭୂମି ବୃଷ୍ଟି ଅଭାବରେ ।

ସଭାରେ ଅସତ୍ୟ କହି ନ ଅରଜ ପାପ,
ଉପୁଜେ ଯହିଁରୁ ସଦା ମାନସେ ସନ୍ତାପ ।

ଏକାଗ୍ର ଚିତ୍ତରେ ବସି ବିଚାର ଆସନେ,
ନ୍ୟାୟାନୁସରଣ କରୁଥିବ ମନେ ମନେ ।

କର୍ମପଟୁ ହେବା ଲାଗି ଶାସ୍ତ୍ର ଅଧ୍ୟୟନ,
ନ କରି ମଣିଷ ଦେଖ ଲଭେ ଉଚ୍ଚାସନ ।

ସତ୍ୟଠାରୁ ବଳି ଧର୍ମ ନାହିଁ ଜଗତରେ
ମିଥ୍ୟାକୁ ବରଜି ଚଳୁ ସଦା ଜୀବନରେ ।

## କବି ପ୍ରତି

ନାରୀ ଅବୟବ ବର୍ଣ୍ଣିବା ଦୂଷଣ
ନୁହ କି କହନ୍ତୁ ଆମ ସୁଧୀଗଣ ।

ହେଉଅଛି ତୁଚ୍ଛ କବିର ଚରିତ୍ର
ଲଘୁତା ପ୍ରକାଶେ ଏତାଦୃଶ୍ୟ ଚିତ୍ର ।

ପଥଭ୍ରଷ୍ଟ ପାଇଁ ଲେଖା ସେ କବିତା
ଗଡାଇବ ଲୁହ ପଢିଲେ ବନିତା ।

ଲେଖିଥିଲେ ପଦେ କିଛି ଶିକ୍ଷଣୀୟ
ଚିରଦିନ ଲାଗି ହୋଇଥାନ୍ତା ପ୍ରିୟ ।

ପୁଣି କବିତାରେ ନଥିଲେ ଉପଧା
ପଢିଲେ କାହାକୁ ଲାଗିବ ଶରଧା ?

ଉପମା ବିହୀନ କବିତା ନିକର
ପଢିଲେ ହେବକି କେବେ ରୁଚିକର ।

## ଯୁବକ

ଧିକ ଧିକ ଯୁବକରେ ଧିକ ଯଉବନ
ପରନାରୀ ପ୍ରତି କିଂପା ବଳାଉଛୁ ମନ ।
ତୋର ରସିକ ପଣିଆ
ସାଙ୍ଗ ସାଥୀ ପିଲେ ଶୁଣି ହୁଅନ୍ତ ଛାନିଆଁ ।

ନିତି ଦେଖୁ ଘରେ ତୋର ଜନନୀ ଭଉଣୀ
ତୁଛ ପାପକର୍ମ କରୁ ସବୁ ଜାଣିଶୁଣି
ତୋର ରସିକ ପଣିଆ
ସାଙ୍ଗ ସାଥୀ ପିଲେ ଶୁଣି ହୁଅନ୍ତ ଛାନିଆଁ ।

କ୍ଷଣିକ ସୁଖରେ ପଶି ସହୁ ଅପମାନ
ନ ଶୁଣୁକି ପରଠାରୁ ନାନା ଗାଳିମାନ
ତୋର ରସିକ ପଣିଆ
ସାଙ୍ଗ ସାଥୀ ପିଲେ ଶୁଣି ହୁଅନ୍ତ ଛାନିଆଁ ।

କଳଙ୍କ ଲଗାଉ କୁଳେ ଜୀବନ ତୋ ମାଟି
ଧରପଡ ଖାଉଅଛୁ ପୋଲିସଠୁଁ ଲାଠି
ତୋର ରସିକ ପଣିଆ
ସାଙ୍ଗ ସାଥୀ ପିଲେ ଶୁଣି ହୁଅନ୍ତ ଛାନିଆଁ ।

ନିଜର ଗୌରବ ନିଜେ ଦେଉଛୁ ହରାଇ
କିପରି ଚଳିବୁ ବାଟ ମୁହଁ ତୁ ଦେଖାଇ
ତୋର ଚରିତ୍ର ଦର୍ଶନେ
ଉପୁଜଇ ଭୟ ଆଜି ଭବନେ ଭବନେ ।

ତୋର ମାଆ ଭଉଣୀର ନେଲେ କେ ଇଜ୍ଜତ
ସହିବୁ କି କ୍ଷଣେ ମାତ୍ର ବିଚାରି କହତ ?
ତୋର ଚରିତ୍ର ଦର୍ଶନେ
ଉପୁଜଇ ଭୟ ଆଜି ଭବନେ ଭବନେ ।

ଲାଜକୁ ଉପେକ୍ଷା କରି କଲେ ବା କୁକର୍ମ
ପକାଇ ଦିଏ ଖାଲରେ ପାଖେ ଥାଇ ଧର୍ମ
ତୋର ଚରିତ୍ର ଦର୍ଶନେ
ଉପୁଜଇ ଭୟ ଆଜି ଭବନେ ଭବନେ ।

ଅସହାୟକୁ ସାହାଯ୍ୟ ଦୁନିଆଁର ରୀତି
ନ ଜାଣି ପାରିଲେ ଲୋକ କାହିଁ ତାର ସ୍ଥିତି
ତୋର ଚରିତ୍ର ଦର୍ଶନେ
ଉପୁଜଇ ଭୟ ଆଜି ଭବନେ ଭବନେ ।

ନ ଶୁଣିଛି କିଏ କହ ଜାନକୀ ହରଣ
ନଥିଲା କି କଣ୍ଠ ମାନି ଦଇତ ରାବଣ
ତୋର ନିର୍ଲଜ୍ଜ ଆଚାର
ଶୁଣି ଦୁଃଖେ କାନ୍ଦୁଛନ୍ତି ତୋର ପରିବାର ।

କାହାକୁ କହିବା ପଶୁ କହରେ ଯୁବକ
ନିର୍ଜନ ଗଡିରେ ଏକା ଭବିବୁ ଏତକ
ତୋର ନିର୍ଲଜ୍ଜ ଆଚାର
ଶୁଣି ଦୁଃଖେ କାନ୍ଦୁଛନ୍ତି ତୋର ପରିବାର ।

ସୁଖ ବୋଲି ମଣୁ ଯାହା ତା ଦୁଃଖ କାରଣ
ଲିଭିବ କି ଅପଯଶ ଗଲେ ତୋ ପରାଣ
ତୋର ନିର୍ଲଜ୍ଜ ଆଚାର
ଶୁଣି ଦୁଃଖେ କାନ୍ଦୁଛନ୍ତି ତୋର ପରିବାର ।

ପଶୁ ଆଚରଣ କାର ନ ଶୋହେ ଭୁବନେ
କିପରି ଟେକିବୁ ମୁଣ୍ଡ ନିର୍ଲଜ୍ଜ ବଦନେ
ତୋର ନିର୍ଲଜ୍ଜ ଆଚାର
ଶୁଣି ଦୁଃଖେ କାନ୍ଦୁଛନ୍ତି ତୋର ପରିବାର ।

ପୁରୁବ ସଂଯମ ଆଉ ନାହିଁ ଏ ଦେଶରେ
ପାଶ୍ଚାତ୍ୟ ଶିକ୍ଷାର ଦୋଷ ଏହାର ମୂଳରେ
ତୋର ଗୁଣ୍ଡାମି ବେଶରେ
ନ ହସୁଛି କିଏ ଶୁଣି କହ ଦୁନିଆଁରେ ।

ଅଛିକି କିଞ୍ଚିତ ଭକ୍ତି ଗୁରୁ ପ୍ରତିକା'ର
ତା ବଦଳେ ଗାଳି ମାଡ ଭକ୍ତି ଉପହାର
ତୋର ଗୁଣ୍ଡାମି ବେଶରେ
ନ ହସୁଛି କିଏ ଶୁଣି କହ ଦୁନିଆଁରେ ।

ନାରୀର ଛକିରି ପୁଣି ପୁରୁଷ ମେଳରେ
ମୁଣ୍ଡ ପୋତୁଥିଲା ଯିଏ କାହାକୁ ଦେଖିଲେ

ତୋର ଗୁଣ୍ଡାମି ଦେଖିରେ
ନ ହସୁଛି କିଏ ଶୁଣି କହ ଦୁନିଆଁରେ ।

ବିପ୍ଳବ ଶକତି ଥିଲେ ଦେଶେ ଶାସକର
ଅନୁରୂପ ଦଣ୍ଡ ଲାଗି ହେଉ ସେ ତତ୍ପର
ଏବ ଶାସନ ପ୍ରଣାଳୀ
ରଖିଲେ ଏପରି ଲୋକେ ଦେଉଥିବେ ଗାଳି ।

ମଣିଷ ଜନମ ପାଇ ନହେଲେ ସଂଯତ
ମରଣଶୀଳ ଜଗତେ ଚଳିବୁ କେମନ୍ତ
ତୋର କୁତ୍ସିତ କରମେ
ବାଧୁଛି ବାପାମାଆଙ୍କୁ ମରମେ ମରମେ ।

ଗୁଣ୍ଡାମିର ପରିଚୟ ଦେଉଛୁ ନଜାଣି
ଦେଖନ୍ତି ତୋ କାର୍ଯ୍ୟ ସବୁ ପ୍ରଭୁ ଚକ୍ରପାଣି
ତୋର କୁତ୍ସିତ କରମେ
ବାଧୁଛି ବାପା ମାଆଙ୍କୁ ମରମେ ମରମେ ।

ଅବିଗମ ଧରିଛନ୍ତି ନିକ୍ତି ଯେ ନ୍ୟାୟର
ଦୋଷ ଦେଖି ଦେଇଥାନ୍ତି ଦଣ୍ଡ ନିରନ୍ତର
ସେ ତୋ ନିରତ ଶରଣ
ବିବେକ ବଚନ ସଦା କରିବୁ ଗ୍ରହଣ ।

ଅଳ୍ପ ଛୋଟା କଣା କୁଟା ପଡୁଛି ଆଖିରେ
କାହିଁକି ଏପରି ହେଲେ ଝାବିବୁ ଗତିରେ
ନିଜ ମଙ୍ଗଳ ନିମିତ୍ତ
କରିବୁ ଅବଶ୍ୟ ଦିନେ ପାପ ପ୍ରାୟଶ୍ଚିତ୍ତ ।

ଚକ୍ରପରି ଘୂରୁଅଛି ଜନମ ମରଣ
ଦୟାମୟ ତବ ପଦେ ପଶିଲି ଶରଣ
ପଡ଼ ବିଷୟ ଜାଲରେ
ହେଉଅଛି ଛଟପଟ ଏ ଭବସାଗରେ ।

## ଇନ୍ଦ୍ରିୟ ନିଗ୍ରହ

(ରାଗ- କଳହଂସ କେଦାର)

ଇନ୍ଦ୍ରିୟ ଉପଦ୍ରବେ ନଦେଇ ମନ,
ସମୂଳ ବିନାଶରେ କର ଯତନ ।

ଉପସ୍ଥାଚ୍ଛାଦିତ ବହ୍ନି ତୁଲ୍ୟ ଇନ୍ଦ୍ରିୟ,
ରହି ଦେହ ଭିତରେ ସାଧେ ଅପ୍ରିୟ ।

ସଲିଳେ ଶିଖୀ ଶାନ୍ତ ହେବା ସଦୃଶ,
ସଂଯମ ବଳେ ସିନା ସେମାନେ କୃଶ ।

ମଣିଷର ବଇରି ଇନ୍ଦ୍ରିୟତତି,
ଏମାନଙ୍କ ହେତୁରୁ ଘୋଟେ ବିପତ୍ତି ।

ଆବିଳ ଜଳ ସ୍ୱଚ୍ଛ କତକେ (ନିର୍ମଳ) ଯଥା,
ସଂଯମେ ଚିତ୍ତ ଶୁଦ୍ଧ ହୁଅଇ ତଥା ।

ଦୂଷିତ ନିଜ ହୃଦ ହିଂସା ଦ୍ରୋହରେ,
ଜନ୍ମାନ୍ତ ବିଘ୍ନ ଦୁହେଁ ସିନା ଶ୍ରେୟରେ ।

ଅମୃତ ଛାଡ ବିଷ କଲେ ଭକ୍ଷଣ,
ସଙ୍ଗେ ସଙ୍ଗେ ଆଣଇ ଟାଣି ମରଣ ।

ପ୍ରିୟ ଅପ୍ରିୟ କଥା ବୃଥା ଚିନ୍ତନ,
ଆଜି ଯେ ହୁଏ ଶତ୍ରୁ କାଲି ସ୍ୱଜନ ।

ବ୍ୟାଘ୍ର ସଦୃଶ ଛପି ଛପି ଅନ୍ତକ,
ନିଏ ଓଟାରି ବଳବାନ ଯୁବକ ।

ତାହାକୁ ଜିଣିବାକୁ କେ ଅଛି ଭବେ,
ଯାର ଖାତର ନାହିଁ କାହାକୁ ଲବେ ।

ପିଲା ବା ବୁଢା, ବୋଲି ତେ ଏବୁ ନାହିଁ,
ବିଶ୍ୱାସ ତାହାଠାରେ ରହିବ କାହିଁ ?

ଜଳବିମ୍ବ (ପାଣିଫୋଟକା) ସଦୃଶ ଜାଣି ଜୀବନ,
କୁମାର୍ଗରୁ ବିରତ ହେଉ ଏ ମନ ।

ଅକୁଶଳ ବିତର୍କେ ନମିଳେ ଫଳ,
ଦୋଷଯୁକ୍ତ ଚିତ୍ତକୁ କର ନିର୍ମଳ ।

ତତ୍ତ୍ୱ ପରୀକ୍ଷା ଲାଗି ନିଜ ମନରୁ,
ଚିତ୍ତମଳ ପ୍ରହାଣ କର ଆଗରୁ ।

ଔଷଧର ଉତ୍ପତ୍ତି ଭୂମି ଯେପରି,
ବିପତ୍ତିର କାରଣ ଜନ୍ମ ସେପରି ।

ସାଂସାରିକ ପ୍ରବୃତ୍ତି ଥିବା ଜୀବର,
ବୃଦ୍ଧାବସ୍ଥାଦି ସଦା ହେତୁ ଦୁଃଖର ।

ଶମୀତରୁରୁ ବହ୍ନି ଉପନ୍ନ ଯଥା,
ଉପୁଜଇ ସନ୍ତାପ ଚିତ୍ତରୁ ତଥା ।

## ସଂସାର ଚିନ୍ତା

ଯଥା ଦିନପତି ସଞ୍ଜ ସକାଳ,
ଶିଶିର ବସନ୍ତ ନିଦାଘ କାଳ ।

ଯାଉଛି ଆସୁଛି ବିଧି ଇଚ୍ଛାରେ,
ତଥା ଜନ୍ମ ମୃତ୍ୟୁ ଏହି ସଂସାରେ ।

ତତ୍ତ୍ୱ କର ଚିନ୍ତା ସନ୍ତତ ଚିତ୍ତେ,
ରଖ ନାହିଁ ଆଶା ନଶ୍ୱର ବିତ୍ତେ ।

ବ୍ୟାପିଛି ତ୍ରିଭୁବନେ ପବନ ଯଥା,
ସର୍ବତ୍ର ବିରାଜୁଛି ସତ୍ୟହିଁ ତଥା ।

ସତ୍ୟମୟ ସଂସାରେ ମିଥ୍ୟା ବରଜି,
ତରିଯାଉ ମଣିଷ ପୁଣ୍ୟ ଅରଜି ।

(ରାଗ—ବଙ୍ଗଳାଶ୍ରୀ)

ଯାହା ଯୋଗୁଁ ଆମେ ମଣିଷ ଜନମ
ପାଇ ଆସିଅଛୁ ଭବେ
ଆପଣା ବିଷୟେ ଲିପ୍ତ ରହି ତାଙ୍କୁ
ନ ସୁରିଲୁ ଦିନେ ଲବେ ।

କହୁଥିଲେ ଚିନ୍ତା ରହନ୍ତା କି କେବେ
ଭଇ ଭଇ ମଧ୍ୟେ କଳି
ଶିଉଳି ସଦୃଶ ବଢନ୍ତା କି କେବେ
ହୃଦୟ ଭିତରେ ମଳି ।

ଅଙ୍ଗକୁ ଚିକ୍କଣ କଲେ ବା କିହେବ
ନିର୍ମଳ ନଥିଲେ ମନ
ପୂର୍ବ ଜନ୍ମ କୃତ ଫଳ ଏ ମଣିଷ
ଭୋଗୁଛି ସାରା ଜୀବନ ।

ଦୁର୍ନୀତି ଦୂଷଣ କରୁଥିବା ଯାହା
ଅବଶ୍ୟ ଟିପେ ତେ ବସି
ମୁହୂର୍ତ୍ତେ ନ ଭାବି ସ୍ୱାର୍ଥାନ୍ୱେଷୀ ଜନ
କରୁଛି କୁକର୍ମ ହସି ।

ପତ୍ନୀ ବା ପୁତ୍ରର ଦେଖୁଛି ମରଣ
ପଡୁଛି ନିଜେ ରୋଗରେ
ତେବେ ନାହିଁ ଆହା ! ଦେଖିଲେ ଏଭଳି
ପଡ଼ ସ୍ୱାର୍ଥର ମୋହରେ ।

ଦୁଆର ଆଗରେ ଛାଡୁଛନ୍ତି ରଡ
କେତେ ଅନ୍ଧ ଛୋଟା କଣା
ମଣିଷର ଦୃଷ୍ଟି ପଡ଼ିଲେ ହେଁ ସବୁ
ତଥାପି ହେଉଛି ବଣା ।

ଧନରେ ମଣିଷ ସ୍ୱାର୍ଥ ଦଉଡ଼ରେ
ବନ୍ଧା ହେବୁ କେତେ ଦିନ ?
ଅବିଗମ ଚିନ୍ତ ପାରିବୁ କି ଜାଣି
କେତେବେଳେ ହେବୁ ଲୀନ ।

ତୋଟିଏ ମାଆର ପେଟରୁ ଜନମି
ପୂରୁଛି ଭଣ୍ଡାର କା'ର
ପେଟକୁ ନ ପାଇ ଅନ୍ୟ ଭାଇ ଏଣେ
ମାଗେ ଭିକ ଦ୍ୱାର ଦ୍ୱାର ।

ପରମେଶ ପଦ ଅମୃତ ସମ୍ପଦ
ଆଶ୍ରିଲେ ପାଇବୁ ସୁଖ
ସ୍ୱାର୍ଥ ଡୋରି ତୋତେ ଘୋଷାରି ଘୋଷାରି
ନ ଦେଉ ଜୀବନେ ଦୁଃଖ ।

ଅନର୍ଥର ମୂଳ ଅର୍ଥ ହିଁ କେବଳ
ନ ଦେଖେ କେ ରସା ତଳେ
ନୋହିଲେ କି ପୁଅ ବାପଠୁଁ ଅଲଗା
ହୁଅନ୍ତା କି ବଳେ ବଳେ ।

ଦେଖିଲେ ହେଁ ପୁଅ ବାର୍ଦ୍ଧକ୍ୟ ବାପାର
ପୋଷିବା ଧରମ ଛାଡ଼
ବରଜି ଲାଜକୁ ନାଳି କରି ଆଖି
ଦେଖାନ୍ତା କି ତାକୁ ବାଡ଼ ।

ସ୍ୱର୍ଣ୍ଣାକ୍ଷରରେ ଲେଖା ଅଛି ଇତିହାସେ
ବାପାକୁ ମାରିଛି ପୁଅ
ପଡୁଛି ଦୃଷ୍ଟିରେ ପ୍ରଖର ଗତିରେ
ଚଳିଛି ପାପର ସୁଅ ।

ନୈତିକତା କ୍ରମେ ପାଉଅଛି ହ୍ରାସ
ସ୍ୱାର୍ଥ ହିଁ ଆଜି ଜୀବିକା
ତା ଲକ୍ଷ୍ୟରେ ଲୋକ ଭୁଲି ଶୋଷ ଭୋକ
ଚଳାଇଛି କିଣାବିକା ।

ଯିକ ଯିକ ସ୍ୱାର୍ଥ ଅର୍ଥ ଲାଳସାରେ
କରୁଛୁ କରମ ଯେତେ
କେତେବେଳେ ତାହା ଲୁଚିବ ନାହିଁଟି
କଲେହେଁ ପ୍ରୟାସ କେତେ ।

କିଏ ଅବା ଏଣେ ଯୋଡ ଯୋଡ଼ ମିଛ
କହୁଛି କଥା ପ୍ରସଙ୍ଗେ
ଠକିବାକୁ ଭାବି ବିଶ୍ୱାସ ଜନ୍ମାଇ
ବସୁଛି ମିତ୍ର କା ସଙ୍ଗେ ।

ଅଛିକି ପୂର୍ବର ଦୁନିଆଁର ରୀତି
ସ୍ୱାର୍ଥାନ୍ଧ ହେଲଣି ଲୋକ ?
ପରର ଶୋଣିତ ଶୋଷିବାକୁ ପିନା
ହେଉଛି କ୍ରମଶଃ ଜୋକ ।

ବିତ୍ତର ଶକତି ଅଧିକ ହେତୁରୁ
ପାଉଛି ନିର୍ଦ୍ଦୋଷ ଦଣ୍ଡ
ଅବା ବଶବର୍ତ୍ତୀ ହୋଇ ସ୍ୱାର୍ଥେ ଜନ
କରୁଅଛି ଲଣ୍ଡଭଣ୍ଡ ।

ପାଖେ ପାଖେ ରହି ଭଲ ମନ୍ଦ କର୍ମ
ଝିପନ୍ତ ବ୍ରହ୍ମାଣ୍ଡ ସାଇଁ
ନୋହିଲେ କି ଦଣ୍ଡ ମିଳନ୍ତା ପାପୀକି
ଅନୁରୂପ ଦୋଷ ପାଇଁ ।

କୁହୁଳି କୁହୁଳି ଜଳି ଉଠେ ଯେବେ
ସ୍ୱାର୍ଥାନଳ ହୃଦୟରେ
ସେବେ ଧଇ ଧଇ ହୁଅନ୍ତ ଅଲଗା
ପଡୁଛି ନିତି ନେତ୍ରରେ ।

ଅନ୍ୟାୟକୁ ନ୍ୟାୟ କହି କେତେ ଲୋକ
ବାହାଦୁରି ନେବା ପାଇଁ
ବିବେକକୁ ହୁଡ କରନ୍ତ କରମ
ସ୍ୱାର୍ଥ ପଛେ ଧାଇଁ ଧାଇଁ ।

ଦେଶେ ଦେଶେ ଆଜି ଲାଗିଛି କଳହ
ଯହିଁରେ ସ୍ୱାର୍ଥ ନିହିତ
ମେଣ୍ଢା ଛେଳି ପରି ନିର୍ଦ୍ଦୋଷ ଲୋକକୁ
ମାରି ବୁହାନ୍ତ ଶୋଣିତ ।

ପକ୍ଷପାତ ନୀତି ଅବଲମ୍ବି କେହି
ଶାସନେ ଲଗାନ୍ତ ନିଆଁ
ଦେଖିଲେ ଶୁଣିଲେ କି ହେଲା କି ହେଲା
ବୋଲି ହୁଅନ୍ତ ଛାନିଆଁ ।

ପ୍ରତିଫଳ ତାର କହିବ ଭବିଷ୍ୟ
ରଖିଥିଲେ କେହି ମନେ
ଝବା ତାହା ଦିନେ ଫୁଟି ଉଠିବରେ
ଐତିହାସିକ ଲେଖନେ ।

ଗଳିତ ପଳିତ କାହିଁକି ଦାଣ୍ଡରେ
ବୁଲନ୍ତ ଭିକ ମୁଠାକୁ
ଜାଣିବା ନିମିତ୍ତ ଏ କଥା କାହାକୁ
ଡର ନାହିଁ ପଚାରିବାକୁ ।

ଏ ପାଖେ ଅନ୍ଧର ବିକଳ ଚିତ୍କାର
ନ ଶୁଣୁଛି କିଏ ଭବେ
ବସି ମଉଜ କେ ଦୋତାଲା ଉପରେ
ଭାବିଛି କି ଦିନେ ଲଭେ ।

ଉଲୁ ଠକେ ଗଣ୍ୟ ନୁହଁକି ମଣିଷ
ସବୁ ଦେଖି ଦେଖି ନିତି
କରୁ ନାହିଁ ଚିନ୍ତା ଦଣ୍ଡକ ନିମିତ୍ତ
ଜାଣି ଜାଣି ସୃଷ୍ଟି ରୀତି ।

କେତେ ନରନାରୀ ସନ୍ତାନ ନଥାଇ
ପୂଜନ୍ତ ଦେବତାମାନ
ଏଣେ ମାଳ ମାଳ ପୁଅ ଝିଅ ଧରି
ହେଉଛି କେ ହୀନିମାନ ।

କଲେ ଚିନ୍ତା ଥରେ ଉଭୟ ପକ୍ଷକୁ
ଏହାହିଁ ଦଣ୍ଡ ବିଧିର
ଅବଶ୍ୟ ବୋଲିବେ ପୂର୍ବତନ୍ତ୍ର ପାପ
ଯେତେ ସୁଧୀ ଧାରଣୀର ।

ଏକ ମାଆ ପେଟୁ ଜନମୁ ଅଛନ୍ତି
ଗଉର କଳା ସନ୍ତାନ
ଏଣୁରେ, ମଣିଷ ଜାଣିପାରିବୁ କି
କଲେ ତାର ଅନୁଧ୍ୟାନ ।

ଯେତିକି ମିଳିବ ସେତିକିରେ ତୁଷ୍ଟ
ରହିଲେ ପାଇବୁ ସୁଖ
ଅର୍ଥ ଲାଳସାରେ ଯେତେ ଧାଇଁ ହେବୁ
ସେତିକି ପାଇବୁ ଦୁଃଖ ।

ଅଧିକାର ଧନ ବିଳାସ ବ୍ୟସନ
କେତେ ଦିନ ପାଇଁ ଭବେ
ବିଶ୍ରାମେ ଶୟନେ ବିଚାରିଲେ ହୃଦେ
ବୁଝିପାରିବ କି ଲବେ ।

ଯେତେ ମନୋହର ଦିଶୁ ଭବିଷ୍ୟତ
ନକର ବିଶ୍ୱାସ ତିଳେ
ବିସୋରି ଅତୀତ କରୁଥିଲେ କର୍ମ
ପରମ ସମ୍ପଦ ମିଳେ ।

ନୁହେ ସୁଖମୟ କାହାର ଜୀବନ
ଜନମି ଏ ଧରା ତଳେ
ଆଲୋକ ଅନ୍ଧାର ପରି କରେ ଗତି
ଭଲମନ୍ଦ କାଳ ଛଳେ ।

ଯେତେବେଳେ ଯାହା ଘଟଇ ସଂସାରେ
ନ ଜାଣେ କେ ଆଗୁଁ ଲବେ
ଭ୍ରମ ବଶେ ସିନା ଅନ୍ଧାର ଭିତରେ
ଦଉଡ଼ୁଥାନ୍ତି ସରବେ ।

ଏ ଭବେ ମଣିଷ ହରାଇ ବିବେକ
ସ୍ୱାର୍ଥକୁ କରଇ ଧ୍ୟାନ
ଧିକ୍ ତା ଜୀବନେ ପଡ଼ ଅବିରଳ
ନ ବିଚାରେ ତିଳେ ଆନ ।

ସ୍ୱାର୍ଥ ସିନା ହିଂସା ପ୍ରବଞ୍ଚନା ସଙ୍ଗ
ଲୋଡୁଥାଏ ସଦା ଭବେ
ଅସାଧୁତା ବୀଜ ବୁଣିବାକୁ ଜେବେ
ଶଙ୍କା ନ କରଇ ଲବେ ।

ନ ହୁଏ ବିରତ ଖଳ ତୋଷାମଦୁଁ
ମିଛ ଦେଉଥାଏ ବଳ
କୁଟିଳତା ପୂର୍ଣ୍ଣ ଅବିରତ ଚିତ୍ତ
ପର ହିତ ହଳାହଳ ।

କଳହ ସୃଷ୍ଟିର ହୁଅଇ କାରଣ
ଅନ୍ୟାୟର ଅଗ୍ରଦୂତ
ରସି ଖୁସାମଦେ ଦିଏ ଜଳାଞ୍ଜଳି
କେବେ ବା ନିଜ ମହତ ।

ନଥାଏ ତା ଖେଦ ଜନ ଅପବାଦେ
କୃତଘ୍ନତା ସହଚର
ପକାଇ ଦେବାକୁ ଖାଲରେ କେବେ ବା
ଉଣ୍ଡୁଥାଏ ନିରନ୍ତର ।

ରେ, ମଣିଷ ତୁହି ଜୀଇଁଥିବା ଯାଏଁ
ସବୁ କରୁଥିବୁ ଲୟ
ଜାଣିଲେ କୁକର୍ମ ରହିବୁ ଦୂରରେ
ତେବେ ଯିବ ମନୁଁ ଭୟ ।

ହାତ ଗୋଡ ତୋର ଚଳୁଥିବା ଯାଏଁ
ତୁ ଏକା ତୋହର ସାହା
ଭାବିଲୁ କି ଦିନେ ନ ଚଳିଲେ ଅଙ୍ଗ
କରିବ କିଏବା ଆହା !

ନ ଶୁଣିବୁ କେବେ ମଧୁର ବଚନ
କମିଲେ ଅର୍ଜିବା ଶକ୍ତି
ଅବା କେତେବେଳେ ପାଇଲେ କଷଣ
ନଥିବ କା ଅନୁରକ୍ତି ।

ତୋର ପୁଣ୍ୟବଳ କେବଳ ତୋ ସାହା
ରଖିବୁ ହେତୁ ମନରେ
ନଥିଲେ ଆଲୁଅ ଅବଶ୍ୟ ଝୁଣ୍ଟିବୁ
ଚଳିଲେ ଅନ୍ଧାର ଘରେ ।

କ୍ଷୀର ପିଇ ସର୍ପ ଉଦ୍‌ଗାରଇ ବିଷ
ଦେଖୁଛୁ ନିତି ଯେସନ
ମନ୍ଦ ପ୍ରକୃତିର ମଣିଷ ପୁଣ୍ୟକୁ
ମଣଇ ପାପ ତେସନ ।
ତୃଷ୍ଣାକୁ ମୁଣ୍ଡରେ ଚିନ୍ତା ବୋଝ ଲଦି
ସଢୁଛୁ ଗେଗେ ନିରତ
ଇହଧାମ ଛାଡ଼ି ଯିବୁ ଯେତେବେଳେ
ସଙ୍ଗରେ କିଏ କହତ ?
ବୋହା ପାପ ପୁଣ୍ୟେ ନୁହଇ କେ ଭାଗୀ
ସେତକ ଯିବ ସଙ୍ଗରେ
କେଉଁ ଦରବାରେ ହେବ ତା ବିଚାର
ନ ଭାବେ କିଏ ମନରେ ।
ମିଛ ସାକ୍ଷୀ ଅବା ଉତ୍କୋଚ ବଢାଇ
ଏ ଭବେ ଜିତୁ ଯେପରି
ଦଣ୍ଡ ଲାଗି ତତ୍ର ନ୍ୟାୟ ନିକ୍ତି ଛଡା
ନଥିବ କିଛି ସେପରି ।
ପାପାର୍ଜିତ ଧନ ଚିରସ୍ଥାୟୀ ହୋଇ
ରହିଛି କି କାର କେବେ
ନିଜେ ଦେଖି ସବୁ କାହିଁକି ପଶୁଛୁ
ବିଷୟ ଲୋଭରେ ତେବେ ?
ପାଣି ମନେ ପାଇଁ ଶୋଷୀ ବାଟୋଇଟି
ମରୀଚିକାର ପଛରେ
ଗୋଡ଼ାଇଲା ପରି ସ୍ୱାର୍ଥେ ଧାଇଁ ଧାଇଁ
ନିରାଶ ହେବୁ ଶେଷରେ ।
ମାଆର ଗର୍ଭରୁ ଲଙ୍ଗଳାରେ ଆସି
ଫେରିଲେ ହେଁ ଲଙ୍ଗଳାରେ
ତଥାପି ଘାରୁଛି ବିଷୟ କାମନା
ନିରତ ମର ସଂସାରେ ।
ଅର୍ଥଲାଗି ଜନେ କୁତ୍ସିତ କରମେ
ମଜ୍ଜିଥାନ୍ତି ଅହରହ
ତା କବଳେ ପଡ଼ି ଧର୍ମ ମାର୍ଗ ଛାଡ଼
ଭିଆନ୍ତି ତୃଷ୍ଣା କଳହ ।

ଯେତିକି ଆଗକୁ ଯାଉଛି ପାହୁଣ୍ଡ
ସେତିକି ମରଣ ଦ୍ୱାର
ପାଖେଇ ଆସୁଛି ବୋଲି ନ ଭାବିଲେ
ଶେଷେ ହିନା ହରବର ।
ମାଆକୁ ମୁଠାଏ ଦେଉନାହିଁ ପୁଅ
ହାତ ଚୋର ଗଲେ ପଡ଼
କହିଲେ ଅଧିକ ଝିଙ୍କି ଝିଙ୍କି ତାକୁ
ଦେଉଅଛି ଘରୁ ତଡ ।
ପୁନରପି ଜନ୍ମ ପୁନଶ୍ଚ ମରଣ
ଚାଲିଛି ପର୍ଯ୍ୟାୟ କ୍ରମେ
ଏ ବିଧି ବିଧାନ ନ ବୁଝୁଛି ଯିଏ
ରତ ଏତାଦୃଶ କର୍ମେ ।
ଲଣ୍ଡ ଭଣ୍ଡ ରୀତି ଆଚରେ ନିରତ
ବସୁନ୍ଧରା ମଧ୍ୟେ ଖଳ
ନ ପାଇଲେ ବାଟ ସଢ ଉଣ୍ଡି ଉଣ୍ଡି
ଶେଷରେ ଦେଖାଏ ବଳ ।
ସୁନ୍ଦରୀ କାମନା କରୁଅଛି ସିନା
ସୁନ୍ଦରକୁ ସଦା ଭବେ
ନ ଥିଲେ ସ୍ୱରୂପ ଧନବନ୍ତ ପ୍ରତି
ନବଳେ ତା ଇଚ୍ଛା ଲବେ ।
ଜାତି ପ୍ରୀତି କେବେ ନ ଥାଏ ପ୍ରେମର
ସୁନ୍ଦର ପଣକୁ ଲୋଡେ
ତୁଚ୍ଛ ମଣି ଧନ କୁରୂପକୁ ସଦା
ଆଡେଇ ଦିଏ ସେ ଗୋଡେ ।
ସାଗର କେବେ କି ପୋତି ହୁଏ ଧୂଳି
ପକାଇଲେ ତା ଗରଭେ
ମାଇଲେ କି ଟେଳା ଟଳିଯାଏ ଗିରି
ଦେଖିଛି କିଏ ଏ ଭବେ ?
ନ ବୁଝିଲେ ମନ ବୁଝାଇବ କିଏ
ଏ ମହା ମାୟା ସଂସାରେ
ସତ୍‌କର୍ମ ଅକର୍ମ ନ ଜାଣି ପ୍ରଭେଦ
ମାତନ୍ତି ସ୍ୱାର୍ଥ ଆଶାରେ ।

ଲୋଭେ ପଡ ମତ୍ସ୍ୟ          ବଡଶକୁ ଗ୍ରାସି
ମରଣ ଲଭଇ ଯଥା
ହୁଅଇ ବିନଷ୍ଟ          ତୃଷ୍ଣାର କବଳେ
ପଡ ଅବିବେକୀ ତଥା ।
ଯୌବନ ରୂପକୁ          ଆସି ବୃଦ୍ଧାବସ୍ଥା
କରଇ ହରଣ ଯେସନ୍ତେ
ପରବେଶି ଆଶା          ମନର ଆଶ୍ରକୁ
କରଇ ବିଚ୍ୟୁତ ତେସନ୍ତେ ।
ବାସବ କୋଦଣ୍ଡ          ପରାଏ ସମ୍ପତ୍ତି
ଦେଖାଇ ବିଭିନ୍ନ ରଙ୍ଗ
ପରାଏ ଖାଲରେ          ନ ବୁଝି ମଣିଷ
ନ ଛାଡଇ ତାର ସଙ୍ଗ ।
ଦୁଃଖ ରୂପୀ କର୍ଣ୍ଣ          ବିନାଶ ନିମିତ୍ତ
ଚନ୍ଦ୍ର କିରଣ ସଦୃଶ
ରଜନୀ ପରାଏ          ସତକର୍ମ ରୂପୀ
ତାମରସ କରେ କୃଶ ।
ସୌଜନ୍ୟ କମଳ          କରେ ସଙ୍କୁଚିତ
ହିମାଂଶୁ କିରଣ ପରି
ବିବେକ ଚନ୍ଦ୍ରକୁ          ଗ୍ରାସ କରିବାକୁ
ରାହୁ କି ହେବ ତା ସରି ।
କାମନା ତଟିନୀ          ପାରିହେବା ପାଇଁ
ସନ୍ତୋଷ କେବଳ ସେତୁ
ଅହା ! ଏ ସଂସାରେ          ସବୁ କାରବାରେ
କାମନା ଅଶାନ୍ତ ହେତୁ ।
ଦଇବ ନାଉରୀ          ଏ ଜୀବନ ତରୀ
ଚଳାଉଛି ଅହରହେ
ଲଭେ କି ମଣିଷ          ଧନ ଅବା ଯଶ
ନ ଥିଲେ ତା ଅନୁଗ୍ରହେ ।
କେବେ କାହା ମୁଣ୍ଡେ          କୁସୁମ ବରଷେ
ନ ଜାଣି ପାରେ କେ କବେ
ନିୟତି ଚକ୍ରରେ          ଘୂରି ଘୂରି ସିନା
ଯେଗନ୍ତ ଫଳ ସଭିଏ ।

ନ ଫେରିବ ଆଉ          ଯେଣ୍ଟୁ ଧରେ ଜୀବ
ଭିନ୍ନ ଗତି ଲୋକାନ୍ତରେ
ଯାଇ, ଅବିରତ          ନିଜ ନିଜ କୃତ
କର୍ମଫଳ ଅନୁସରେ ।
ଘଟୁଅଛି ଭବେ          ନିଜ ଦେହ ସହ
ବିଚ୍ଛେଦ ନିଜ ଆତ୍ମାର
ତେବେ କି ଆଶ୍ଚର୍ଯ୍ୟ          ପୁତ୍ର ପତ୍ନୀ ଭର୍ତ୍ତା
ଆଦି ବିରହ ବେଦନାର ।
ମଧୁର ବଚନ          ଶୁଣି କପଟୀର
ନ ପଡ କବଳେ ତା'ର
ଅମୃତ ଦେଲେ ସେ          ବିଷ ମଣି ତାକୁ
କର ଦୂରୁ ପରିହାର ।
ଲୁହାକୁ କଳଙ୍କ          କ୍ଷୟ କଲା ଭଳି
ଅବୟବକୁ ଆଳସ୍ୟ
ନ କଲେ କରମ          ଉପୁଜି ଦୁଃଶ୍ଚିନ୍ତା
ଦିଅଇ କ୍ଳେଶ ଅବଶ୍ୟ ।
ପ୍ରାଚୁର୍ଯ୍ୟରେ ବଢ଼          କେ ପାଇଛି ସୁଖ
ନ କଲେ ଜୀବନେ ଶ୍ରମ
ପ୍ରବେଶି ଶରୀରେ          ନାନା ରୋଗ ଆସି
ହୁଅଇ ଶେଷରେ ଯମ ।
ବସୁନ୍ଧରା ତଳେ          ହୁଏ କି ଉଦିତ
ଶ୍ରମ ବିନା ଜ୍ଞାନ କା'ର
ବୀଜ ବପନେ କି          ଖାଦ୍ୟ ହୁଏ କେବେ
ନ କଲେ ଚାଷ କେଦାର ।
ସ୍ୱକୀୟ ଧନରେ          ଲଭିଲେ ସନ୍ତୋଷ
ହୋଇଥାଏ ସୁଖକର
ପରସ୍ୱକୁ ସ୍ପୃହା          କରୁଥାଏ ସିନା
ନୀଚାଶୟ ନିରନ୍ତର ।
ଖଳର ସଂସର୍ଗେ          ଆସିଲେ ମଣିଷ
ଉପୁଜେ ନାନା ଦୁଷ୍କର୍ମ
ମୂଢ ସମାଗମେ          ମୋହ ହୁଏ ଜାତ
ସାଧୁ ସହବାସେ ଧର୍ମ ।

କର୍ମମୟ ଭବେ　　　　　　　ସିଦ୍ଧି ଲାଭ ଲାଗି
ଇନ୍ଦ୍ରିୟ କରି ନିଗ୍ରହ
ସଂଯମ ସ୍ୱଭାବେ　　　　　　ଲଭିବ ଶେଷରେ
ପରମେଶ ଅନୁଗ୍ରହ ।
ଅର୍ଥ ଲାଭ ଆଶେ　　　　　　ଅଥବା ବିନାଶେ
ନ ଭେଗେ କିଏ କଷଣ
ତେଣୁରେ ମଣିଷ　　　　　　ବୀତସ୍ପୃହ ହୋଇ
କରିବୁ ପ୍ରାଣ ଧାରଣ ।
ନୋହିବ ମଣିଷ　　　　　　ସ୍ନେହ ଅନୁବର୍ତ୍ତୀ
ସ୍ନେହରୁ ଜାତ ବିକାର
ମାନସିକ ଦୁଃଖ　　　　　　ପ୍ରଶମିତ ବିନା
କଲେ ଚିନ୍ତା ପରିହାର ।
ଦୁର୍ଜ୍ଜୟ ଇନ୍ଦ୍ରିୟ　　　　　　ଅଧୀନେ ଦୁର୍ବୋଧ
ଆଣି ସନ୍ତତ ଅନର୍ଥ
ଯଥାର୍ଥ ଧର୍ମକୁ　　　　　　ଉପେକ୍ଷା କରି ସେ
ଲଭଇ ଅନ୍ୟାୟ ଅର୍ଥ ।
କ୍ରୋଧ ମଣିଷର　　　　　　କରଇ ଶ୍ରୀଭ୍ରଷ୍ଟ
ରୂପକୁ ଗ୍ରାସଇ ଜର
ଲୋଭକୁ ହରଇ　　　　　　[illegible]ମ ଅବିରମ
ନାଶଇ [illegible]ର୍ଯ୍ୟକୁ ଧର ।
ଶୀଳତାରେ ଭଦ୍ର　　　　　　ବୋଲି ହୁଏ ଜ୍ଞାତ
ସାଧୁତାର ବ୍ୟବହାରେ
ଶତ୍ରୁ ମିତ୍ର କିଏ　　　　　　ମିଳେ ପରିଚୟ
ଆପଦେ ବିନା ସଂସାରେ ।
ଆତ୍ମଜ୍ଞାନ ଲଭି　　　　　　ସରଳ ସ୍ୱଭାବେ
ଚଳଇ ଭବେ ସଜ୍ଜନ
ଅନ୍ୟାୟ କାର୍ଯ୍ୟକୁ　　　　　　ନ୍ୟାୟଯୁକ୍ତ ବୋଲି
ଭବଇ ସଦା ଦୁର୍ଜ୍ଜନ ।

ସମ୍ପଦ ବା ବିପଦରେ ରଖ ଏକ ଚିତ୍ତ,
ନକର କଦାପି ହେଲେ ପରର ଅହିତ ।

ବିପତ୍ତି ପଡ଼ିଲେ କେବେ ନହେବ କାତର
ନ କରିବ ନଷ୍ଟ ଦ୍ରବ୍ୟ ନିମିତ୍ତ ଖାତର ।

ନ କରଇ ବୃଥାରେ ଯେ ଯାପନ ସମୟ,
କରିପାରିବ ସେ ସଦା ଇନ୍ଦ୍ରିୟଙ୍କୁ ଜୟ ।
ଜନ୍ମାନ୍ତର ବିଶ୍ୱାସ ଯେ କରେ ଅବିରଳ,
ପଣ୍ଡିତ ବୋଲନ୍ତି ଭବେ ତାହାକୁ ସକଳ ।

କାମ କ୍ରୋଧ ଲୋଭ ମୋହ ବିନାଶର ମୂଳ,
ବରଜନ୍ତି ଏ ଗୁଡ଼ିକୁ ଏଣୁ ସାଧୁକୁଳ ।

ପର ଧନେ ଲୋଭ ଅବା ପରସ୍ତ୍ରୀ ହରଣ,
ଭୟଙ୍କର ଦୋଷ ତେଣୁ ନ ବଳାଅ ମନ ।

ଆଳସ୍ୟ ଦୀର୍ଘସୂତ୍ରତା ନିଦ୍ରା କ୍ରୋଧ ଭୟ,
କରିଥାନ୍ତି ବିସର୍ଜନ ସଜ୍ଜନ ନିଚୟ ।

କ୍ଷମା ଧୈର୍ଯ୍ୟ ପରିଶ୍ରମ ପୁଣି ସତ୍ୟବାନ,
ମଣିଷର ଅଳଙ୍କାର ରତନ ସମାନ ।

ସ୍ୱାର୍ଥର ଶିକାର　　　　　　ନ ହେଉ ମଣିଷ
ଅଭେଇ ଦିନକୁ ଆସିଛି ଭବେ
ହୃଦୟ ଭିତରେ　　　　　　ନଥିଲେ କପଟ
ନ ପାଇବ ଦୁଃଖ ଜୀବନେ ଲବେ ।
ଆଖି କାନ ନାହିଁ　　　　　　ଦେଖୁଛି ଶୁଣୁଛି
ବ୍ୟାପି ରହିଛି ଯେ ଏ ଭୂମଣ୍ଡଳେ
ଏ ଧରାର ମଣିଷ　　　　　　ସବୁ ଜାଣି ଜାଣି
ପଡୁଅଛି ସଦା ସ୍ୱାର୍ଥ କବଳେ ।
ନାନା ରୋଗ ଆସି　　　　　　ଶରୀର ଭିତରେ
ଦେଉଛି କଷଣ ସାରା ଜୀବନ
ସନ୍ତାନ ବିଚ୍ଛେଦ　　　　　　ଅଥବା ବିହୀନେ
କେ ଦୁଃଖେ କରୁଛି କାଳଯାପନ ।
ଶ୍ରବଣ ଦର୍ଶନ　　　　　　କଲେ ହେଁ ମଣିଷ
ଦେଖାଇ ହୁଏ ତା ବଡ ପଣିଆ,
ଲାଜକୁ ଉପେକ୍ଷା　　　　　　କରି ନ ଧରଇ
କେତେଦିନ ପାଇଁ ଭବେ କୁଣିଆ ।
ଘରେ ନିଆଁ ଲାଗି　　　　　　ପୋଡ଼ିଗଲା ବେଳେ
କୂଅ ଖୋଳିବାରେ କି ପ୍ରୟୋଜନ
ବାର୍ଦ୍ଧକ୍ୟ କଷଣ　　　　　　ଛୁଇଁବା ପୂର୍ବରୁ
ବିଷ୍ଣୁ ପଦେ ରଖୁ ସନ୍ତତ ମନ ।

କିଏ ବିପତ୍ନୀକ କିଏ ବା ବିଧବା
ହୋଇ ଚଳାଉଛି ଭବ ଭୂଇଁରୁ
ଜୀଇଁଥିବା ଯାଏ ଅନ୍ତର ବେଦନା
କିଏ ବା ଜାଣୁଛି ଲବେ ତହିଁରୁ ।

ପରିତେଜି ପାପ ଧରମ ଆଚରି
କଟାଇବ ଦିନ ଅନବରତ
ଅନ୍ୟାୟ ଆଗରେ ମସ୍ତକୁ ନ ନୋଇଁ
ହେଉ ମନିଷର ଜୀବନ ବ୍ରତ ।

ମାୟାଜାଲେ ଏଇ ଛଟପଟ ହୋଇ
ଚଳାଇଛ ଧନ୍ଦା କେତେ ଦିନକୁ
ନିର୍ଜନ ଗଡ଼ିରେ ଉଙ୍କିବ କି ଥରେ
କିଏ ଅଛି ଭବେ ତୋର ପଛକୁ ।

( ରାମକେରୀ )

ରୋଗ ଘର ଏହି ଶରୀର ଜରା କରଇ ଗ୍ରାସ
ଜଳଫେନ ତୁଲ୍ୟ ଦୁର୍ବଳ ବୋଲି ପାଏ ପ୍ରକାଶ ।
ଏ ଜଗତ ସଦା ପୀଡ଼ିତ ଜରା ମରଣ ଯୋଗେ
ବଳ ଅଭିମାନ ନାହିଁକି ଦେହ ଦୁର୍ବଳ ରୋଗେ ।

ଚର୍ମ ମାଂସ ହାଡ଼ ଶୋଣିତେ ନିର୍ମିତ ଏ ଶରୀର
ନାନା ରୋଗ ପଶି ତହିଁରେ କରୁଅଛି ଅସ୍ଥିର ।
ଦେଖାମାତି ଘଟ ଯାହାଯ୍ୟ ମହାର୍ଣ୍ଣବ ତରଣେ
ହେବ ନାହିଁ ଲୋଡ଼ା ଲୋକର ଜାଣିଥାଅ ଜୀବନେ ।

ସାଇତି ରଖିଲେ ଘଟକୁ ଚିରକାଳ ରହଇ
କେତେ ଯତ୍ନ କଲେ ଶରୀର ନଷ୍ଟ ବିନା ନୁହଇ ।
ଅନଳ ଅନିଳ ସଲିଳେ ଏ ଶରୀର ଆଶ୍ରିତ
ବିଷମ ଉପନ୍ନ ତହିଁରେ ବ୍ୟାଧି ହେଲେ ମିଶ୍ରିତ ।

ଭୁଜଗ କାହାକୁ କେବେ ବା କରିଥାଏ ଦଂଶନ
କିନ୍ତୁ ଶରୀରସ୍ଥ ଇନ୍ଦ୍ରିୟ ଦିଏ ସଦା ପୀଡ଼ନ ।
ଇନ୍ଦ୍ରିୟବର୍ଗଙ୍କ ସହିତ ଅଗ୍ରେ କର ସମର
ଜିଣିଲେ ଜଗତ ଜାଣିବ ବଳ ଅଛି ଲୋକର ।

ବୀର ଆଖ୍ୟା ପାଏ ନିରତ ସେହି ମାନବ ଭବେ
ଆପଣା ଆୟତ୍ତ ହୁଅନ୍ତି ଯା ଇନ୍ଦ୍ରିୟ ସରବେ ।

ବପୁଷ୍ମାନ ବୋଲି ନ କହ ସଦା ଯାହା ଚଞ୍ଚଳ
କେଉଁଆଡେ ଗଲା ପଳାଇ ପୁର୍ବେ ଗୌରବ ବଳ ।
ଚିତ୍ରିତ ଚନ୍ଦ୍ରିକା କେକୀର ସ୍ୱଭାବତଃ ଚଟୁଳ
ସଜାଏ ରୂପକୁ ମଣିଷ ମୋହେ ହୋଇ ଆକୁଳ ।

ଯାଇଥିବା ଋତୁ ଆସୁଛି ପୁଣି ଚନ୍ଦ୍ର ଉଦୟ
କିନ୍ତୁ ନ ଫେରଇ ଯୌବନ ଯେବେ ଲଭଇ କ୍ଷୟ ।
ମୁଖଶ୍ମଶ୍ରୁ ଯେବେ ଦିଶିବ ଅତି ବିବର୍ଣ୍ଣ ତବ
ଶିଥିଳ ହେତୁରୁ ଶରୀର ନେତ୍ର ହେବ ନିଷ୍ପ୍ରଭ ।

ଦଶନ ପତନେ ବଦନ ଶୋଭା ହେବ ବିନଷ୍ଟ
ସେତେବେଳେ ଜରା ଯୋଗରୁ କେତେ ପାଇବ କଷ୍ଟ ।
ବାର୍ଦ୍ଧକ୍ୟ ରୂପକ ଯନ୍ତ୍ରରେ ଦିନେ ହୋଇ ପୀଡ଼ିତ
ଏ ଶରୀର ତବ ଅବଶ୍ୟ ହେବ ସାର ରହିତ ।

ବାର୍ଦ୍ଧକ୍ୟ ସଦୃଶ ପରମ ଶତ୍ରୁ ଅଛି କି ଭବେ ?
ଯାର ତାଡ଼ନାରେ ସ୍ଫୁରଣ ଶକ୍ତି ନରହେ ଲବେ ।
ସ୍ୱପ୍ନତୁଲ୍ୟ ଭବେ ଅସାର ଉପଭୋଗ୍ୟ ପଦାର୍ଥ
ତହିଁରୁ ନିବୃତ୍ତ ହେବାହିଁ ନିରନ୍ତର ଯଥାର୍ଥ ।

ବିବିଧ କଷଣ ସହନ୍ତି ସୁଖ ଲାଗି ମାନବେ
ଠାଏଁ ଠାଏଁ ଦୁଃଖ ପହଞ୍ଚେ ଦେଖୁଛନ୍ତି ସରବେ ।
ଦୁଃଖପୂର୍ଣ୍ଣ ଏହି ଶରୀର ପୁଣି କ୍ଷଣ ଭଂଗୁର
ଜରା ରୂପ ଶତ୍ରୁ ପ୍ରବେଶି ତାକୁ କରୁଛି ଜୁର ।

ହିତକୁ ନମଣି ଅହିତ ତେଜ ଖରେ ଲାଳସା
ମୋକ୍ଷହିଁ କେବଳ ସଂସାରେ ଏକମାତ୍ର ଭରସା ।
ସୁଖ ବା କିପରି ଆସିବ ଶାନ୍ତ ନଥିଲେ ମନେ
ପ୍ରୀତି ବିନା ରତି (ଆନନ୍ଦ) କିପରି ହେବ
ଲାଭ ଜୀବନେ ।

କ୍ଷଣଭଂଗୁର ଏ ସଂସାର ତାର ବିଷମ ଗତି
ଇନ୍ଦ୍ରିୟ ଦମନେ ସକ୍ଷମ ହେଉ ମଣିଷତତି ।

⊙ ⊙ ⊙

ଅନିତ୍ୟ ବିଷୟ ଉପଭୋଗେ ଲୋକ
ହୁଅଇ ଆସକ୍ତ ସାରା ଜୀବନ
ଅବିନାଶୀ ସୁଖ ଲଭିବା ନିମିତ୍ତ
କେ ନେଉଛି କାହିଁ ତାର ଯତନ ।

ଦୂଷିତ ସଲିଳ ଦର୍ଶନେ ପିପାସୁ
ପଥିକ ହରାଏ ଧୈର୍ଯ୍ୟ ଯେସନ
କ୍ରୋଧ ହେତୁ ଲୋକ ଉଚ୍ଛୃଙ୍ଖଳ ଚିତ୍ତେ
ବିବେକ ବିଚ୍ୟୁତ ହୁଏ ତେସନ ।

ରଜୋଗୁଣ ଦ୍ୱାର ଅବିରତ ସିନା
ରହେ ଅବରୁଦ୍ଧ ବୁଦ୍ଧି ଜନର
ଚଣ୍ଡ ଅନିଳର ଉତ୍ଥିତ ରଜରେ
ଯେମନ୍ତ ଆବୃତ ପ୍ରଭା ସୂର୍ଯ୍ୟର ।

ମୁଖେ ପ୍ରିୟକଥା ହୃଦେ କୁଟିଳତା
ଆଚରଣ କରି ମଣିଷ ଭବେ
ସ୍ୱାର୍ଥ ସାଧନରେ ତତ୍ପର ହେଲେହେଁ
ପାଉଛି କି ଯଶ ଜୀବନେ ଲଭେ ।

ବିଷୟ ଲାଳସା ବିନାଶ ନିମିତ୍ତ
ହେଲେ ବା ସମର୍ଥ ମଣିଷ ବୁଦ୍ଧି
ସମସ୍ତଙ୍କ ମନେ ଉପୁଜିବ ଶ୍ରଦ୍ଧା
ଧର୍ମତତ୍ତ୍ୱେ କଲେ ଅନ୍ତର ଶୁଦ୍ଧି ।

ଭୂମିରୁ ଉତ୍ପନ୍ନ ହେଉଅଛି ଅନ୍ନ
ଏ ଶ୍ରଦ୍ଧା ନଥିଲେ କୃଷକ ମନେ
ଏଥିବା ଅନ୍ନରେ ନଥିଲେ ତା ଲୋଡା
କଳ୍ପନା କି ଶ୍ରମ ବୀଜ ବପନେ ।

ଶୁଦ୍ଧ ଆଚରଣେ ଅର୍ଜିବ ଜୀବିକା
ସ୍ୱଳ୍ପାହାରୀ ହେବ ପ୍ରାଣ ଧାରଣେ
କପଟାଦି ଦୋଷ ବିସର୍ଜନ କରି
ନେଉଥିବ ଯତ୍ନ ଦୁଃଖ ପ୍ରହାଣେ (ବିନାଶ) ।

ସନ୍ତୁଷ୍ଟ ଚିତ୍ତରେ ସଦ୍‌ବୃତ୍ତି ଆଚରି
ହେବ ଅବିରାମ ମଧୁରଭାଷୀ
ହିଂସା ପ୍ରବୃତ୍ତିକୁ ପ୍ରଶ୍ରୟ ପ୍ରଦାନି
ନ ମୁଣ୍ଡାଅ କେବେ ପାତକରାଶି ।

ଦୁଃଖର ନିବୃତ୍ତି ନହେବା ପର୍ଯ୍ୟନ୍ତ
ମୁକ୍ତି ନାହିଁ ବୋଲି କର ଚିନ୍ତନ
ମୋକ୍ଷ ସମୀପରେ ପହଂଚିବା ପାଇଁ
କରୁଥିବ ଶିକ୍ଷା ଜ୍ଞାନ ଦର୍ଶନ ।

ଶାରୀରିକ ଅବା ମାନସିକ ସୁଖ
ଶିଖାଇବ ବ୍ରହ୍ମଚର୍ଯ୍ୟ କେବଳ
ଶୃଙ୍ଖଳାଶୀଳ ହିନା ଧରଣୀ ମଧ୍ୟରେ
ମଣିଷର ବନ୍ଧୁ ଶରଣବଳ ।

ସୂକ୍ଷ୍ମ ଦୋଷ ଦେଖି ଫେରୁଥିବ ଭୟ
ନିଜ ବ୍ରତ ଦୃଢେ କରି ପାଳନ
ଦୁଃଖର ନିବୃତ୍ତି ଆସିବା ନିମିତ୍ତ
କର ଆଚରଣ ଶ୍ରେଷ୍ଠ ଜୀବନ ।

ନିୟମ ରୂପକ ଚଢ଼ର ମଧ୍ୟରେ
ଧୈର୍ଯ୍ୟରୂପୀ ଧନୁ ଧରି ଦୃଢ଼ରେ
ସ୍ମୃତି କବଚକୁ ପରିଧାନ କରି
କର ଅବରୋଧ ତୃଷ୍ଣାକୁ ଶରେ ।

ଇନ୍ଦ୍ରିୟ ବଇରି କଲେତ ନିଗ୍ରହ
ସ୍ୱଚ୍ଛନ୍ଦେ ସଂସାରେ ସୁବିଧା ମିଳେ
ଇନ୍ଦ୍ରିୟ ଅଧୀନ ହୋଇ ବିଷୟରେ
ନରଖ ଆକାଂକ୍ଷା ହୃଦୟେ ତିଳେ ।

ଇନ୍ଦ୍ରିୟ ନିକର ଯେ ଯାହା କ୍ଷେତ୍ରରେ
ରହିଛନ୍ତି ଛପି ଅନବରତ
କଲବଲ କରି ମଣିଷକୁ ଭବେ
ଉଦ୍ଦେଶ୍ୟ ସଫଳ ଲାଗି ଉଦ୍ୟତ ।

ଯେପରି ଯାତର ନ ଲଭଇ ତୃପ୍ତି
ଜଳରାଶି ଧରି ନିଜ ବକ୍ଷରେ
ସେପରି ଇନ୍ଦ୍ରିୟ ବିଷୟୋପଭୋଗେ
ନ ଲଭେ ସନ୍ତୋଷ କେବେ ଭବରେ ।

ଇନ୍ଧନ ଅନିଳ ସଂମିଶ୍ରଣ ହେତୁ
ବହ୍ନି ପ୍ରଜ୍ୱଳିତ ହୁଅଇ ଯଥା
ବିଷୟ କଳ୍ପନା ଦୁଇଟିର ଯୋଗେ
ହୁଏ ଉଦ୍ଦୀପିତ କ୍ଲେଶାଗ୍ନି ତଥା ।

ଏ ଭବେ ମଣିଷ ରହେ ବାନ୍ଧ ହୋଇ
ଅସାର କଳ୍ପନା ଫାନ୍ଦରେ ପଡି
ଦୃଷ୍ଟି ଘ୍ରାଣ ସ୍ପର୍ଶ ଶ୍ରବଣ ଆସ୍ୱାଦ
ଦେଖୁଛ ଉନ୍ମତ୍ତ ଘଡ଼କି ଘଡ଼ ।

ଧର୍ମପ୍ରତି ପ୍ରୀତି ରଖୁଥିବ ନିତି
ମରଣ ଅବଶ୍ୟ ହୃଦୟେ ଜାଣି

ଅନନ୍ତ ସନ୍ତାପ ଆସି ବାର ବାର
ପୀଡୁଅଛି ସଦା ଲୋକକୁ ଟାଣି ।

ମରଣ ଅବଶ୍ୟ ରଖି ହୃଦୟରେ
ପରମାର୍ଥ ଚିନ୍ତା କର ଜୀବନେ

ନିଜ ଶ୍ରେୟ ଲାଗି ବିଘ୍ନ ଜାତ କରି
ଦିଅ ନାହିଁ ଦୁଃଖ ଅନ୍ୟର ମନେ ।

ଅକୁଶଳ ଚିନ୍ତା ଅକୁଶଳ କର୍ମ
କରି ଲୋକ କିଏ ଲଭଇ ସୁଖ ?

ଜରା ବ୍ୟାଧି ମୃତ୍ୟୁ ଚଉଦିଗେ ଘେରି
ଶରୀରୀମାନଙ୍କୁ ଦେଉଛି ଦୁଃଖ ।

ଏ ଭବେ ଅଛିକି ଏହିପରି ସ୍ଥାନ
ଯହିଁ ନାହିଁ ବ୍ୟାଧି ଜରା ମରଣ

ତେଣୁ ଆସକ୍ତିରୁ ନିବୃତ୍ତ ନିମିତ୍ତ
ସଦା ଜୀବଲୋକ ଅସାର ମଣ ।

ସୁଖ ଦୁଃଖ ଦ୍ୱନ୍ଦ୍ୱ ଦୁନିଆଁ ଭିତରେ
ଲାଗିଛି ସତତ ପଡେ ନୟନେ

ଅମୃତ ସମାନ ପ୍ରଜ୍ଞା ରସ ପିଇ
ତୃପ୍ତି ରଖି ହୃଦେ ଚଳ ଭୁବନେ ।

⊙ ⊙ ⊙

## ଦ୍ୱିତୀୟ ସର୍ଗ

ମନକୁ ବିକୃତ କରୁଛି ଯିଏରେ
ଦୂରରେ ରହିବ ତାର

ଯମ ନିୟମକୁ (ଈଶ୍ୱର ନିଯୋଗ) ପାଳିଲେ ତ ହେବ
ପାରି ଭବ ଅକୂପାର ।

ଉତ୍ପଥଗାମୀ ବା ହେଲେ କେତେବେଳେ
କର ପ୍ରାୟଶ୍ଚିତ୍ତ ତାର

ସ୍ନେହ ବିମୋହିତ ସୁଗନ୍ଧିତ ବାୟୁ
ପାଇ ନବ ମଲ୍ଲିକାର ।

ନବ ଯଉବନ କାମିନୀ ମାନଙ୍କୁ
ଦେଖି ହୁଅ ନିର୍ବିକାର

ବିବେକ ଲଗାମ ଦୃଢମନେ ଧରି
ରହ ସଦା ହୁସିଆର ।

ଚନ୍ଦ୍ରମା କିରଣ ଉଦ୍ଭାସିତ ରାତ୍ରି
ଅଟଇ ସଦା କ୍ଷଣିକ

ଅତି ଯତନରେ ରଖିଲେ ସାଇତି
ଯିବ କି ସଙ୍ଗେ ମାକ୍ଷିକ (ସୁନାରୂପ) ।

ବେଳ ଥାଉଁ ଥାଉଁ ମୋହକୁ ମନ୍ଥନ
କଲେ ବା କି ହେବ ଫଳ

ବିଷୟରେ କିମ୍ପା ପେଷି ହୋଇ ସଦା
ପିଉଛି ଆଣି ଗରଳ ।

ସହାୟ ସମ୍ପନ୍ନ ନୁହେ ଯା ଜୀବନ
କରୁଥିବ ତାକୁ ଭୟ

ବିବେକର ବୋଲ କରୁଥିଲେ ସିନା
ହେବ ପ୍ରବୋଧ ଉଦୟ । (ଜାଗରଣ, ଜ୍ଞାନ)

କରି ପରିହାର          ଆଳାପ ବିଳାସ
ହାସ୍ୟ କ୍ରୀଡା ଆଲିଙ୍ଗନ
ପରମ ଚଣ୍ଡାଳ          କ୍ରୋଧକୁ ହୃଦରୁ
କର ତବେ ଉନ୍ମୂଳନ ।

ଗର୍ବୋଦ୍ଧତ ଯୋଗୁଁ          କାର୍ଯ୍ୟାକାର୍ଯ୍ୟ ଜ୍ଞାନ
ରହିତ ହୋଇ ମଣିଷ
ଯଥେଚ୍ଛାଚାରିତା          ହେତୁରୁ କୁପଥେ
ପ୍ରବୃତ୍ତ ସିନା ଅନିଶ ।

କ୍ରୋଧ ଜଗତକୁ          କରିଦିଏ ଅନ୍ଧ
ପୁଣି ସ୍ମୃତି ଶକ୍ତିହୀନ
କ୍ଷଣକ ମଧ୍ୟରେ          ହୋଇଯାଏ ତାର
ହିତାହିତ ଜ୍ଞାନ ଲୀନ ।

ମିଥ୍ୟା ପ୍ରତି ନିତି          ଥିବ ଜାଗରୁକ
ତା ପୂଜା ରଜ ଦୁଆରେ
ବାଟରେ ଘାଟରେ          ଯେ ପାଉଛି ନିନ୍ଦା
ତା ପ୍ରୀତି ପୁଣି ବେଢ଼ରେ ।

ନୀଳୋତ୍ପଳ ସମ          ଆକର୍ଣ୍ଣ ବିସ୍ତୃତ
ନୟନ ଦ୍ୱୟ ଯାହାର
ସେହି ମହା ମୋହ          ଭବରଙ୍ଗ ମଞ୍ଚେ
ହୋଇଅଛି ନାଟ୍ୟକାର ।

ଲୋଭ କ୍ରୋଧ ହିଂସା          ନଟ ସାଜି ତହିଁ
କରୁଛନ୍ତି ଅଭିନୟ
ଶାନ୍ତି ପୁଣି ଶ୍ରଦ୍ଧା          ତହିଁର ଦର୍ଶକ
ହୋଇ ପାଉଛନ୍ତି ଭୟ ।

ସୁଖୀ ଠାରେ ମୈତ୍ରୀ          ଦୁଃଖୀଠାରେ ଦୟା
ଧର୍ମାତ୍ମାଠାରେ ସନ୍ତୋଷ
ବହି, ଉନ୍ମୂଳନେ          ନୀଚ ପ୍ରବୃତ୍ତିର
ସହିବ ଅବଶ୍ୟ ପ୍ରୋଷ (କ୍ଳେଶ, ସନ୍ତାପ) ।

ଅନ୍ତରାତ୍ମା କା'ର          ନହେଉ ଦୂଷିତ
ରୋଷ ଦ୍ୱେଷ ଅହଙ୍କାରେ
ଶାନ୍ତ ଶ୍ରଦ୍ଧା ମୈତ୍ରୀ          ଖେଳିଲେ ହୃଦୟେ
ମିଳିବ ଯଶ ସଂସାରେ ।

ମୃଗ ମରୀଚିକା          ତୁଲ୍ୟ ସାର ଶୂନ୍ୟ
ସଦା ସାଂସାରିକ ସୁଖ
ଆତ୍ମଜ୍ଞାନ ଲଭି          ମହା ଆନନ୍ଦରେ
ହୁଅ ତହିଁରୁ ବିମୁଖ ।

ରକ୍ତାକ୍ଷ କ୍ରୋଧକୁ          ଜୟ କରିବାରେ
କ୍ଷମାକୁ କର ଆଶ୍ରୟ
ସହାସ ବଦନେ          କୁଶଳ ପ୍ରଶ୍ନରେ
ହେବ କୋପର ବିଲୟ ।

ମେଣ୍ଟିବ କି ଆଶା          କା'ର କେତେବେଳେ
ଜନମି ବସୁନ୍ଧରାରେ
ସ୍ୱାର୍ଥାଦି ଚେଷ୍ଟାରୁ          ଅପସରି ଯାଇ
ଚଳ ସଦା ଅହିଂସାରେ ।

ଦେଖୁଛ ତ ମୃତ୍ୟୁ          ମସ୍ତକେ ସବୁରି
କରେ ନୃତ୍ୟ ଅବିରଳ
ଜ୍ଞାନଜଳେ ତେଣୁ          ଅଜ୍ଞାନ ଧୂଳିକି
ଧୋଇ କରିବ ନିର୍ମଳ ।

ଗୃଧ୍ର ରୂପୀ କ୍ରୋଧ          ଲୋଭ ମାତ୍ସର୍ଯ୍ୟର
ତତ୍ପର ହୁଅ ବିନାଶେ
ଭୀଷଣ ସର୍ପିଣୀ          ଜରା କଲେ ଗ୍ରାସ
ପଶୁଛି କିଏ ତା ପାଶେ ।

ସଂସାର ବାସନା          ବିଘଟନ ପାଇଁ
କରିଥାଅ ଯାହା ଭଲ
ମରଣ ଜନିତ          ଶୋକାଗ୍ନିରେ ପଡ଼
ହୁଅ ନାହିଁ ବିକଳ ।

କଳ୍ପନା ଗଠିତ          ପଦାର୍ଥରେ କେବେ
ହୁଅ ନାହିଁ ବିଡମ୍ବିତ
ଆକାଶ ବକ୍ଷରୁ          ଫଳ ଆଶା କରି
ନହୁଏ କିଏ ଲଜ୍ଜିତ ?

ରଖିଲେ ତ ଚିହ୍ନି          ହିତୈଷୀ ମାନଙ୍କୁ
ଚଳିବ ସୁଖେ ସଂସାରେ
ଦେଖିଲେ ଶତ୍ରୁକୁ          ନହୋଇ ବିବ୍ରତ
କହିବ କଥା ଶ୍ରଦ୍ଧାରେ ।

ସହସ୍ର ଶିଖାରେ — ସ୍ନେହାଙ୍କୁର ଉଠି
ଶୋକ ବୃକ୍ଷ ହୁଏ ଜାତ
ତା ତତ୍ତ୍ୱ ବିଚାର — କରି ନିରନ୍ତର
ନ ଘବ ଏ ରେ ଉତ୍ପାତ ।
ନାନାବିଧ ରୋଗ — ହେଉଅଛି ଜାତ
ଏ ଶରୀରେ ପ୍ରତିଦିନ
ବିନାଶେ ତାହାର — ପ୍ରୟାସୀ ନ ହେଲେ
ଅବଶ୍ୟ ମଣିଷ କ୍ଷୀଣ ।
ପ୍ରବୃତ୍ତିରୁ ଜାତ — ମାତ୍ସର୍ଯ୍ୟ ବିଦ୍ୱେଷ
କ୍ରୋଧ ଅହଂକାର ଆଦି
ବିବେକ ଜୀରକେ — ନକଲେ ଉଚ୍ଛେଦ
ଆଣିଥାନ୍ତି ନାନା ବ୍ୟାଧି ।
ଚିତ୍ତବୃତ୍ତି ସଦା — ହେଉ ପରିଷ୍କୃତ
ଇନ୍ଦ୍ରିୟ କରି ଦମନ
ଶାଶ୍ୱତ ଶକ୍ତିକି — ଜାଣିବା ନିମିତ୍ତ
ମଣିଷ କରୁ ଯତନ ।
ଅଘଟ୍ୟ ସମୟ — ହେଲେ ଉପସ୍ଥିତ
ହୁଅଇ କୃଶ ଶରୀର
ମର୍ମଭେଦୀ କ୍ଲେଶ — ଜାତ ହୋଇ ତହୁଁ
ଲୋକକୁ କରେ ଅସ୍ଥିର ।
ଅନର୍ଥ ସାଧିକା — ଅଟଇ ପ୍ରବୃତ୍ତି
ସମ୍ପତ୍ତି ମୃତ୍ୟୁ କାରକ
ବୈଷୟିକ ମାର୍ଗ — ଜରେ ତ୍ୟାଗ ତେଣୁ
ପରଂବ୍ରହ୍ମ ଉପାସକ ।
ବିଘ୍ନରକ ଯେବେ — କରିବ ଅନ୍ୟାୟ
କାହାକୁ କହିବା ଦୁଃଖ
ଆଳସ୍ୟରେ ନିତି — ଯାପିଲେ ସମୟ
ମିଳିବ କି କେବେ ସୁଖ ?
ବୃଷଭ ଗଜଭ (ଗଧ) — ଦଣ୍ଡରେ ବାରଣ
କରିହେବ ଅନାୟାସେ
ମୂର୍ଖତା ଦୋଷରୁ — ଦୁର୍ଜନ ଆୟତ୍ତ
ହେବ କି ଶତ ପ୍ରୟାସେ ?

ବାସ୍ତବିକ ଜ୍ଞାନ — ନକରି ଅର୍ଜନ
ପଣ୍ଡିତ ବୋଲାଇ ଥୋକେ
ପଦ ଲେହନର — ଆଶ୍ରୟରେ ଆଜି
ପାଉଛନ୍ତି ପୂଜା ଲୋକେ (ଜଗତରେ) ।
ଅତି କ୍ଷୁଦ୍ର ପ୍ରାଣୀ — ହେଲେହେଁ ପିମ୍ପୁଡ଼ି
ଖଟିଖିଆ ସଦା ଭବେ
କୁଟୁମ୍ବ ଭିତରେ — ଥିବାରୁ ଏକତା
ଡର ନାହିଁ ତାର ଲବେ ।
ଅଧିକାର ଲାଗି — ନୋହି ବ୍ୟସ୍ତ କେବେ
ସେବାରେ ଲଗାଅ ମନ
ଅସହାୟ ପ୍ରତି — ଦୟା ବହି ଚିତ୍ତେ
ସାର୍ଥକ କର ଜୀବନ ।
ଭୋଗ ପାଇଁ କେବେ — ନ ହେଉ ବ୍ୟୟିତ
ନିଜ ଉପାର୍ଜିତ ଧନ
ନମ୍ର ଅଭାବେ — ଦଇନ ପ୍ରକାଶ
ଧନୀ ଆଗେ କଦାଚନ ।
ଜାତିର ଟେକକୁ — ରଖିବାକୁ ସଦା
କରିବ ଜୀବନେ ପଣ
ସତ୍ୟ ନ୍ୟାୟ ଲଗି — ସକଳ ବରଜି
ନିରତ କରିବ ରଣ ।
ତୀର୍ଥ ଯାତ୍ରା କରି — କି ଫଳ ପାଇବ
ନଥିଲେ ଶୁଦ୍ଧ ହୃଦୟ
ଲୋଭ ବନ୍ଧନରେ — ନ ପଡ଼ିଛି ଯିଏ
କାହାକୁ ନାହିଁ ତା ଭୟ ।
ମଣିଷକୁ ସ୍ୱାର୍ଥ — କଢ଼ାଇଲେ ବାଟ
ପର ଦ୍ରବ୍ୟେ ଆଶା ବଳି
ଅସାଧୁ ଉପାୟ — ଅବଲମ୍ବି ସିନା
ଭିଆନ୍ତି ଦୁଚ୍ଛାକୁ କଳି ।
କୁଳଶୀଳ କା'ର — ନଜାଣି ସହସା
ନ କରେ ତାକୁ ବିଶ୍ୱାସ
ସଂସାର ସଂଗ୍ରାମେ — ରଖିବାକୁ ଟେକ
ବରଜ ଭୋଗ ବିଳାସ ।

ଜଗତର ଗତି ଦେଖି ଦେଖି ନିତି
ମନକୁ ରଖିବ ଥୟ
ମାତୃଭୂମି ଋଣ ଶୁଝିବା ନିମିତ୍ତ
କରୁଥିବ ସଦା ଲୟ ।
କୋଟି କୋଟି ପ୍ରାଣୀ ବସୁନ୍ଧରା ମଧ୍ୟେ
ସରଜେ ଯେ ଦଣ୍ଡକରେ
ତା ଗୁଣ କୀର୍ତ୍ତନେ ମନ ଦିଅ ଢାଳି
ଶୟନେ ବା ବିଶ୍ରାମରେ ।

ତୁଣ୍ଡେ ହରିନାମ ଭିତରେ ଶଠତା
ଅବଲମ୍ବି କେତେ ଜନେ
ପାପର ଅଟାଳି ତୋଳୁଛନ୍ତି କେତେ
ନିଜ ଜୀବିକା ଅର୍ଜନେ ।

ନ ସହେ ଦଇବ କାହାର ଅନ୍ୟାୟ
ଯେତେବେଳେ ଯାଏ ବଢ଼ି
ରୋଗ ଦଣ୍ଡ ଭୋଗି ଅନ୍ୟାୟୀ ସନ୍ତତ
କତରରେ ଯାଏ ସଢ଼ି ।

ମିଛ ପ୍ରତି ଘୃଣା କର ଅହରହ
ବଂଚିଥିବା ଯାଏ ଭବେ
ସତ୍ୟକୁ ସଖାଳି କଲେ ସଦା ସିନା
ପୂଜନ୍ତି ତାକୁ ସରବେ ।

ପରରୁଚି ପ୍ରତି ହେଉ ଅନୁକୂଳ
ଅବିରାମ ବ୍ୟବହାର
ଅପମାନ ମାନ ବଢ଼ଇ ଛିଡ଼ଇ
ଅଧର ଭେଦରେ କା'ର ।
ମିଛ ଗାଇ ଗାଇ ଅନ୍ୟକୁ ଠକିବା
ବୃତ୍ତି କରିଥିବ ଯେବେ
ଭଗବତ ଗୀତା ଶୁଣୁଥିଲେ ବସି
ଖଣ୍ଡିବ କି ପାପ କେବେ ?

ନାଶଶୀଳ ଭବେ କେତେ ଦିନ ତୁମେ
କର ଚିନ୍ତା ବାରବାର
କର୍କଶ ବଚନ କହି କେବେ ବ୍ୟଥା
ଦିଅ ନାହିଁ ମନେ କା'ର ।

ନାନା କଥା ଲୋକେ କହନ୍ତି ପଛରେ
ଛୁଡଲେ ବଚନ ଥରେ
ଏଣୁ ପଛଘୁଞ୍ଚା ଦିଅ ନାହିଁ କେବେ
ଅଙ୍ଗୀକାର ପାଳନରେ ।
କ୍ରୀଡା ଆମୋଦରେ ଯାଉଛି ସମୟ
ଶିଖିବାକୁ ନାହିଁ ବେଳ କାହାର
ବେଦ ବେଦାନ୍ତକୁ ଚୋଡରେ ଆଡେଇ
ସ୍ୱାର୍ଥ ଚିନ୍ତା କଲ କେବଳ ଯାର ।

କ୍ରୀଡାରତ କେହି ନଥାଇ ପୂରୁବେ
ଥିଲେ ତ ଟାଣୁଆ ଅତି
ସ୍ୱାସ୍ଥ୍ୟ ଅବନତି ନଥିଲା କାହାର
ଥିବାରୁ ସଂଯମେ ମତି ।

ଇନ୍ଦ୍ରିୟଙ୍କ ଦ୍ୱାରା ପ୍ରତାରିତ ହୋଇ
ଦିନ ସରୁଅଛି ଯା'ର
ବେଦୋକ୍ତ ବଚନ ବୁଝାଇଲେ ତାକୁ
ପଶିବ କି କାନେ ତାର

ଅନୁରାଗ ଯୁକ୍ତ ହେଲେହେଁ ମିଳନ
ସହାୟ ନ ଅନ୍ତମର
କିଏ ବୋଲି ମୁହିଁ ନପଚରି ଜୀବନେ
ମହିଷ କି ହରବର ?

କର୍ମକୃତ ଫଳ ନ ଭୋଗୁଛି କିଏ
ଜନମି ବସୁନ୍ଧରାରେ ?
ନ ହୋଇ ଥିଲେ ତା ପଳିତ ଗଳିତ
ବୁଲନ୍ତେ କି ଦ୍ୱାରେ ଦ୍ୱାରେ ?
ବଂଚିଥିବା ଯାଏଁ କଂଚିଛି ପକାଇ
ସଂଚିଥିବା ଯେତେ ଧନ
ଲାଗିବ ତହିଁରେ ପକ୍ଷମାନ ଆସି
ବୁଜିବା କ୍ଷଣି ନୟନ ।

ବିବେକ ରୂପକ ଅଞ୍ଜନ ଲଗାଇ
ଦେଖିବ ଜଗତ ଯେବେ
ପାର୍ଥିବ ପଦାର୍ଥେ କାର ଅଧିକାର
ନଥିବା ଜାଣିବୁ ତେବେ ।

ତୋ ଔରଷୁ ଜାତ ସନ୍ତାନ ସନ୍ତତି
ତୋ ଲାଗି ନୋହି ବାଉଳି
ଆପଣା ସୁଖକୁ ଲୋଡ଼ ନିରନ୍ତର
ହୁଅନ୍ତୁ ସଦା ବାଉଳି ।

ପତି ପତ୍ନୀଙ୍କର କୁଟୁମ୍ବ ଭିତରେ
ଅନୁକୂଳ ଆଚରଣ
ପରସ୍ପର ପ୍ରତି ନଥିଲେ ଅବଶ୍ୟ
ହୁଅଇ ଦୁଃଖ କାରଣ ।

ହାତ ଯାଉ ନାହିଁ ଦେବାକୁ ମୁଠାଏ
ଭିକାରୀ କି ଦେଖି ଟା'ର
ଅଣ୍ଡା ଭିଡ଼ କିଏ ଠିଆ ହେବ ଆସି
ବିପଦ ସମୟେ ତା'ର ।

ବିନା ଧନେ କବି ସର୍ବତ୍ର ପୂଜିତ
ହୋଇଥାଏ ସିନା ଭବେ
ଦାରିଦ୍ର୍ୟ ଦୁଃଖରେ ପ୍ରପୀଡ଼ିତ ହୋଇ
ନର୍କରେ ସେ ଚିନ୍ତା ଲଭେ ।

ଆସନ୍ତ ଯାଆନ୍ତ ଋତୁଏ ଯେପରି
ଜୀବନ ସେପରି ଭବେ
ଏଣୁ ବା କାହିଁକି କରିବ ଭାବନା
ତ୍ରାଣ ପାଇଁ କେବେ ଲଭେ ।

ମାନ ଅଭିମାନ ପୋଡ଼ିଦେଇ ହୃଦୁଁ
ତୋଳିବ ଶରୀର ଘର
ଜୀବନ ପଥରେ ଚାଲି ନ ଜାଣିଲେ
ଝୁଣ୍ଟିବ ଥରକୁ ଥର ।

ସକଳ କର୍ମରେ ଈଶ୍ୱର କରୁଣା
କଲେ ସଦା ଅନୁଭବ
ଦୁଃଖ ବୋଲି କେବେ ଜାଣି ନ ପାରିବ
ଜୀବନ ଯାତ୍ରାରେ ତବ ।

ବଚନେ ଆଦର ସତ୍ୟତା ନଥିଲେ
କରିବ କିଏ ଗ୍ରହଣ
ଜନ ହିତ ପାଇଁ ମନ ଦିଅ ସଦା
କରି ଶାନ୍ତ ଉଚ୍ଚାରଣ ।

ଉତ୍ତାଳ ତରଙ୍ଗ ଯା ନାମ ଭକ୍ତିରେ
ଘୋଷୁଅଛି ନିରନ୍ତର
ତା ନାମ ହୃଦୟେ ଜପାମାଳ କରି
ତରିବ ଭବ ସାଗର ।

ଜୀବନେ କା ପ୍ରତି ଶତ୍ରୁତା ନ ରଖି
ଆନନ୍ଦେ ଯାଉ ସମୟ
କଳହରୁ କ୍ଷାନ୍ତ ହେଲେ ସିନା ଜନ
ହୃଦୟେ ନଥିବ ଭୟ ।

ଐଶ୍ୱରିକ ଜ୍ୟୋତି ପାଇବା ନିମିତ୍ତ
ସନ୍ତତ କଲେ ଯତନ
ଦୁର୍ବଳତା କ୍ଲାନ୍ତ ନ ପଶି ଶରୀରେ
ପ୍ରଫୁଲ୍ଲ ରହିବ ମନ ।

ଖୋଜୁଛି ପବନ ଯାହାକୁ ନିରତ
ନକରି ବିଶ୍ରାମ ଲବେ
ଦୃଢ଼ ମନେ ତାଙ୍କୁ ଧ୍ୟାୟି ଦିନଗତି
ମରଣ ଜିଣିବ ଭବେ ।

ବନ୍ଧୁ ବନ୍ଧୁ ମଧ୍ୟେ ଟାଉ ଅନୁରାଗ
ରହିଥାଉ ନିରନ୍ତର
କୁଳର ମର୍ଯ୍ୟାଦା ରହିଥାଏ ସିନା
ଥିଲେ ସ୍ନେହ ପରସ୍ପର ।

ସାଂସାରିକ ବସ୍ତୁ ପାଇବା ନିମିତ୍ତ
ସ୍ୱଧର୍ମକୁ ଦେଲେ ଛାଡ଼
ନକରି ଭ୍ରୂକ୍ଷେପ ନିନ୍ଦା ଅପମାନ
ଶେଷରେ ହେବ ଅଜାଡ଼ ।

( ଚକ୍ରକେଳି )

ବିଶ୍ୱକର୍ତ୍ତାଙ୍କର ନିୟମ ଯାହା,
କିଏସେ ଜଗତେ ଖଣ୍ଡିବ ତାହା ।
ସେ ନିୟମ ଦେଖି ନିରତ ଚଳ,
ଜୀବନେ ତୁମର ହେବ ମଙ୍ଗଳ ।
ଦୋଷ ଦିଅ ନାହିଁ କେବେ କାହାକୁ,
ରଖିବ ସଂଯତ ସଦା ଭଷାକୁ ।

ବିବାଦ ବହ୍ନିକି ବିଂଚିବ ଯେବେ,
ଜାଳି ପୋଡ଼ଦେବ ସର୍ବସ୍ୱ ତେବେ ।

ରେ, ମଣିଷ ରହ ସଜାଗ ଭବେ,
ଧୂର୍ତ୍ତର କବଳେ ନପଡ଼ ଲବେ ।

ନାସ୍ତିକ କଥାରେ ନଦେବୁ କାନ,
ଯେହେତୁ ଲଘବ ହେବ ସମ୍ମାନ ।

ସତ୍ୟର ସନ୍ଧାନେ ଗଲେ ଜୀବନ,
ପରମାତ୍ମା ସଙ୍ଗେ ହେବ ମିଳନ ।

ଯାଅ ଅପସରି ତୁଚ୍ଛା କଳିରୁ,
ପାଉଅଛ କ୍ଳେଶ ସିନା ତହିଁରୁ ।

ହେଉଛି ମଣିଷ କି ହରବର !
ପ୍ରତିଶୋଧ ଲଗି ହୋଇ ତତ୍ପର ।

କା ସଙ୍ଗେ ଶତ୍ରୁତା ନ ରଖ ଲବେ,
ଯହିଁରୁ ମିଳଇ ଅଶାନ୍ତି ଭବେ ।

ଦେଖୁଛି ଚୌଦିଗେ ଯେ ନିରନ୍ତର,
ନାହିଁ କିଛି ଭବେ ତା ଅଗୋଚର ।

ଉତ୍ତାଳ ତରଙ୍ଗ ସିଂଧୁ ମଧ୍ୟରେ,
ଶୁଭୁଛି ତା ଗୀତି କେତେ ସ୍ୱରରେ ।

ହିମାଳୟ ଶୃଙ୍ଗ ବହିଛି ରହି,
ତା'ର ଦରଶନ ପାଇବା ପାଇଁ ।

ଗ୍ରହ ଉପଗ୍ରହ ତା'ର ଆଦେଶ,
ପାଳୁଛନ୍ତି ସଦା ନବହି କ୍ଳେଶ ।

ଉଠରେ ମଣିଷ ପାହିଲା ରତି,
କରିଯାଅ କର୍ମ ପତାଇ ଛାତି ।

ଜୀବନ ଯାତ୍ରାରେ ହେଲେ ନିଷ୍କ୍ରିୟ,
ବିଶ୍ୱକର୍ତ୍ତାଙ୍କର ହେବ ଅପ୍ରିୟ ।

ମନ୍ଦବୁଦ୍ଧି ତେଜି ଅଧମ ନରେ,
କରନ୍ତୁ ଭଣାଣ ତାଙ୍କ ପୟରେ ।

ଜଗତର ଲୀଳା କରି ଦର୍ଶନ,
ପରଦ୍ରବ୍ୟେ କେବେ ନ ବଳୁ ମନ ।

ସହଯୋଗ ବିନା ଚେଷ୍ଟା ସକଳ,
ନ ହେବ ଜୀବନେ କାର ସଫଳ ।

ସୁଖର କାରଣ ନୁହେ ସମ୍ପତ୍ତି,
ଘେର ଝଣ୍ଟ ଲଗି ବଢେ ବିପତ୍ତି ।

ବଦାନ୍ୟ ବ୍ୟକ୍ତିର ସମ୍ପତ୍ତି ଶୂନ୍ୟ,
ହୁଏ ନାହିଁ ଦାନେ, ବଢଇ ପୁଣ୍ୟ ।

ମନ ଅନିର୍ମଳ ଥିବ ଯାହାର,
ଜୀବନେ ଅଶାନ୍ତି ସଦା ତାହାର ।

ପ୍ରବୃତ୍ତିକି ଭଗି ଚଳିବ ଭବେ,
ଅସମ୍ଭାଳ ଲୋକ ଯା ଉପଦ୍ରବେ ।

ଏକୁଟିଆ ବସି କର ବିଚାର,
ସ୍ୱାର୍ଥ ଅଭିଳାଷେ କି ନାରଖାର ?

ଯେତେଦିନ ଭବେ ଅନ୍ଧାରେ ଥିବ,
ଦଗଣ୍ଡି ଦଗଣ୍ଡି ଜୀବନ ଯିବ ।

ନଥିବ ଅଭାବ, ନଥିବ ଭୟ,
ଈଶ୍ୱର ଚିନ୍ତାରେ ଥିଲେ ହୃଦୟ ।

ହସୁଛି ଆଜି ଯେ କାନ୍ଦୁଛି କାଲି,
ସମ୍ପଦ ଭଣ୍ଡାର ପଡୁଛି ଖାଲି ।

ନଶ୍ୱର ଗରବ ମର ଶରୀରେ,
ମିଶିବ କାଲି ଯା ଧୂଳି ମାଟିରେ ।

ପରମେଶ ଠାରେ କର ଭରସା,
ନହେଉ ଜୀବନ ଭଗାରି ହସା ।

ମାୟା ଦୁନିଆଁରେ କି ଛଟପଟ ?
ହେଉଛି ମଣିଷ ବହି କପଟ ।

କିଏସେ ଆତ୍ମୀୟ କିଏ ବା ପର,
ଧନ ସରିଗଲେ ସର୍ବେ ଅନ୍ତର ।

ନ ପାଏ ଗରୀବ ମୁଠାଏ ଅନ୍ନ,
ଅଯଥାରେ ଏଣେ ସରୁଚି ଧନ ।

ଚପଳ ମନକୁ କରି ସଂଯତ,
ଚଳୁଥିବ ବାଟ ହୋଇ ଜାଗ୍ରତ ।

## ନଷ୍ଟବାଣୀ

ମରଣ ଡାକର କେ ପାଉଛି ଏତ
ନିଅଇ ଯେ ଟାଣି ରୋଡେ ଦେଇ ବେଢ଼ ।

ଆଖି ଆଗେ ରଖ ମୃତ୍ୟୁକୁ ପ୍ରଥମେ
ଦିନ ହରିଚାଉ ସଦା ପରିଶ୍ରମେ ।
ମରଣ ସମୟେ କି ବୋଲିବେ ଜନେ
ବେଳ ଥାଉଁ ଥାଉଁ ଭବୁଛ କି ମନେ ?

ଯୌବନ ଭଂଗିମା କେତେ ଦିନ ପାଇଁ
ଯାର ପଛେ ପଛେ ଜର ଆସେ ଧାଇଁ ।
ଦିଶଇ ବିକୃତ ଯେତେ ଅବୟବ
କରିଦିଏ ଚୂନା ତୁର୍ଣ୍ଣେ (ଶୀଘ୍ର) ଗର୍ବ ତବ ।

ଯା ଆଶ୍ରୟେ ଦିନ ହରିବ ତୁମର
ବୋଲି ବିଚାରୁଛ, ସେ ହେଲଣି ପର ।
ଯାହାକୁ ଡିଆଉ ଥିଲ ତୁମେ ଦିନେ
ସେ ତ ଶୁଣୁ ନାହିଁ ତୁମ କଥା କିନେ ।

ଦେଖ ଚଉଦିଗେ କୃତଘ୍ନତା ପଣି
ଲୋକେ ର ମହତ୍ତ୍ୱ ଦେଉଛି ବିଧ୍ୱଂସି ।
ହୁଟୁଣା ନୁଆଁରେ ଲଟାଇ ଜଳହ
ଦେଖୁଛି ଶୁକଟ ଖଳ ଅହରହ ।

ବିଶ୍ୱାସ ଘାତକ ଟେକିଲେଣି ମୁଣ୍ଡ
ମିଛ କହିବାକୁ ନ ଡରେ ଯା ତୁଣ୍ଡ ।
ଓଲେମ ଧୋଲେମ ସତତ ଦୁନିଆଁ
ଟିକକ ଦୋରେ ଜଳୁଅଛି ନିଆଁ ।

ଜନମି ଏ ଦେଶେ କେତେ କେତେ ଋଷି
ନୀତି ଚାଳି ନିତି ହେଉଥିଲେ ଖୁସି ।
ହେଲେ ଅଳହୁଆ ଦୁଶ୍ଚିନ୍ତା ପ୍ରବେଶ
ନ ଆସଇ ନିଦ ନୟନକୁ ଲେଶ ।

ଉପୁଡି ତହିଁରୁ ନାନାବିଧ ରୋଗ
ଆଣଇ ଅବଶ୍ୟ ପ୍ରାଣେ କ୍ଲେଶ ଭୋଗ ।
ସେତେବେଳେ ସବୁ ମଣିବ ଅସାର
ବୃଥା ହେବ ଯେତେ ତୁମ କାରବାର ।

କା'ର ଲୀଳାଭୂମି ନୁହେ ଏ ସଂସାର
କର ନାହିଁ କେବେ ବିଳୁଆ ବିଚାର ।
ହାତେ ମାପିଦେଇ ଚାଲିବ ଚଖଣ୍ଡେ
ବିଚରିବ ସଦା ଜୀବନଟା ଦଣ୍ଡେ ।

ଭୋଗ ବିଳାସରେ ଦିଅ ନାହିଁ ମନ
ମହତେ ଖଟାଅ ଉପାର୍ଜିତ ଧନ ।
ଗ୍ରାହିଅଛି ଯାକୁ ମାୟା ମୋହ ଭବେ
ଅଛି କି ତାହାର ହୃଦେ ଶାନ୍ତି ଲବେ ।

ଆପଣା ଛିଦ୍ରକୁ ଘୋଡ଼ାଇ ଜୀବନେ
ନ ଖୋଜିବ ପର ଛିଦ୍ର କେବେ ମନେ ।
ଦିନର କରମ ବିଚାର ଶୟନେ
ଭୁଲ ଥିଲେ କର ଯତ୍ନ ସଂଶୋଧନେ ।

କର୍ତ୍ତବ୍ୟ କରମେ ନ ହୁଅ ବିମୁଖ
ଅଭିଳାଷ ଥିଲେ ପାଇବାକୁ ସୁଖ ।
ଜାଣୁଛ ବିଚିତ୍ର ଦୁନିଆଁ ବେଭାର
ଛନ୍ଦ ଚେଡି ବେଲୁଁ ହୁଅ ହୁସିଆର ।

ଟାଣୁଅଛି ଯାକୁ ସ୍ୱାର୍ଥର ଦଉଡ
ପବିତ୍ର କଥା ସେ ଯାଉଅଛି ଭୁଡ ।
ଯାହାକୁ ମଣୁଛ ହୃଦୟର ମଣି
ସେତ ପରିଣାମେ ତୁମ କାଳ ଫଣୀ ।

ସମ୍ପଦେ ବିପଦେ ତୁମ ସାହା ଯିଏ
ନାମ ତା'ର ତୁଣ୍ଡେ ନ ଧର କିଏ ।
ଘାରଇ ଯାହାକୁ ଅବିରଳ ଲୋଭ
ଅକର୍ମ କରଣେ ଅଛି କି ତା କ୍ଷୋଭ ।

ଧନ ଧନ ବୋଲି ଲୋକେ ହୋଇ ବାଇ
କୁଳର ଗୌରବ ଦିଅନ୍ତି ବୁଡାଇ ।
ଧନ ଲାଗି ହୃଦେ ଜନ୍ମିଲେ ନୈରାଶ୍ୟ
କଳେବର ଜୀର୍ଣ୍ଣ କି ବିବର୍ଣ୍ଣ ଆସ୍ୟ ।

କର୍ତ୍ତବ୍ୟ କାର୍ଯ୍ୟରେ ସାବଧାନ ହେଲେ
ଗୁରୁଜନ କଥା ମାନି
କରୁଥିଲେ କର୍ମ ଜୀବନେ ନିରତ
ନ ହେବ କଦାପି ହାନି ।

ବାଗୀଶ ବ୍ୟକ୍ତି କି କରି ଦିଏ ମୂକ
କାର୍ଯ୍ୟକ୍ଷ ବଚନ ଯଥା
କରିଥାଏ ବାଗ୍ମୀ ବୃହସ୍ପତି ତୁଲ୍ୟ
ସତତ ଜଡକୁ ତଥା ।

କେଉଁ ସମୟରେ କି କାର୍ଯ୍ୟ କରିବ
ଜାଣିବ କାର୍ଯ୍ୟ କୁଶଳ
ନ ଜାଣି ଏସବୁ ଆରମ୍ଭ କଲେ ତା
ବିଷମୟ ହେବ ଫଳ ।

ଶତ୍ରୁର ବିନାଶ କରିବ ଯୋଗାଡ
ଦେଖି ତାର ଅବନତି
କରି ଅବହେଳା ତୁନି ହୋଇଗଲେ
ବିଫଳ କାର୍ଯ୍ୟ ବିତତି ।

ଯେଉଁ ନରପତି ଅଳ୍ପ ସମ୍ପଦରେ
ମଣଇ ସୁ ଧିର ଭବେ
ଦୈବ ହେଲେ ମଧ୍ୟ ଧନ ବଳ୍ଗୁ ବୋଲି
ଚିନ୍ତଇ କି କେବେ ଲବେ ?

ସଦା ଜଳପୂର୍ଣ୍ଣ ମହା ପୟୋନିଧି
ଚଂଦ୍ରୋଦୟାକାଂକ୍ଷୀ ଯେହ୍ନେ
ପ୍ରଚୁର ଐଶ୍ୱର୍ଯ୍ୟ ଥିଲେ ମଧ୍ୟ ଲୋକ
ଲୋଡଇ ଅଧିକ ତେହ୍ନେ ।

ଶତ୍ରୁ ଉନ୍ମୂଳନ ନ କଲେ ସମୂଳେ
ପ୍ରତିଷ୍ଠା ସଦା ଦୁର୍ଲଭ
ଶତ୍ରୁ ଦିବା ଯାଏଁ ମଣିଷ ପକ୍ଷରେ
ସୁଖ କି କେବେ ସମ୍ଭବ ?

ନିରନ୍ତର ଲୋକ କୃତ୍ରିମ ମିତ୍ରତା
ଚିହ୍ନି ରଖିଥିବ ମନେ
ସଜ ସୁବିଧାକୁ ଜଗି ରହିଥିବ
କୃତ୍ରିମ ମିତ୍ର ତାଡନେ ।

ପୁରୁଷର କ୍ଷମା ହେଲେହେଁ ଭୂଷଣ
ବାରମ୍ବାର ଦୋଷ ପ୍ରତି
ନ ଆଚରି କ୍ଷମା ଦଣ୍ଡ ବିଧାନରେ
ରଖିବ ସତତ ମତି ।

ମନ୍ଦ ବାତ ବହି ନିଃସାର ତୃଣକୁ
ଝାଂକି ଦେଉଅଛି ଯଥା
ସାମାନ୍ୟ ଶତ୍ରୁକୁ ନ ରଖି ସମୀପେ
କର ଉନ୍ମୂଳନ ତଥା ।

ସଂପୂର୍ଣ୍ଣ ମଣ୍ଡଳ ଥିବାଯାଏଁ ଚନ୍ଦ୍ର
କରୁଅଛି ରାହୁ ଗ୍ରାସ
ଏଣୁ ବେଳ ଉଣ୍ଡି ବଳୁଆ ଶତ୍ରୁର
କରିବ ସମୃଦ୍ଧି ହ୍ରାସ ।

## ପୂର୍ଣ୍ଣିମା ଚନ୍ଦ୍ର

ନିଶି ଆଗମନ ଦେଖି ନିଶାମଣି
ଦେଲେ ଶୁଭ୍ରାଲୋକ ଢାଳି
ସେ ଆଲୋକ ପାଇ ଆନନ୍ଦେ ବିଭୋର
ହେଲେ କୁମୁଦିନୀବାଳୀ ।

ମୁହଁ ମୋଡ଼ିଦେଲେ ସରୋଜିନୀ ଏଣେ
ସଖୀର ଦେଖି ଏ ସୁଖ
ମଣିଷ ଯେସନ ପଡ଼ୋଶୀ ସମ୍ପଦେ
ଅନବରତ ବିମୁଖ ।

ବୃକ୍ଷ ଡାଳେ ବସି ମେଲାଇଲେ ଥଣ୍ଟ
ଚକୋର ଚନ୍ଦ୍ରିକା ପାନେ
ଟୋଳି ଟୋଳି ହୋଇ କୁମୁଦ ବାନ୍ଧବେ
ଘେରିଲେ ତାରକାମାନେ ।

ଦିଶୁଥିଲେ କିଏ ମଳିନ କିଏ ବା
ଦିଶୁଥିଲେ ଝକମକ
ଥିଲେ ଏକ ଲୟେ ରତିସାର କା'ର
ନଥିଲେ ପଡ଼ ପଲକ ।

ଏ ଶୋଭା ଦର୍ଶନେ ମୋଦେ ଶିଶୁଗଣ
ଜନନୀ କୋଳରେ ବସି
ତାଳି ମାରି ମାରି ଜହ୍ନମାମୁଁ ବୋଲି
ନାଚୁଛନ୍ତି ହସି ହସି ।

ବଢ଼ିଲେ ଏ ଶୋଭା ନିଶିସାର ନଭେ
ନିସ୍ତବ୍ଧ ଧରଣୀ ତଳ
ପାଇବାକୁ ଗତି ଉଭେଇ ଗଲେ କି
ଶୁଭିବାକୁ କୋଳାହଳ ।

ଝିପି ନେଇ ଅବା ଧରଣୀ ଘଟଣା
ଘଟିଥିଲା ଯା ବିଷୟେ
ବିଶ୍ୱ କରତାଙ୍କ ପଦତଳେ ଅପି
ଦେଲେ କି ମହା ହରଷେ !
ଅବୁଝା ମନରେ ଅଡୁଆ ଲଗାଇ
ଖେଳୁଅଛୁ କେତେ ରଙ୍ଗେ
ଦେଖି ସବୁ ଭବେ ନ ଶିଖିଲୁ ଲବେ
କି ଘେନି ଯିବୁ ତୁ ସଙ୍ଗେ ।
ଅଳିକରି ସଦା ଅଣବାଟେ ଯାଉ
ନ ବିଚାରି ଭଲ ମନ୍ଦ
କି ବୋଲନ୍ତ ଜନେ ନ ଭାବିଲୁ ଦିନେ
ତୁଚ୍ଛାକୁ ମଣୁ ଆନନ୍ଦ ।
କଲି ଯେତେ ମନା କଲୁ ଉପାସନା
କାମିନୀ କାଞ୍ଚନ ପ୍ରୀତି
ଗଲୁସିନା ବୁଢ଼ ଅସନ୍ତୋଷ ଜଳେ
ନଗଲା ତୋ ଠେସା ରୀତି ।
ଟାକର ଫୁଟାଇ ଟାକିଅଛି ଯମ
କେତେବେଳେ ଦେବ ଗିଳି
ନ ପାରିବ ରଖି ତା ହାବୁଡ଼ୁ କେହି
ଭାଇବଂଧୁ ଯେତେ ମିଳି ।
ଦରଣ୍ଡି ହେଉଛୁ ଦଣ୍ଡକ ପାଇଁକି
ମୋହ ଅନ୍ଧକାରେ ସିନା
କେ ଚାଇବ ଭବେ ଜ୍ଞାନ ଜ୍ୟୋତି କେବେ
ହୃଦୟ ନିର୍ମଳ ବିନା ।
ଈହାର ଅଲୁଅ ଲେଉଟିଲା ପରି
ଝଲିଛି ଜୀବନ ଦୁଅ
ମିଛ କରି ପେଷା ହେଉ ଲୋକହସା
ଦେହରେ ବୋଳି କାଦୁଅ ।
ସ୍ୱାର୍ଥ ଚିନ୍ତା କରି ଜୀବନଟି ସରି
ଯାଉଛି ଦେଖୁନୁ ଥରେ
ପ୍ରଲୋଭନ ପଛେ ଧାଇଁ ଧାଇଁ କିପାଁ
ପଶୁଛୁ ଅପବାଦରେ ।

ମୃଗତୃଷ୍ଣା ପଛେ ଧାଇଁଛୁ ସିନାରେ
ଅତି ତୁଚ୍ଛ ଆଶା ପୋଷି
ପାରିଛି କି କିଏ ପାରିବ ବା କିଏ
ଜଗତେ ଇନ୍ଦ୍ରିୟ ତୋଷି ?
କାହା ପାଇଁ ଏତେ ରଖୁଛୁ ସାଇତି
ବିଚାରିଲୁ ନାହିଁ ଥରେ
ନଦେଇ ମୁଠାଏ ଧେରିକିଲା ପେଟକୁ
କହୁ କଥା ଆଡମ୍ବରେ ।
ଧରିବାକୁ ମୀନ କେଉଟ ଯେସନ
ପାଣିକୁ କରେ ଗୋଳିଆ
କୁଟିଳ ତେସନ ସ୍ୱାର୍ଥ ଆଶା ରଖି
ଯୁଗଏ ଚିତ୍ତେ ଅଳିଆ ।
ଜୀବନ ଯୌବନ ନରହେ ନିରତ
କାହାରି କେବେ ଏ ଭବେ
ଜାଣି ଜାଣି ନରେ ପଡନ୍ତି ଖାଲରେ
ଭବିଷ୍ୟ ନ ଚିନ୍ତ ଲବେ ।
ହିଂସାକୁ ଆୟୁଧ କରି କିଏ ଭବେ
ପାଇଛି କି କିଏ ଯଶ ?
ଫିଟାଇ ନୟନ ଦେଖୁନୁ କିପାଁଇ
ସକଳ ପ୍ରେମରେ ବଶ ।
ଉଠାଉଛୁ ହାତ ଟିକକ କଥାରେ
ଐଶ୍ୱର୍ଯ୍ୟ ମଦମତ୍ତରେ
ଦୋଷକୁ ଘୋଡାଇ ଦେଉ ଧମକାଇ
ଯଦି ବା କିଏ ପଚାରେ ।
ଅନ୍ୟର ରକତ ଶୋଷିଲୁ ସନ୍ତତ
ଆପଣାର ବାହୁବଳେ
କରିଲୁ କି ଲକ୍ଷ୍ୟ ହେବୁ ଦିନେ ଭକ୍ଷ୍ୟ
ପଡ କାଳର କବଳେ ।
ଆସିଅଛୁ ଏକା ଯିବୁ ଫେରି ଏକା
ନୟନୁ ଲୁହ ଗଡାଇ
ବୋଲୁଅଛୁ ଯାକୁ ମୋର ମୋର ବୋଲି
ଯିବ କି ପଛେ ଗୋଡାଇ ।

ଝହଲିଆ ଧରି    ଝହଲି ଝହଲି
ବେଳ ସିନା ଯିବ ବୁଡ
ଠଉରଉନ୍ତୁ କି    କେତେବେଳେ ତୋର
ପ୍ରାଣ ପକ୍ଷୀ ଯିବ ଉଡ଼ ।

ଦୁଖ ବୋଲି ଯାହା    ମଣୁଅଛୁ ଆଜି
କାଲି ତା ଦୁଃଖ କେବଳ
ପାରିବୁ କି ରେକି    କେତେବେଳେ ତାକୁ
ଖଟାଇ ତୋ ବୁଦ୍ଧିବଳ ?

ସୁଖ ଦୁଃଖ ଭଳ,    ମାନସ ବିକାର
ଢାଳୁଛି ସିନା ହୃଦୟ
ସେ କଥା ବିଚାରି    ବିଚାରି ନିୟତ
ମଣିଷ ହୁଏ ଅଥୟ ।

ଟରୀବର ରଡ଼    ଶୁଣୁ ଘଡ଼ ଘଡ଼
ଚଉଦିଗେ ନିରନ୍ତର
ନ ଶୁଣିଲା ପରି    ରହୁଛୁ କିପରି
ପଥର କରି ଅନ୍ତର ।

ଧନ ଥାଉ ଅବା    ନଥାଉ ହାତରେ
ଜରକାଳୀନ ତାଡନା
ସତତ ଜୀବନେ    ମରଣୁ ଅଧିକ
କଲୁ କି କେବେ ଧ୍ୟାନ ?

ନ ମେଲିଲେ ଆଖି    ନ ପାରିବୁ ଦେଖି
ସବୁରି ଅଯୁ କିପରି
ଚାହୁଅଛି ବସି    କାଳ ଦିବା ନିଶି
କାହାକୁ ଟିକେ ନ ଡରି ।

ପେଟ ପେଟ ବୋଲି    ଛଟପଟ ହୋଇ
ହଲୁଛନ୍ତ ଏଣେ ଲୋକେ
ମୁହଁ ଦେଉ ମୋଡ଼    କାହା ବୋଲେ ପଡ଼
ନଦେଇ କାହାକୁ ଢୋକେ ।

ନଶ୍ୱରତା ବ୍ୟାପୀ    ରହିଛି ଜଗତ
ଦେଖୁଛୁ ତ ଅହରହ
ପଙ୍କେ ପଶି ମୀନ    ଧରିବା ନିମିତ୍ତ
ଦେଖାଉ କିପାଁ ଆଗ୍ରହ ?

ଭଣ୍ଡାର ପୂରଇ    ପରକୁ ଭଣ୍ଡାଇ
ଫୁଲଉ ଛାତି ଦୁଚ୍ଛାରେ
ନ ପାରିବୁ ଜଗି    ଯେବେ ତୋ ପରାଣ
ଯିବ ଉଡ ତା ଇଚ୍ଛାରେ ।

ଥୟ ହୋଇ ଥରେ    ବସି ଏକୁଟିଆ
ଭବିଲୁ କି ତୁ କିଏ ସେ ?
ଥିବୁ ଯେତେ ଦିନ    ଏ ଧରଣୀ ତଳେ
ଚଳିବୁ କା ଉପଦେଶେ ।

ଘଡ଼କ ଭିତରେ    ଘୂରି ଚଉଦିଗେ
ନହେଉ ହାଲିଆ ଟିକେ
ଭବର ଭଂଗୁର    ଲୀଳା ଦେଖି ଦେଖି
ପଶିଲୁ କଳ୍ପନା ବିଳେ ।

ଆଟୋପ ଦେଖାଇ    ନଦେଉ କୁହାଇ
ଛାଡ଼ିଲୁ ଧରମ ତରୀ
ଚିହ୍ନିଲୁ କି କେବେ    ଏ ଭବ ସାଗରୁ
ହେବୁ ପାରି କେଉଁପରି ?

ଅର୍ଥ ଲାଳସାରେ    ନୀଚ କାରବାରେ
ପଶି ଆପଣା ସମ୍ମାନ
ଦେଉଅଛୁ ବିକି    ଦେଖାଇ ଚତୁରୀ
ନ ବିଚାରି ଅପମାନ ।

ଯାହା ପାଇଁ ଏତେ    ହୋଇ ଛଟପଟ
ଦିନ ସାରୁ ଭଳି ଧଳି
ଛାତିକି ପଥର    କରି ସେହି ମୁଖେ
ଦେଉଅଛି ବିଷ ଢାଳି ।

ପାଠୁଆ ବୋଲି ତୁ    ମଣୁଛୁ ସିନାରେ
ନିଜକୁ ନ ଚିହ୍ନି ଲବେ
ଦେଖାଉ ବଡ଼ିମା    ଟିକକ କଥାରେ
ଜଡ଼ ସଦା ଅବାସ୍ତବେ ।

କାହିଁରେ ଆନନ୍ଦ    ନାହିଁରେ ଜଗତେ
ଅନୁଭବି ଅନୁକ୍ଷଣେ
ଆଶାରେ ଆଖିକି    ରଖୁଛୁ ପକାଇ
ପାଶୋରି ମନୁ ତକ୍ଷଣେ ।

ତେଜି ସବୁ ଆଶା    କାହାକୁ ଭରସା
କଲେ ତରିବୁଁ ସଂସାରୁ
ମୋହ ପଙ୍କେ ପଡ    ଦିନ ଗଲା ସରି
କେତେବେଳେ ନ ବିଚାରୁ ।

ଆସିବ ଯେବେବେଳେ    ଅନ୍ତିମ ଡାକରା
ରହି ନ ପାରିବୁ କ୍ଷଣେ
ମହାପଥ ମଧ୍ୟେ    ଚଲି ଚଲି ଯିବୁ
ନଥିବ ସାହା ବି ଜଣେ ।

ଆକାଶେ ବିଜୁଳି    ସାଗରେ ଲହରୀ
ପରାଏ ତୋର ଯୌବନ
ତେଜି ଅଭିମାନ    ଗାଇ ପ୍ରଭୁ ନାମ
ଯାଉ ଏ ତୋର ଜୀବନ ।

କିଏ କେତେ ଦିନ    ରହିବ ସଂସାରେ
ନ ପଡେ କାହାକୁ ଜଣା
ଆପଣା ଭିତରେ    କଳହ ଦ୍ବନ୍ଦ୍ବାରେ
ଭିଆଇ ହେଉଛ ବଣା ।

ବଇରି ବୋଲି ତୁ    ମଣୁଛୁ ଯାହାକୁ
ନୁହଇ ସେ ତ ବଇରି
ଦଳେ ରିପୁ ପଶି    ତୋ ଘରେ ନିରତ
ବୁଲୁଛନ୍ତି ଘିରି ଘିରି ।

ମିଶି ପରସ୍ପର    ଭିଆନ୍ତି କଳହ
ପଡେ କି ତୋ ନୟନରେ ?
ସେଗୁଡକୁ ଧରି    ରଖିଲେ ଆୟତ୍ତେ
ଯାପିବୁ କାଳ ସୁଖରେ ।

ଉତ୍ତାଳ ତରଙ୍ଗ    ପରାଏ ଚପଳ
ହେଲେହେଁ ଧନ ପରାଣ
ମୋହେ ହୋଇ ଅନ୍ଧ    ଛୁଡନ୍ତି ସନ୍ମାର୍ଗ
ଏ ଭବେ ମାନବ ଗଣ ।

କେତେ ଶକ୍ତିଶାଳୀ    ହେଲେହେଁ ମଣିଷ
ଅନ୍ୟାୟରେ ହେଲେ ରତ
ସମୟ ଚକରେ    ଘୋରି ହୋଇ ଏଣେ
ହୁଅଇ ଧ୍ବସ୍ତ ବିଧ୍ବସ୍ତ ।

ମହତ ଗୁଣରେ    ତୋଷି ଅପରକୁ
ମହାଜନେ ଏ ଦେଶର
କରିଗଲେ ଯାହା    ରଜେ ଯୁଗେ ଯୁଗେ
ଅଛି କି ତା ପଟାନ୍ତର ।

ତ୍ୟାଗ ଛାଡ଼ ଭୋଗ    ବିଳାସ ବ୍ୟସନେ
ଯାଉଛି ସମୟ ବିତି
ଚିନ୍ତିବାକୁ ଲବେ    ଅବସର କାହିଁ
ଏ ମର ସଂସାର ରୀତି ।

ଠକ ଠକ ବୋଲି    ପଡୁଅଛି ରଡ଼
ବାଜୁଛି କି ତୋର କାନେ ?
ପାରିବୁ କି ଏଡ଼    ରହିଲେ ରେ ବେଢ଼ି
ଅନ୍ତକ ତଗରମାନେ ।

ଫତୁରିଆ ବୋଲି    ନ କହିଲେ କେହି
ସାର୍ଥକ ହେବ ଜୀବନ
ନୋହି ବଶ ଲୋଭେ    ବିଚାରିବୁ ସଦା
ଲୋଷ୍ଟ୍ରବତ ପରଧନ ।

ଢାଙ୍କି ହେଉ ସିନା    ଘଡ଼କ ପାଇଁକି
ବୁଡ଼ିବେଣି ପାପ ପଙ୍କରେ
ଧୁଆଧୋଇ ହୋଇ    ସଦ୍‌ଗତି କାମନା
କରୁନାହୁଁ କିପାଁ ଥରେ ?

ଦ୍ୱାରପାଳ ହୋଇ    ବିବେକ ଅନାଇଁ
ରହିଅଛି ନିରନ୍ତର,
ମାନିଲେ ତା ବୋଲ    ପଶି ନ ପାରିବ
କେବେଁ ଅନୀତି ତସ୍କର ।

ସାତ୍ତ୍ୱିକ ବଳରେ    ବଳବାନ ହୋଇ
କରିବୁ ଯେତେ କରମ
ଇହଲୋକେ ସୁଖ    ପାଇବୁ ସତତ
ସାର୍ଥକ ହେବ ଜନମ ।

ଅର୍ଥଦାସ ହୋଇ    ଅନର୍ଥ ଭିଆଇ
ମାତିଛୁ ସିନା ଗରବେ
ପାଖେଇ ଆସୁଛି    ତୋ ଅନ୍ତିମ ବେଳ
ଜାଣିପାରୁ ନାହୁଁ ଲବେ ।

ଅର୍ଥ ଲାଳସାରେ ବଶବର୍ତ୍ତୀ ହୋଇ
କୁକର୍ମେ ରତ ସର୍ବେ
ଧର୍ମ ଉପାର୍ଜନ କରିବାକୁ କେବେ
ବଳାନ୍ତ ମନ କି ଲବେ ?

ଦୁର୍ଲଭ ଜୀବନ ବିଅର୍ଥ କରୁଛୁ
ପାପ ଆଚରଣେ ସିନା
ଲଭିବୁ କି ମୁକ୍ତି ଏ ଭବ ସାଗରୁଁ
ପରମେଶ ଧ୍ୟାନ ବିନା ?

ଏ ଜଗତେ କେହି ନୁହେ ଚିରସ୍ଥାୟୀ
ଦେଖୁଛ ତ ଅହରହ
ଆପଣା ଭିତରେ ପଦ ଲାଳସାରେ
ଲାଗିଛି ତୁଚ୍ଛା କଳହ ।

ଆତ୍ମକୃତ କର୍ମ ଫଳ ତ ଭୋଗିବୁ
ଇହ ବା ପର ଲୋକରେ
ସବୁ ଜାଣି ଜାଣି ତୁଚ୍ଛ ଲୋଭେ ପଡ଼ି
ପଶୁଛ ପାପ ପଙ୍କରେ ।

ଅର୍ଥ ସିନା ଭବେ ଭିଆଏ ଅନର୍ଥ
ଅର୍ଥରେ ବଶ ଜଗତ
ଅର୍ଥ ଲାଗି ପୁଣି କୁତ୍ସିତ କରମ
କରନ୍ତି ଜନେ ନିରତ ।

ଅର୍ଥର କାରଣ ନୁହଇ ଧୀଶକ୍ତି
ଅବା ସୁଖ ହେତୁ ଧନ
ମୂଢ଼େ ତା' ନବୁଝି ଆଶାରେ ପ୍ରବେଶି
କରନ୍ତି କାଳଯାପନ ।

ଅତିକ୍ରମ କରି ପାରେ କି କିଏ ସେ
ମୃତ୍ୟୁକୁ ଏ ଭୂମଣ୍ଡଳେ
କିଏ ଆଜି ପୁଣି କାଲି ବା କିଏ ସେ
ପଡୁଛି ତା'ର କବଳେ ।

ବ୍ୟସନରେ ମାତି ଧର୍ମଗଜ ପୂର୍ବେ
ଭୋଗିଲେ ଯାହା କଷଣ
ହେଜିଲ କି ବାରେ ଘଟିଥିଲା ଯାହା
ଗଢ଼ିବାକୁ ଆଚରଣ ।

କାମ କ୍ରୋଧ ମୋହ ଦ୍ୱେଷାଦିକୁ ଜିଣି
ଲଭିବ ସନ୍ତୋଷ ମର୍ମେ
କାଳର ଗତିକି ଲକ୍ଷ୍ୟ କରି ସଦା
ଲାଗିବ କର୍ତ୍ତବ୍ୟ କର୍ମେ ।

ବିଷୟ ମୋହରେ ବ୍ୟସ୍ତ ରହି ନିତି
ପାଉଛ ଜୀବନେ ଦୁଃଖ
ତହିଁରୁ ଅନ୍ତର ହେଲେ ସିନା ଭବେ
ଲଭିବ ପରମ ସୁଖ ।

ଆସକ୍ତିରୁ ଦୁଃଖ ଜନମି ନିରତ
ଦହୁଅଛି ଏ ଶରୀର
ଅନିତ୍ୟ ବସ୍ତୁକୁ ନିତ୍ୟ ବୋଲି ମଣି
ହେଉଛ ସିନା ଅସ୍ଥିର ।

ବୀଜ ବିନା ବସ୍ତୁ ନୁହଇ ଉତ୍ପତ୍ତି
ହେତୁ ରଖିଥିବୁ ସଦା
କର୍ମ ଅନୁଯାୟୀ ଭୋଗିବୁ ତା ଫଳ
ନୋହିବ ଅନ୍ୟଥା କଦା ।

ଜନ ଦ୍ୱାର ଜନ ଦାସତ୍ୱ ଶୃଙ୍ଖଳେ
ଆବଦ୍ଧ ହୋଇ ଏ ଭବେ
ଭୋଗୁଛନ୍ତି କ୍ଲେଶ ସଂସାର ଭିତରେ
ନ ବିଚାରେ କିଏ ଲବେ ।

ଆପଣାର ଦୋଷ ଆଲୋଚନା କରି
ସଂଶୋଧିବ ଯେବେ ନିତି
ହୃଦୟ ନିର୍ମଳ ହୋଇ କ୍ରମେ କ୍ରମେ
ଉପୁଜଇ ଅତି ପ୍ରୀତି ।

ଧରମ ବିଚାର ନକରେ ତ କେହି
ବଢୁଛି ସ୍ୱାର୍ଥେ ଅନ୍ତର
ଭାଇ ଠାରୁ ଭାଇ ଠକି ନେବା ପାଇଁ
ହେଉଛନ୍ତି କେତେ ତତ୍ପର ।

ପଉରୁଷ ଅବା ପ୍ରଭୁତ୍ୱ କାହାରି
ରହେ ନାହିଁ ଚିର ଦିନ
ଆସିଲେ ତା ବେଳ ଛପି ଛପି କାଳ
କରେ ତାକୁ ଦୀନ ହୀନ ।

କାଳର ତତ୍ତ୍ୱକୁ ନବୁଝି ମଣିଷ
ହେଉଅଛି ଛଟପଟ
କଳଂକିତ କରେ ଜୀବନକୁ ନିତି
ଶତ୍ରୁତା ଅବା କପଟ ।

ସଂସାର ପାଶଟି ଅତିଶୟ ଟାଣ
ଛିଣ୍ଡାଇବା କଷ୍ଟକର
ସତ୍ୟକାମୀ ହୋଇ କର୍ତ୍ତବ୍ୟ ପଥରେ
ଚାଲିଥିବ ନିରନ୍ତର ।

ଅଜ୍ଞାନ ଜନିତ ମୋହେ ବଶ ହୋଇ
ସୃଷ୍ଟି ଚକ୍ରେ ଏ ଜଗତେ
ହେଉଅଛି ମଣିଷ ସଂସାରେ
ସହି ଦୁଃଖ ନାନା ମତେ ।

ମରଣ କାହାକୁ ନ କରେ ଅପେକ୍ଷା
କେତେବେଳେ ଏ ସଂସାରେ
**କେଉଁ ବାଟେ ଆସି କେଉଁ ବାଟେ ଯାଏ**
**କେ ତାକୁ ଦେଖି ନପାରେ ।**

ଅସତ୍ୟକୁ ତେଜି ସତ୍ୟକୁ ଆଶ୍ରୟ
କରିଥାଏ ଯେଉଁ ଜନ
ପରମ ଆନନ୍ଦ ଉଠୁଜଇ ହୃଦେ
ସାର୍ଥକ ତା'ର ଜୀବନ ।

ନୈଧସକ୍ତ ହୋଇ ଏ ଭବେ ମଣିଷ
ହୁଅଇ ଉଦ୍‌ବିଗ୍ନ ସିନା
ନ ଲଭଇ କେହି ଧନ ଅବା ମାନ
ଦୈବ ଅନୁକୂଳ ବିନା ।

ଆତ୍ମସୁଖ ଲଗି ସତ୍‌ପନ୍ଥାକୁ ଛାଡ଼
ମଣିଷ ଅର୍ଥ ପଛରେ
ଧାଇଁ ଧାଇଁ ଶେଷେ ପାଗଳ ପରାଏ
ପଶଇ ଅଣ ବାଟରେ ।

ହୃଦ ସରୋବରେ ଫୁଟି ତାମରସ
ହେଉ ଶିବ ଉପହାର
ପଦେ ଦଳି ହିଂସା ଦୀନ ସେବା ହେଉ
ଜୀବନର ଗଳାହାର ।

## ସଂସାର ଚଳଣି

ଯାହା ତାହା କରି ଦେଉଛି ଲେଖି
ଲାଜ ଉପେକ୍ଷି, ସଂସାର ଚଳଣି ପ୍ରତ୍ୟହ ଦେଖି ।

ଦେଖି ହସ କାନ୍ଦ ଲାଗିଛି ନିତି
ପ୍ରକୃତି ନୀତି, ଡରିବୁ ବିଚାର ଦେଖି ଏ ରୀତି ।

ମଦିରା ପାନରେ ବଳାଇ ମନ
ସରିଲା ଧନ, ପେଟକୁ ମୁଠାଏ ନ ମିଳେ ଅନ୍ନ ।

ସାଙ୍ଗସାଥି ହୋଇଥିଲେ ଯେତେକ
ଗଲେ କେତେକ, ରହିଲୁ କି ମନେ ଗଲେ ଏତେକ ।

ଆଚାର ଭେଦରେ ଘୃଣା ଅଘୃଣା
ତୁଚ୍ଛା ଆତୁର, ନାହିଁ କେଉଁଠାରେ ସରଗ ପୁର ।

ପର ଉପକାରେ ମହତ ଜନ
ସ୍ୱାର୍ଥରେ ମନ, ନରଖି ଖଟଇ ସାରା ଜୀବନ ।

ଦୁର୍ବଳକୁ ମାରି ନିତି ରାକ୍ଷସେ
ମାତି ବିଧ୍ୱଂସେ,
ରକ୍ତ ମାଂସ ମେଦ ଖାଇ ରହସେ (ହର୍ଷେ) ।

ପର ମିଥ୍ୟାସ୍ତବ ସନ୍ତତ କରି
ପାପ ଆଚରି, ବୋଲାଉଛୁ ସାଧୁ ଭବେ କିପରି ?

ଅସଲଟେ ପଶିଗଲା ଜୀବନ
ଅର୍ଜିଲ ଧନ, ନକରି ଖାତର ନିନ୍ଦା ବଚନ ।

ପାତର ଅନ୍ତର କରି ବେଭାରେ
ମନ ଇଚ୍ଛାରେ, ଭୋଗିବୁ ତା ଫଳ ଦିନେ ସଂସାରେ ।

ହେଲୁ ହଟହଟା ପଶି ଅକର୍ମେ
ବାଧିଲା ମର୍ମେ, କିଏ ସୁଖୀ ଭବେ ଯାଇ ଅଧର୍ମେ ।

କରିବୁ ବିଚାର ପାପ ପୁଣ୍ୟକୁ
ଛାଡ଼ ଲୋଭକୁ, ବାର ବାର ପଚାରିବୁ ମନକୁ ।

କିଏ ଦିଏ କାନ କହିଲେ ଭ୍ରମ
ତୁଚ୍ଛାକୁ ତମ (ଗର୍ବ),
ଶିଖ ପାଞ୍ଚକଥା ପଢ଼ ଆଗମ (ବେଦାଦି ଶାସ୍ତ୍ର) ।

ଦଦରା ନାବରେ ବୁଢ଼ା ନାଉରି
ପଡ଼ୁଛି ବୁଡ଼ି, ଗୁରୁଙ୍କୁ ଅଧୀତୀ ଭୁଲିଲା ଚୁରି ।

ଝୁଣ୍ଟିଛୁ ଜୀବନେ ଅନେକ ଥର
କି ହରବର, ତଥାପି ନ ଶିଖେ ପଦେ ଅନ୍ତର ।

ଝକମକ ଦେଖି ହୋଇଲୁ ଛନ୍ନ
ଲାଖିଲା ମନ, ଉହୁଁ ଉହୁଁ ଦେଖ ଯାଏ ଜୀବନ ।

ଲାଗିଛି ଝଗଡା ଘର ଘରରେ
ପେଟ ପାଇଁରେ, ରାତି ପାହିଯାଏ ତୁଚ୍ଛା କଳିରେ ।

ନାନାରଙ୍ଗେ କେତେ ଚାଲିଛି ଖେଳ
ନାହିଁଟି ବେଳ, କାହାମନେ କା'ର ନଥାଏ ମେଳ ।

କଲମ ଘଷକୁ ଗଲିଣି ଡରି
ଚିନ୍ତା ନ କରି, ବାହାନ୍ତୁ ବୋଇତ ମନକୁ ଧରି ।

ନୂଆ ସମାଜର ନୂଆ ଫେସନ
କରି ଦର୍ଶନ, ପଳାଉଛନ୍ତି ବୁଢା ବୁଢ଼ି ନୟନ ।

ଦାନ୍ତକୁ ସୁନ୍ଦର ନ ଦିଶେ ଯାହା
ଫୁଲାଇ ବାହା, ହୋଇ ଅମାନିଆ କରୁଛୁ ତାହା ।

ଦେଖିଲୁ ଜୀବନେ ସଂସାର ହାଟ
ଲାଗିଛି ନାଟ, ଜାଳିଲେ ଆଲୁଅ ଚାଲିବୁ ବାଟ ।

ନପଶେ ଛାନିଆଁ ଜାହା ଛାତିରେ
ମୃତ୍ୟୁ ଭୀତିରେ, ଚୋର ଅସମୟେ କିଏ ସାଥିରେ ।

ଅଡୁଆ ଭିତରେ କେବେ ନ ପଶି
କରିବୁ ହସି, କର୍ତ୍ତବ୍ୟରେ ଅନବରତ ରସି ।

ଧନୀ ବୋଲି ସିନା ଆଖି ଉପରେ
କାହା ପତରେ, ନଦେଇ ମୁଠାଏ କହୁ ଉତରେ ।

ବେଳ ଥାଉ ଥାଉ ଖୋଜିବୁ ସାହା
ଦେଖାଇ ବାହା, ନଥାଇ କାତ କି ଚାଲିବୁ ନାହା ।

ଜୀବିକାରେ ସଦା ଶୁଦ୍ଧ ଆଚରି
ତାପସ ପରି, ଯାପିବୁ ଜୀବନ ଲୋଭ ସମ୍ବରି ।

ଗୁଣୀ ଗୁଣ କିଏ ଚିହ୍ନୁଛି ଏବେ
ପାରିବ ଯେବେ, ଧରାଧରି କଲେ ମିଳିବ ତେବେ ।

କରୁନି ବିଶ୍ୱାସ କିଏ କାହାକୁ
ପାଟି ତୁଚ୍ଛାକୁ, ସର୍ବେ ହୁସିଆର ନିଜ ଧନ୍ଦାକୁ ।

କେବା ଝାଡୁଛୁ ଏ ଖାଲି କଥାରେ
ଫୁଲାଣିଆରେ, ବାହାଦୁରି ନେବା ପାଇଁ ବାହାରେ ।

ହସ ଗମାତରେ ଯାଉଛି ଦିନ
ଜ୍ଞାନରେ ଦୀନ, ପ୍ରଭୁଙ୍କ ରୀତିକି ନ ମଣ ହୀନ ।

ପହିଲି ଆଷାଢେ ଆସେ ବରଷା
ଆନନ୍ଦ ଚଷା, କୃଷିକର୍ମେ ହେଉଛ ଉଗାରି ହସା ।

ବାଟରେ ଘାଟରେ ସଭା ସମିତି
ଲାଗିଛି ନିତି, କିଏ କାହୁଁ ଆସି ବୁଝାଏ ନୀତି ।

ଦୁନିଆଁ ବେଭାର ହଟଚମଟ
ଖେଳ କପଟ, କିଏ କେତେଦିନ ରହି ଚମଟ ।

ମିଛ ଟାଇ ଟାଇ ପାଅ କି ଲାଭ ?
ଛାଡ ସ୍ୱଭାବ, ସନ୍ତୋଷରେ ସିନା ତୁଟେ ଅଭାବ ।

ତତ୍ତ୍ୱଜ୍ଞାନ ଲଭି ହୁଅ ଆନନ୍ଦ
ନରଖି ଛନ୍ଦ, ନିଜ ନିଜ ମଧ୍ୟେ ତୁଟାଇ ଦ୍ୱନ୍ଦ୍ୱ ।

ସୁଖୀ ନୁହେ କିଏ ସଦା ଏ ଭବେ,
ମାଟି ଗରବେ, କର ନାହିଁ ହାନି କାହାର ଲବେ ।

ସଜ୍ଜନର ସିନା ସଳଖ ମୁଣ୍ଡ
ଫିଟାଏ ତୁଣ୍ଡ, ଯେତେ ଲୋକ ଆସି ହୁଅନ୍ତୁ ରୁଣ୍ଡ ।

ବାହାଦୁରି ଲାଗି ସକଳେ ବାଇ
କେତେ ଝାଉ, ଖାଲ ବା ଉପରେ ପାଦ ପକାଇ ।

ଏ ଦେଶର କଥା ଯାଉଛ ଭୁଲି
ବିଦେଶ ବୁଲି, ହେତୁ କଲେ ଛାତି ଯାଉଛି ଫୁଲି ।

ସିଆଁଣିଆ ଲୋକ ଥିଲେ ନ ଡରି
ମିଥ୍ୟାକୁ ବରି, କରୁଛନ୍ତି ଦେଖ ଖମାର ଭରି ।

ନ ବୁଝି ଆଗରୁ ଆପଣା ଫାଟ
ତୁଚ୍ଛାକୁ ହାଟ, ଶୁଣିବ କିଏ ବା ଧରମ ବାଟ ।

ମୃତ୍ୟୁଚିନ୍ତା କିଏ କରେ କି ଲବେ ?
କେବେ ଏ ଭବେ, ଦିନ ସରେ ସିନା ମାଟି ଉଠିବେ ।

'ମୋର' 'ମୋର' ବୋଲି ବୋଲୁଛୁ କିଆଁ
ଦେଖି ଦୁନିଆଁ, ଟିକିକ କଥାରେ ହୋଇ ଛାନିଆଁ ।

ପର ଉପକାରେ ନ ଯା ଓହରି
ସର୍ବସ୍ୱ ହରି, ଯାଉ ପଛେ ଟିକେ ଚିନ୍ତା ନ କରି ।

ଶୁଖିଲ ପତର ପଡୁଛି ଝଡ଼ି
ଘଡ଼କି ଘଡ଼, ତଥା କାଳମୁଖେ ଯିବୁରେ ପଡ଼ି ।

ନ ପଡ଼ କଥାରେ ବାହାପିଆର
ସାର ଅସାର, ବାଛିବୁ ଜୀବନେ କରି ବିଚାର ।

ଜପାମାଳ ଧର ମୋହ ତୁଟାଇ
ଦେଉଳେ ଯାଇ, କିଫଳ ପାଇବୁ ପର କନ୍ଦାଇ ।

କାହା ବଳ କେତେ ଅଛୁଁ ନଜାଣି
ଅବଶ୍ୟ ପାଣି, ପିଇବୁ କଳହ ଆଣିଲେ ଟାଣି ।

କରିଯାଅ କର୍ମ କରି ବିଚାର
ମନୁଁ ବିକାର, ଛାଡ଼ିଲେ ମିଳିବ ସୁଖ ଅପାର ।

କାହା ପାଇଁ ଲୋଭ କରୁଛୁ ଏତେ
ବଢ଼ିବ ସେତେ,
ତା ପଛେ ଆଶାରେ ଧାଇଁବୁ ଯେତେ ।

ତୋର ବୋଲି କିଛି ନାହିଁ ଏ ଭବେ
ଚିନ୍ତିଲେ ଲଭେ, ଜାଣିବୁ ସମ୍ପଦେ ସଖା ସରବେ ।

କେତେଦିନ ପାଇଁ କିଏ କାହାର
ମାୟା ସଂସାର, କରୁଥିବୁ ସଦା ନ୍ୟାୟ ବିଚାର ।

ମୁକୁଳି ଯିବୁକି ଅନ୍ୟାୟ କରି ?
ଟିକେ ନ ଡରି, ଟିପୁଛି ତା ଜଣେ ବରୁ ଯେପରି ।

ପତରର ମଥା ସଦା ଆନତ
ଦେଖୁ ନିରତ, କି ଫଳ ପାଇବୁ ହୋଇ ଉଦ୍ଧତ ?

ଅଳଘୁଆ ହେଲେ ସରିବ ବାଲି
ନ ବସ ଖାଲି, ମଧୁର ସମୟ ଯାଉଛି ଚାଲି ।

ସକାଳ ସଞ୍ଜକୁ କରି ତୁଳନା
ପଛକୁ ଅନା, ନହିଏ ଆନନ୍ଦ ବୃଥା ଭାବନା ।

ତରିବୁ ଜୀବନେ ନ କୁଦି କଣ୍ଟା
ବାଜିଲେ ଘଣ୍ଟା,
ରଖିବ କେ ଦଣ୍ଡେ ଭିଡ଼ିଲେ ଅଣ୍ଟା ।

( ରାଗ-ରସକୁଲ୍ୟା )

ସୁଖ ଦୁଃଖ ଭାଇ, ମନ ବିକାର
ନୁହଇ ଏ ଭବେ କିଏ କାହାର
ଆସିଅଛୁ ଏକା ଯିବୁ ତୁ ଏକା
ତୁଚ୍ଛାକୁ ଭିଡୁଛୁ ମୁଣ୍ଡରେ ଠେକା ଯେ
ଶୂନ୍ୟହାତେ ଆସି ଭବେ,
ଅରଜିଲୁ ଯାହା ରଖିଲୁ ସାଇତି
ନେବୁ କି ତହିଁରୁ ଲବେ ?

ପଡ଼ିଗଲେ ଥରେ ରୋଗ ଶଯ୍ୟାରେ
ତୋ କ୍ଳେଶ ବୁଝୁଛି କିଏ ସଂସାରେ ?
ମାଡୁଛି କି ପାଖ ପଡ଼ଶା ଘର ?
ଯାହାକୁ କରୁଛୁ ବଡ଼ ଆଦର
ଦୁନିଆଁ ରୀତି ଏପରି,
ଅସମୟ ବେଳେ କିଏ ତୋ ପାଖରେ
ଡାକିଲୁ କି ଚିନ୍ତା କରି ?

ତୁଚ୍ଛା ଟାଣ କରି ବିଷମ ଫଳ
ପାଇ ଝରୁଅଛି ଲୋତକ ଜଳ
ଆଗରେ ପଛରେ ନଥାଇ କିଏ
ନପାଇ କାହାର ସାହା ଟିକିଏ
ହେଉଅଛୁ ହଟହଟା,
ପଡୁଛି କି କାନେ କେବେହେଲେ ଦିନେ
କରନ୍ତ ଲୋକେ ଯା ଥଟ୍ଟା ।

ଯାଉ ନାହିଁ ଦିନ ସମାନ କାର
କର ନାହିଁ କେବେ ତୁଚ୍ଛା ବିଚାର
ଯେତେବେଳେ ପଡୁଅଛ ଝାଲରେ
ବହୁଛି ଚପଡ଼ା ନିଜ ଗାଲରେ
ଦୁନିଆଁ ରୀତିକି ଦେଖି,
କେବେହେଲେ କିଏ ଅସତ କରମ
ନ କରୁ ଲାଜ ଉପେକ୍ଷି !

ସମ୍ପଦେ ବିପଦେ ଯାହା ଶ୍ରୀପତି
ତାଙ୍କ ପଦ ତଳେ ରହୁ ଧ୍ରୁମତି
ଜୀବନର ସଖା ସେହି କେବଳ
ନାହିଁ ମଣିଷର ଅନ୍ୟ ସମ୍ବଳ
ତେଜି ମନୁଁ ଅହଂକାର,
ମଧୁର ବଚନେ ତୋଷି ପର ଚିତ୍ତ
କରିନେବୁ ଆପଣାର ।

ଶୁଦ୍ଧ ଚିତ୍ତେ କରୁଥିବୁ ବିଚାର
ସ୍ୱାର୍ଥକୁ କରିବୁ ସଦା ଧିକ୍କାର
ତେବେ ଦୁନିଆଁରେ ଗୌରବ ପାଇ
ଗଲାବେଳେ ଯିବୁ ମନ ଫୁଲାଇ
ନଥିବ ଯୋରିଷେ କ୍ଷୋଭ,
ଆଖି ଆଗେ ଦେଖି ମରଣ କ୍ଷଣ
କାହାପାଇଁ ଏତେ ଲୋଭ ।

ବଳ ବପୁ ଗଲେ ମଣିଷ ହୀନ
ଝଳି ଝଳି ଏବେ ନଅରେ ଦିନ
ଗଡେ ଲୁହଧାର ଆପେ ନେତ୍ରରୁ
ଆପଣା କୁଟୁମ୍ବ ହତାଦରରୁ
ରଖିଥିବୁ ଯାହା ସଂଚି,
ପାଇବା ଆଶାରେ ପରିବାର ବର୍ଗ
ନିଅନ୍ତି ଛଡାଇ କଂଚି ।

ଜୀବନ ତୋହର ସଦା ଅସ୍ଥିର
ଜାଣି ଜାଣି କିଆଁ 'ମୁଢ଼ାର' ଗିର ?
ଉତ୍ଥାନ ପତନ ଭଗ୍ୟ ଚକ୍ରରେ
ଘୂରୁଛି ସତତ ଭବ ଭିତରେ
ରୀତି ଗତି ସଂସାରର
ନ ବିଚାରି ହୃଦେ ଆପଣା ଲାଭରେ
ବ୍ୟସ୍ତ ହେଉ ନିରନ୍ତର ।

ଛାଡ଼ଲୁ ମନରୁ ନ୍ୟାୟ ବିଚାର
ବଶବର୍ତ୍ତୀ ହୋଇ ସଦା ଆଶାର
ହେତୁ କରୁଥିଲେ ଇଛା ପରକୁ
ଧରିବୁ ପଥ ବା ନ୍ୟାୟ ବାଟକୁ
ଆଜି ଯେ ପଡ଼ିଚି ତଳେ,
କାଲି ଉଠିଲଣି ଉପରକୁ ସେହି
ବିଧି ଅନୁଗ୍ରହ ବଳେ ।

ନିଜ ଜୀବନରୁ ଶିକ୍ଷା ନପାଇ
ଅସାର କଥାରେ ମଣିଷ ବାଇ
ନିୟତି ବିଧାନ କେ ପାରେ ଖଣ୍ଡି
କି ସୁଖ ମିଳୁଛି ପରକୁ ଦଣ୍ଡି ?
ବିଚିତ୍ର ଦୁନିଆଁ ରୀତି,
କିଏ ଭବିଲା କି କେତେ ଯେ ଅକାଳେ
ଲଭନ୍ତି ମରଣ ନିତି ?

ନିନ୍ଦା ପ୍ରଶଂସାକୁ ଦେଇ ନଜର
ପୋଛିଦେବୁ ହୃଦୁଁ ସ୍ୱାର୍ଥ ଅନ୍ତର (ସ୍ୱାର୍ଥଛିଦ୍ର)
ଅଭିନୟ ସାରି ଭବ ମଞ୍ଚରେ
ପହଂଚିବୁ ଯେବେ ଅଜଣା ଘରେ
ଘଟିବ ତହିଁ କି ଦଶା,
ଦିନେହେଲେ କେବେ ନଭବି ମନରେ
ହେଉ ସିନା ଲୋକହସା ।

ଅଧା ବୟସରୁ ଘର ପଠାଇ
ସତର୍କ ଘଣ୍ଟି କେ ଦିଏ ବଜାଇ
ମୂଢ଼ ମଣିଷ ତା ଜାଣି ନପାରି
ବିଷୟ ଜଞ୍ଜାଳେ ହେଉଛି ଘାରି
ବିଭୁ, ତବ କାରବାର,
ବୁଝିବାକୁ ଲବେ ଏ ମର ସଂସାରେ
କରେ କି କିଏ ବିଚାର ।

ବଳ ସିନା ନାହିଁ ହାତ ଗୋଡରେ
କଥା ବାହାରୁଛି ବଜ୍ର ସ୍ୱନରେ
ଲଉଁଲଣି ଅଣ୍ଟା ହାତରେ ବାଡ
ସାମାନ୍ୟ କଥାରେ ହେଉଛୁ ଝାଡ,
ନ ବିଚାରି ଭଲ ମନ୍ଦ,
ପାଚିଲଣି ବାଳ ପଡ଼ିଲଣି ଦାନ୍ତ
ତଥାପି ହୃଦୟେ ଛନ୍ଦ ।

ଆଖିରେ ପରଳ ଗଲଣି ମାଡ଼ି
ଜୀବନ ମରଣ ଲଗିଛି ଧାଡ଼ି
ଆଗ କା'ର ପାଳି, ପଛରେ କା'ର
କେବେ ନ ଜାଣେ କେ କଲେ ବିଚାର
ମଣିଷ ଜୀବନ ଦଣ୍ଡେ,
ନିତି ଦେଖି ଦେଖି ନ କର ଉପେକ୍ଷା
ପଶି ନାନା ଲଣ୍ଡଭଣ୍ଡେ ।

କରିଥିଲେ ସିନା ସେବା କାହାର
ତୋ ସେବା ନିମିତ୍ତ ହେବେ ବାହାର
ଦୁନିଆଁର ରୀତି ନ ଚିନ୍ତ ମନେ
ବଳାଇଛୁ ପ୍ରୀତି କେବଳ ଧନେ
ସେ କି ହେବ ତୋର ସାହା ?
ବେଳ ଥାଉଁ ଥାଉଁ ତୁଟାଇଲେ ମୋହ
ଉଦ୍ଧାରିବେ ଚଉବାହା ।

ପିଟାଇ ଆଖିକି ଦିବ୍ୟ ଚିତ୍ତରେ
ଚାହିଁଲେ ଜାଣିବୁ ସର୍ବେ ମୋହରେ
ଘାଣ୍ଟି ହେଉଛନ୍ତି ସାରା ଜୀବନ
ବଳିଦେଇ ନିଜ ମାନ ସମ୍ମାନ
ଅଢ଼େଇ ଦିନକୁ ଭବେ,
କୁକ୍ରିୟାରେ ସଦା ହେଉଅଛୁ ରତ
ନ ଭାବି ମାନସେ କେବେ ।

ଠିକ, ଠିକ ମନ ଭଞ୍ଜାଳେ ପଡ଼ି
କେତେ ଦୁଃଖ ସହି ଗଲୁଣି ସଢ଼ି
ନୟନ ଫେରାଇ ଦେଖିବୁ ଥରେ
କିଏ ଅଛି ତୋର ଅସମୟରେ
ସକଳ ସାଥି ସୁଖରେ,
ଧାଇଁଲେ ସ୍ୱାର୍ଥରେ ପାଏ ଚାହିଁ କିଏ
ନ ବସି ମୁଥ ଟାଳରେ ?

ଅସମ୍ଭାଳ ଆଜି କୁଟୁମ୍ବ ଦାଉ
ଘଖଣ୍ଡେ ପେଟକୁ ନ ମିଳେ ଜାଉ
ଗନ୍ତାଘର ପୂରି ରହିଛି ଯା'ର
ଦେବାକୁ ମୁଠାଏ କେତେ ବିଚାର
ହେଲେହେଁ ଜ୍ଞାନ ହୀନ,
ଭାବୁଛୁକି କିଏ ଯିବ ତୋ ସାଥିରେ
ଭବୁଁ ହେବୁ ଯେବେ ଲୀନ ।

ଭବ ରଙ୍ଗମଞ୍ଚ ବଡ ବିଚିତ୍ର
ଦେଖିବାକୁ ମିଳେ ବିଭିନ୍ନ ଚିତ୍ର
ବିବେକୀ ସିନା ତା କରି ଚିନ୍ତନ
ଛିଣ୍ଡାଇ ପାରୁଛି ଯେତେ ବନ୍ଧନ
ଯିବାକୁ ସହଜ ବାଟେ
ଅପନ୍ତରା ପଥ ଦେଉଛି ଓଳାଇ
ଦେଖୁଛି ଯା ଭବ ହାଟେ ।

ଆଗକୁ ପଛକୁ ଠିଆ ସକଳ
ଥିବାଯାଏ ନିଜ ବାହୁରେ ବଳ
ପଡଗଲେ ବାହା ସବୁ ଅନ୍ଧାର
ଦୃଷ୍ଟି ପଡୁନାହିଁ ସୃଷ୍ଟି କି କା'ର
ସ୍ୱାର୍ଥ ନିଶା ଦିଏ ଘାରି,
ଭାବୁ ନାହିଁ କିଏ କେଉଁ ତରୀ ଧରି
ଭବସିନ୍ଧୁ ହେବ ପାରି ।

ଜୀବ ଜଗତର ପ୍ରାଣ ଧାରଣେ
ବିବିଧ ପଦାର୍ଥ ସୃଜି ତତକ୍ଷଣେ
ଯୋଗାଉଛି ଯିଏ ଖଟି ସତତ
ଅଖିଳ ବ୍ରହ୍ମାଣ୍ଡ ଯା ଅନୁଗତ
ତା ନାମ କେବେ ନ ସ୍ମରି,
ଭବ ଜାଲେ ପଡ ଛଟପଟ ହେଉ
ଅସଳଟ ବାଟ ଧରି ।

ଭଲ ମନ୍ଦ ଯାହା ନିତି ତଉଲି
କରିଯିବୁ କର୍ମ ସ୍ୱାର୍ଥକୁ ଭୁଲି
ତୋଡାଣିଆ କେବେ ନ ହେବୁ ତୋ'ର
ମଣିବୁ ସଂସାର ସଦା ଅସାର
ମିଛକୁ ତଡ଼ ଅନ୍ତରୁ,
ଅବିନାଶୀ ବ୍ରହ୍ମ- ପଦେ ରଖି ଲୟ
ଫିଟିବୁ ମାୟା ଜାଲରୁ ।

ନକର ବିଶ୍ୱାସ ତାହାକୁ ଭବେ
କୃତଜ୍ଞତା ଯାର ନଥାଏ ଲବେ
ଘଟୁ କଥାରେ ସେ ଦିଏ ଭୁଲାଇ
ମାନ ମହତ୍ତ୍ୱକୁ ସଦା ହରାଇ
. ପାଉ ସେ ଯେତେ ସୁବିଧା,
ଉଣ୍ଡି ବେଳକାଳ ନିର୍ଲଜ୍ଜ ଧବରେ
ଚଛରୁ ମାଗୁଛି ବିଧା ।

ଜୀବନର ବନ୍ଧୁ ପରମେଶ୍ୱର
ଜାଣୁଛନ୍ତି ତୋର ଯେତେ ହୁଦର
ତାଙ୍କୁ ଭୁଲାଇ କେ ପାରିବ ଭବେ
ବେଦ ବେଦାନ୍ତକୁ ନ ମାନି ଲବେ
ସଂସାର ଜାଲରେ ପଡ଼ି,
ପରମାତ୍ମା ଚିନ୍ତା ନ କରି ଜୀବନେ
କି ହେବ ଛାଡ଼ିଲେ ରଡ଼ି ।

ନିବୃତ୍ତି ମାର୍ଗର ପଥିକ ହୋଇ
ହୃଦୟରୁ ଦିଅ କପଟ ଧୋଇ
ମନୁଷ୍ୟ ଜୀବନ ହେବ ସାର୍ଥକ
ବୋଇଲେ ଜନତା ଦେଶ ସେବକ
ଉପେକ୍ଷି ନିତି ଆସକ୍ତି
ବାଛି ଗୁଣ ଦୋଷ କରିଗଲେ କର୍ମ
ବଢ଼ିବ ଆପଣା ଶକ୍ତି ।

ସର୍ବ ଶକ୍ତିମାନ ପରମେଶ୍ୱର
ଭଜନୀୟ ଅବିରମ ମରର
ଆଜି ଯା ଦେଖୁଛୁ ନଥିବ କାଲି
ଭବିତ ଭଣ୍ଡାର ହେଉଛି ଖାଲି
ଜନ୍ମ ଜରା ମୃତ୍ୟୁ ବରି,
କି ସୁଖ ପାଉଛ ଚିନ୍ତିଲ କି ଦିନେ
ନିତ୍ୟ ଅନିତ୍ୟ ଆଦରି ।

ଯେ ସଂସାରେ ସଦା ସର୍ବ ବ୍ୟାପକ
ଦେଖୁଛି ସେ ତୋର କରମତକ
ତାକୁ ଭଣ୍ଡାଇ କେ ପାରିବ ଭବେ
ତା ନାମ ତୁଣ୍ଡେ କି ଧରିଲୁ ଲବେ ?
ହେଉ ସିନା ଉଚ୍ଛୃଙ୍ଖଳ,
ଆସିବ ତା ବେଳ ବେନି ନୟନରୁ
ବୋହିବ ଲୋତକ ଜଳ ।

କା ଘରେ ଶୁଭୁଛି କ୍ରନ୍ଦନ ରୋଳ
ଆମୋଦ ପ୍ରମୋଦେ କିଏ ବା ଭୋଳ
ଭାବିବାକୁ ତର ଅଛି କି କା'ର
ଭଂଗିଗଲା ସିନା ବଳ ଅଣ୍ଡାର
ଯେ ଯାହା ଧନ୍ଦାରେ ବ୍ୟସ୍ତ,
ପରମେଶ ପଦେ ନ ରଖି ମାନସ
ହେଉଛି ଜୀବନ ଅସ୍ତ ।

ନିଶକୁ ଫୁଲାଇ ଚାଲୁଛୁ କିଆଁ
ତୋ ଚଳଣି ଦେଖି ହସେ ଦୁନିଆଁ
ଦେଖିଛୁ କି କେବେ କା'ର ଗରବ
ରହିଅଛି ଲବେ ସାରି ସରବ
ଖସିଗଲେ ସ୍ୱାର୍ଥ ଜଳେ,
ନ ଥିବ ନାଉରି    ଉଦ୍ଧାରିବା ଲାଗି
ଜୀବନ ଯିବ ବିକଳେ ।

ହାନି ହେଉ ପଛେ କହିବୁ ସତ
ଆଚରିବୁ ସଦା ଅହିଂସା ବ୍ରତ
ମନକୁ ସନ୍ତୋଷ କିଏ ସଂସାରେ
କରି ପାରୁଛି କି ବହୁ ଧନରେ
ଅଯଥା କରି କାମନା,
ଧନ ଲାଗି ନାନା    ଅନୀତିରେ ପଶି
ନ ଭୋଗେ କିଏ ଯାତନା ?

ଆଗକୁ ପଛକୁ ବିଚାର କରି
କରିଯିବୁ କର୍ମ ତିଳେ ନ ଡରି
କେତେବେଳେ କା'ର ଛାଡ଼ିବ ପ୍ରାଣ
ନ ଦେଖାଇ କେବେ ଜୀବନେ ଟାଣ
ପାଂଚିବୁ ପର ମଙ୍ଗଳ,
ବିନମ୍ର ସ୍ୱଭାବ    ଥିଲେ ଅବିରଳ
କରିବେ ପୂଜା ସକଳ ।

ତୋ ପୂର୍ବ ପୁରୁଷେ କେତେ ସରଳେ
ଯାପୁଥିଲେ ଦିନ ଗାଆଁ ଗହଳେ
ମାଣ୍ଡିଆ ଜାଉରେ ପେଟ ପୂରାଇ
କରୁଥିଲେ କାମ ରତି ବୁହାଇ
ନ ଥିଲା ଏ ଆଡ଼ମ୍ବର,
କୋମଳ କଥାରେ    ସକଳ ମାନସ
ତୋଷୁଥିଲେ ନିରନ୍ତର ।

କୋଠ ଘର ରଖି ଗାଆଁ ମଝିରେ
ଭାଗବତ ଶୁଣୁଥିଲେ ରାତିରେ
ନଥିଲା କପଟ ନଥିଲା ଛନ୍ଦ
ଖେଳୁଥିଲା ମୁଖେ ସଦା ଆନନ୍ଦ
କାହିଁ ସେ ସୁଖ ସମୟ ?
ନୈରାଶ୍ୟ ପବନ    ବହି ବର୍ତ୍ତମାନ
ହୃଦୟ କରେ ଅଥୟ ।

ପ୍ରଭୁ ନାମ ଧରି ଉଠ ଶେଯରୁ
ଆବର୍ଜନା ପୋଛି ହୃଦ କନ୍ଦରୁ
ତାଙ୍କର ମହିମା କରି କୀର୍ତ୍ତନ
ହସ ହସ ମୁଖେ ଯାଉ ଜୀବନ
ଧର୍ମ ପ୍ରାଣ ଏ ଭାରତ,
ଅନ୍ୟାୟକୁ ତିଳେ    ନ ଦେଇ ପ୍ରଶ୍ରୟ
ଦୀନ ସେବା ହେଉ ବ୍ରତ ।

ଧରି ନିଜ ମନ କର ଆୟତ୍ତ
ବିବେକ ଲଗାମେ ଅନବରତ
ସ୍ୱାର୍ଥ ଦେଖାଇବ ଯାହାକୁ ବାଟ
ଲାଗିଥିବ ତା'ର ଜୀବନେ ନାଟ
ବିଚାରି ଚଳିବ ଭବେ,
ନଇଁବାକୁ ମୁଣ୍ଡ    ନ ପଡ଼ିବ କେବେ
ବିପଦ ନଥିବ ଲବେ ।

ନୀଚ କରମରୁ ଯାଅ ଓହରି
ପାଇବ ପ୍ରଶଂସା ପଛେ ଯେପରି
ଆଦର୍ଶ ମଣିଷ ହେବାକୁ ଭବେ
ହିଂସା ଲୋଭ ହୃଦେ ନରଖ ଲବେ
ଜୀବନ କରି ସାର୍ଥକ,
ଦୁଃଖୀ ରଙ୍କଙ୍କର    ପେଟ ଚିନ୍ତି ସଦା
ସତ୍ୟର ହୁଅ ପୂଜକ ।

ବିଳାସ ବ୍ୟସନେ ନଦେଇ ମନ
ଭକ୍ତିରସ ପାନେ ଯାଉ ଜୀବନ
ଆପଦ ପଡ଼ିଲେ ନୋହି ବିବ୍ରତ
ଧୈର୍ଯ୍ୟ ଧରିଥିବ ଅନବରତ
ସଂଯମ ସଦା ଆଚରି,
ଚଳିଲେ ଜୀବନ ହେବ ସୁଖମୟ
ନୀରୋଗରେ ଯିବ ତରି ।

ଜୀବନ ସମସ୍ୟା ଜଟିଳ ଅତି
ନୋହି ତରବର କର ନିଷ୍ପତ୍ତି
ଦିଶୁନାହିଁ ପିଠି କେବେ ନିଜକୁ
ଡେରିଥିବ କାନ ସଦା ଭିତକୁ
ଆଗରେ ରହିଛି ଗାଡ଼,
ଜୀବନ ପଥରେ ଚାଲି ନ ଜାଣିଲେ
ଭାଂଗିଯିବ ମେରୁହାଡ଼ ।

ଧନ ଲାଗି ତେଜି ମାନ ମହତ୍ତ୍ୱ
ଧାଉଁଛନ୍ତି ଲୋକେ ନବୁଝି ତତ୍ତ୍ୱ
ମିଛ କଲା ବସା ନିତି ତୁଣ୍ଡରେ
ଭଲ କଥା ପଶୁନାହିଁ ମୁଣ୍ଡରେ
ଧନ୍ୟ ଧନ୍ୟ ଯୁଗ ରୀତି,
ଜଣକ ପିଠିରେ ବସିଲେ ପ୍ରହାର
ଅନ୍ୟର ହୃଦୟେ ପ୍ରୀତି ।

ଧରଧରି ଜାଲେ କେବେ ନ ପଡ଼
ନ୍ୟାୟେ ନେଉଥିଲେ ଦେଶକୁ ଗଢ଼
ଲଭିବେ ସନ୍ତୋଷ ଲୋକ ସକଳ
ଦୂଷିତ ନ ହେବ ବାୟୁମଣ୍ଡଳ
ନିର୍ମଳ ରହୁ ଅନ୍ତର,
ଗୁରୁଜନ କଥା ଶୁଣୁଥିଲେ ସିନା
ହେବ ନାହିଁ ହରବର ।

ଧିକ ଧିକ ଲୋଭ ତୋର ଫାନ୍ଦରେ
ପଡ଼ ଲୋକଗଣ ଅଜାଣତରେ
ହୁଅନ୍ତି ହିନସ୍ତା ବାଟଘାଟରେ
ସେ ଦୁଃଖ ପଡୁଚି ପର କାନରେ
ଦୁନିଆଁର ଭଲମନ୍ଦ,
ଖୋଜିଲେ ଜାଣିବ ତନ୍ନ ତନ୍ନ କରି
ହୃଦୟେ ନରଖି ଛନ୍ଦ ।

ଜଗତେ ସରବେ ବଶ ଅର୍ଥରେ
ରହୁଅଛି ନ୍ୟାୟ ତା'ର ପକ୍ଷରେ
ଦେଖିଲେ ବିଫଳ ଲାଗୁଛି ସିନା
ଜେ ଅଛି ଜୀବନେ ସାଥୀ ତା ବିନା
କେତେ ବଳ ଧର୍ମ ଦ୍ୱାରେ,
କାଳଚକ୍ରେ ପଡ଼ି ଠକାମି ଭଣ୍ଡାମି
ପରାଜିତ ସବୁଠାରେ ।

ନ୍ୟାୟ ଅନ୍ୟାୟକୁ ପରଖି ଏଇ
କରିଯାଅ କର୍ମ ଛାଡି ଫୁଲାଇ
ଜୀବନ ଯୌବନ ଅଢେଇ ଦିନ
ଦେଖୁଛ ସକଳ ଧୂଳିରେ ଲୀନ
ଛଟପଟ କା' ନିମିତ୍ତ
ମୂଲ୍ୟହୀନ କଥା ପକାଇ ସମୟ
ହେଉଛି ଅତିବାହିତ ।

ବସାଘର ଖଣ୍ଡି ଅଢେଇ ଦିନ
ଜଣେ ପରେ ଜଣେ ହେଉଛି ଲୀନ
ଦେଖି ସରବେ, ତଥାପି ମଣିଷ ନ ଏବେ ଲବେ ।

ଲାଗିଅଛି ପରା ଘର ସଜଡ଼ା
ତହିଁରୁ କେ ଦିନେ ଖାଇବ ତଡ଼ା
ସୃଷ୍ଟିର ଖେଳ, କିଏ କାହା ସଙ୍ଗେ ହୁଏକି ମେଳ ।

ନାଆଁ ନଥିବ କି ଘର ନଥିବ
ପୁରୁଷେ ଗଲେ ତା ସବୁ ଲିଭିବ
ଜନ୍ମି ଔରସେ, ଜାଣିବ କି କିଏ ହେଜି ମାନସେ ।

ଯେତେ ଦୋଷ କଲେ ପଡ଼ିବୁ ଧରା
ତା ଦଣ୍ଡ ପାଇବୁ ଛାଡ଼ିଲେ ଧରା
ଫିଟିବୁ ବୋଲି, କରୁଥା ବିଚାର ହୃଦୟ ଖୋଲି ।

ଟିଆରୁଛି କେହି ଘଡ଼ିରେ ନିତି
ଅବୁଝା ମନର ଧନରେ ପ୍ରୀତି
ଥାଇ କପଟେ, ସବୁ ଜାଣି, ଯାଉ ଖସଡ଼ା ବାଟେ ।

ଆଗରେ ରହିଛି ପଙ୍କୁଆ ବାଟ
ଚାଲି ନ ଜାଣିଲେ ବାଜିବ ଛାଟ
ସୃଷ୍ଟି ରହସ୍ୟ, ଥାଉଁ ଥାଉଁ ବେଳ ବୁଝୁ ଅବଶ୍ୟ ।

କେଉଁଆଡେ ଗଲେ ତୋ ବାପା ମାଆ ?
ପାରି ହେବା ଲାଗି ଥିଲା କି ନାଆ ?
ଭବ ସାଗରୁ, ଗଢ଼ିବୁ ଚରିତ୍ର ଭାବି ଆଗରୁ ।

ଶିଖିବୁ, କରିବୁ ଯେତେ ଫିସାଦ
ସେତିକି ଘୋଟିବ ମନେ ବିଷାଦ
କଲେହେଁ ପାଟି,
ଶେଷକୁ ହେବ ତୋ ଜୀବନ ମାଟି ।

ପଶିଲେ ଜୀବନେ ଦୁର୍ନୀତି ଜଳେ
ବୁଡ଼ାଇ ଦେବଟି ପକାଇ ତଳେ
ଯିବ ପରାଣ, କିଏ ସୁଖୀ ଭବେ ଦେଖାଇ ଟାଣ ।

କରୁଛୁ ଜୀବନେ ଯେତେ ମଧୁଧା
ସହିବ ନାହିଁଟି ସବୁ ବସୁଧା
ରହି ସଜାଗ, ରଖିବୁ ମନରେ ସ୍ୱାର୍ଥେ ବିରାଗ ।

ଦୁଆର ମୁହଁରେ ରହି ବିବେକ
ଶିଖାଉଛି ତୋତେ କଥା ଅନେକ
ପାସୋରି ଦେଉ,
ଜାଣି ତୋ ମନକୁ ଅବାଟେ ନେଉ ।

ବାୟୁଠାରୁ ବଳି ମନର ଗତି
ନ ରୋଧିଲେ ତାକୁ କାହିଁ ମୁକତି ?
ବିଚିତ୍ର ସୃଷ୍ଟି, ଏଥି ପ୍ରତି ଟିକେ ପଡୁ ତୋ ଦୃଷ୍ଟି ।

ଷଟୁକାର ଦଳ ଲଭ ଆଶାରେ
ରହିଛନ୍ତି ବେଢ଼ି ଚଉପାଶରେ
ନ ଡେରି କାନ,
ବିଗାରି କରିବୁ କାର୍ଯ୍ୟ ବିତାନ (ସମୂହ) ।

ଅଲେଡ଼ା ବରଷା ଦିଏ ଅଡ଼ାଡ଼
ଧାନ ଠାଏଁ ଠାଏଁ କଲା ଅଗାଡ଼
ବିଚିତ୍ର ସୃଷ୍ଟି, କିଏ ଭବେ ଏଣେ ପକାଏ ଦୃଷ୍ଟି ।

ମୁଗ ବିରି ଚିଲେ ପଶୁଛି ପାଣି
ବୁଡ଼ାଇ ଦେଲାଣି ଗଛକୁ ଟାଣି
ଲୀଳା ଅଜର, ଭ୍ରମ ମତି ସଦା ମଣିଷଙ୍କର ।

ନାନା ରୋଗ ପଶି ତୋର ଶରୀରେ
ବାର ବାର କଷ୍ଟ ଦାଉନ୍ତୁ କିରେ ?
ପୂର୍ବ ଜନ୍ମରେ, କରିଥିବା କର୍ମ ଭୋଗନ୍ତ ନରେ ।

ପାପଗ୍ରହ ଯେବେ ଆସୁଛି ଘୋଟି
ମଣିଷର ସେବେ ଧରୁଛି ଚୋଟି
କରିଲେ ଲକ୍ଷ୍ୟ, ବୁଝି ପାରିବ ତା ମଣିଷ ମୋକ୍ଷ ।

ଜୀବ ଜଗତେ କେ ହୋଇଛି ଚିର ?
ନ ଭାବି ମଣିଷ ହୋଇ ଅଧୀର
କରୁଛି କର୍ମ ନ ଜାଣି ପାଖରେ ରହିଛି ଧର୍ମ ।

ନ ପରଖୁଁ କିମ୍ବା ନିଜ ଶରୀର
ପଡୁଛି କି ପାଦ ହୋଇଣ ଥିର
ଚିନ୍ତ ଆଗକୁ, ଓହରିବୁ ନାହିଁ କେବେ ପଛକୁ ।

ସରି ଆସିଲାଣି ଜୀବନ ଖେଳ
ଫେରିଯିବା ଲାଗି ଉଣ୍ଡୁଛି ବେଳ
ଥରୁଛି ଗୋଡ, ରଖିଲେ ଜୀବନେ ଅଧିକ ଫୋଡ ।

କେତେ ଲୋକଠାରୁ ଶୁଣୁଛି ଗାଳି
ମାରୁଅଛି କିଏ ପଛରୁ ତାଳି
ଦେଖାଦରରେ, କରୁଅଛି କାର୍ଯ୍ୟ ନ ଶୁଣି ଥରେ ।

ସରଜି ଥିଲେ ଯେ ମୋ କାର୍ଯ୍ୟ ନିତି
ପାଂଜିରେ ତାଙ୍କର ଥିବେ ସାଇତି
ଦଣ୍ଡିବେ ଯାହା, ନ ଫିଟାଇ ପାଟି ସହିବି ତାହା ।

ଦିନେ ଧରି ନାହିଁ ତୁମ୍ଭେ ଯା ନାମ
ନ ହେବ କାହିଁକି ମୋ ପ୍ରତି ବାମ
କେତେ ମୋ ଭଳି,
ଚାଲବ ଖୋଜିଲେ ଗଳିକି ଗଳି ।

ଦେଉଅଛି ଶେଷେ ବୁଜି ନୟନ
ଆସୁଛି ମନକୁ ନାନା ଏବନ
ଲୋକେ ଧାର, ନିତିଡ଼ ପଡୁଛି ବାରକୁ ବାର ।

କରୁଅଛି କର୍ମ ଯିଏ ଯେପରି
ଭୋଗୁଛି ତା ଫଳ ସିଏ ସେପରି
ଏବି ଅନିଶ, ନ ଚଢୁ ଅସାରେ ଲବେ ମଣିଷ ।

ଯାହାର ମହିମା ଲତା ଗୁଳୁରେ
ପୁଣି ଦିନ ଗତି ସିନ୍ଧୁ ତଟରେ
ଉବେ ଜୁନିଶ, ତଥାପି ଅବାଟେ ଯାଏ ମଣିଷ ।

ଜାଣିଛି ପିଲାରୁ ଖସିବି ଦିନେ
ହାତରେ ଅଣ୍ଟାରେ ନଥିବ ଦିନେ
ପାପ ଯହିଁରେ, ଲାଖୁଛି କିପରି ମନ ତହିଁରେ ।

ଅଟଇ ଜଗତ ଈଶ୍ୱରମୟ,
ପାପ କର୍ମ ଯହିଁ କରିବ ଭୟ ।

ପଡୁଛି ଦୁର୍ଭିକ୍ଷେ ଦାଣ୍ଡରେ ଘରେ,
ସଢୁଛି ମଣିଷ ନାନା ରୋଗରେ ।

ଆଖି ଫୁଟି କା'ର ପାଉଛି କଷ୍ଟ,
କୁଷ୍ଠ ରୋଗୀଙ୍କର ଜୀବନ ଭ୍ରଷ୍ଟ ।

ଘୁଷୁରି ଘୁଷୁରି ଯାଉଛି ଛୋଟା,
ହେଲେହେଁ ତାହାର ଶରୀର ମୋଟା ।

ପଡ଼ିଛି ଶେଯରେ କିଏ ବା ଏଣେ
ଖସିଲାଣି ଗଡ଼ୁ କିଏ ବା ତେଣେ ।

ସଳିଳ ସମାଧି ଲଭୁଛି କେହି,
ଅବିରାମ ଭବେ ଅସ୍ଥିର ଦେହୀ ।

ଅନ୍ୟାୟ କାର୍ଯ୍ୟରୁ ଯାଅ ଓହରି,
ତରିଯିବା ପାଇଁ ଧରମ ତରୀ ।

ବିବେକକୁ ବୁଝି କରିବ କର୍ମ,
ତାହାହିଁ ସଂସାରେ ମହତ ଧର୍ମ ।

କ୍ଷଣିକ ମମତା ଲଗାଇ ନାଟ,
ଜାଣୁ ନାହିଁ ଦିନେ ବାଟ ଅବାଟ ।

ପାପଲାଗି ଥୁଆ ଦଣ୍ଡ ସନ୍ତତ,
ଏ କଥା ନ ଏବି କି ହନ୍ତସନ୍ତ !

ଏ ଭବେ ମଣିଷ ଛାଡ଼ ମହତ,
ଧାଇଁଛି ସ୍ୱାର୍ଥରେ ଅନବରତ ।

୦ ୦ ୦

## ତୃତୀୟ ସର୍ଗ

# ବନ୍ଦନା

ଉଠ ଉଠ ମାଆ ଭଉଣୀ ଉଠ ପାଇଲା ରତି
ଉଡ଼ିଲେଣି ଏବେ ଆକାଶେ କୁଆ କଜଳପାତି ।

ନିଜ ନିଜ ଧନ୍ଦା ଧରିବା ଚିନ୍ତ ପରମେଶ୍ୱର
ଯାହାର ଆଦେଶ ପାଳଇ ଧୂବିଶାଳ ସାଗର ।

ଦିନ ପରେ ରତି ଆସଇ ଯା'ର ଆଦେଶ ପାଇ
ଚଂଦ୍ର ସୂର୍ଯ୍ୟ ଘୂରି ବୁଲନ୍ତ ସଦା ଆକାଶେ ଥାଇ ।

ନାନାଜାତି ଫୁଲ ଫୁଟୁଛି ନାନା ବରଣ ଧରି
ସୁଖ ଦୁଃଖ ଲୋକ ଭୋଗୁଛି ନିଜ କର୍ମ ଆଦରି ।

ଉଠୁଛି ପଡୁଛି ମଣିଷ ଯା'ର ବିଧାନ ବଳେ
ହସୁଛି ବା କେବେ କାନ୍ଦୁଛି ନିଜ କରମ ଫଳେ ।

କାର୍ଯ୍ୟବ୍ୟସ୍ତ ଅନବରତ ଯା'ର ନାହିଁ ବିଶ୍ରାମ
ସ୍ମରୁଥିବି ଚିତ୍ତ ଭିତରେ ମୋଦେ ମୁଁ ଅବିରାମ ।

ଋତୁ ପରେ ଋତୁ ଆସୁଛି ନିତି ପଡ଼େ ନୟନେ
ଭୁଲିବି କିପରି ତାହାଙ୍କୁ ଏହି ଛାର ଜୀବନେ ।

ଚୋଲପ ମଲ୍ଲୀ କି ତୁଳନା କେବେ କଳକି ବସି
ବିତରି ସୁରଭି ଦିନକେ ଗଛୁଁ ପଡୁଛି ଖସି ।

ବୁଝାଇ ଦେଉଛି ଲୋକକୁ ଭବେ ଅଳ୍ପ ସମୟ
ରହି ଖସିଯାନ୍ତି ସକଳ ନେଇ ଚିର ବିଦାୟ ।

ବିଚିତ୍ର ସୃଜନ ଦର୍ଶନ କରି ମାନବତତି
ମରୀଚିକା ପଛେ ଦଉଡ଼ ତୁଚ୍ଛା ଦିନ ଯାରନ୍ତି ।

ଅଗଣିତ ବୃକ୍ଷଲତା ଯେ ସର୍ଜନା କରି
ପ୍ରାଣୀ ହିତେ ଦେଖ ଧରା ରଖି ଅଛି ଧରି ।

ଶିଖଣ୍ଡିନୀ (ଦ୍ରୌପଦୀ) ଆର୍ତ୍ତନାଦ
ପଡନ୍ତେ ଶ୍ରୁତିରେ
ସହସ୍ର ସହସ୍ର ବାସ ଦେଲା ଯେ ଅତିରେ ।

କୁମ୍ଭୀମୁଖୁଁ (କୁମ୍ଭୀର) ଉଦ୍ଧରିଲା
କୁମ୍ଭୀନ୍ଦ୍ର (ହାତୀ) ପେ ଖରେ
ଗର୍ବ ଗଞ୍ଜନ କେତେ ହେଲା ଯା ହସ୍ତରେ ।

ନୃସିଂହ ବରାହ ରୂପ ଯେହିଯେ ଧାରଣ
କରିଥିଲେ ହିରଣ୍ୟର ବକ୍ଷ ବିଦାରଣ ।

ଇନ୍ଦ୍ରାଦି ଦେବତା ବୃନ୍ଦ ଯାହାଙ୍କୁ ଅନିଶ
କରୁଛନ୍ତି ସେବା ନିତି ସେ ମୋ ପ୍ରାଣଈଶ ।

ତାରିବେ ଭବସାଗରୁ ବୋଲି କରି ଆଶା
ବନ୍ଦ ତାଙ୍କ ଚରଣାବ୍ଜେ ମେଣ୍ଟୁ ମୋ ପିପାସା ।

ଯୌବନ ଭଂଗିମା କେତେ ଦିନ ପାଇଁ
ଯାର ପଛେ ପଛେ ଜରା ଆସେ ଧାଇଁ ।

ଦିଶଇ ବିକୃତ ଯେତେ ଅବୟବ
କରିଦିଏ ଚୂର୍ଣ୍ଣ ଚୂର୍ଣ୍ଣେ ଗର୍ବ ତବ ।

ଯାହାକୁ ଚିଆରୁଥିଲ ତୁମେ ଦିନେ
ସେତ ଶୁଣୁନାହିଁ ତୁମ କଥା ଚିନେ ।

ଦେଖ ଚଉଦିଗେ କୃତଘ୍ନତା ପଶି
ଲୋକର ମହତ୍ତ୍ୱ ଦେଉଛି ବିଧ୍ୱଂସି ।

ବିଶ୍ୱାସ ଘାତକ ଟେକିଲେଣି ମୁଣ୍ଡ
ମିଛ ଗପିବାକୁ ନ ଡରେ ଯା ତୁଣ୍ଡ ।

ଓଲେମ ବିଲେମ ସନ୍ତତ ଦୁନିଆଁ
ଟିକକ କଥାରେ ଜଳୁଅଛି ନିଆଁ ।

ହେଲେ ଅଳଘୁଆ ଦୁଶ୍ଚିନ୍ତା ପ୍ରବେଶ
ନ ଆସଇ ନିଦ ନୟନକୁ ଲେଶ ।

ଉପୁଜି ତହିଁରୁ ନାନାବିଧ ରୋଗ
ଆଣଇ ଅବଶ୍ୟ ପ୍ରାଣେ କ୍ଲେଶ ଭୋଗ ।

ସେତେବେଳେ ସବୁ ମଣିବ ଅସାର
ବୃଥା ହେବ ଯେତେ ତୁମ କାରବାର ।

କା'ର ଲୀଳା ଭୂମି ନୁହଇ ସଂସାର
କର ନାହିଁ କେବେ ଢିଲୁଆ ବିଚାର ।

ହାତେ ମାପିଦେଇ ଚଳିବ ଚଖଣ୍ଡେ
ବିଚରିବ ସଦା ଜୀବନଟା ଦଣ୍ଡେ ।

ଭୋଗ ବିଳାସରେ ଦିଅ ନାହିଁ ମନ
ମହତେ ଖଟାଅ ଉପାର୍ଜିତ ଧନ ।

ଗ୍ରାସିଅଛି ଯା'କୁ ମାୟା ମୋହ ଭବେ
ଅଛି କି ତାହାର ହୃଦେ ଶାନ୍ତ ଲବେ ?

ଆପଣା ଛିଦ୍ରକୁ ଘୋଡାଇ ଜୀବନେ
ନ ଖୋଜ ପରର ଛିଦ୍ର କେବେ ମନେ ।

ଦିନର କରମ ବିଚାର ଶୟନେ
ଭୁଲ ଥିଲେ କର ଯତ୍ନ ସଂଶୋଧନେ ।

କର୍ତ୍ତବ୍ୟ କର୍ମରେ ନ ହୁଅ ବିମୁଖ
ଅଭିଳାଷ ଥିଲେ ପାଇବାକୁ ସୁଖ ।

ବିଚିତ୍ର ନିରତ ଦୁନିଆଁ ବେଭାର
ଛଦ ତେଜି ବେଳୁଁ ହୁଅ ହୁସିଆର ।

ଟାଣୁଅଛି ଯା'କୁ ସ୍ୱାର୍ଥର ଦଉଡ଼
ପବିତ୍ର କଥା ସେ ଯାଉଅଛି ହୁଡ଼ ।

ଯାହାକୁ ମଣୁଛ ହୃଦୟର ମଣି
ସେହି ପରିଣାମେ ତୁମ କାଳ ଫଣୀ ।

ସମ୍ପଦେ ବିପଦେ ତୁମ ସାହା ଥିଏ
ନାମ ତା'ର ତୁଣ୍ଡେ ନଧର ଟିକିଏ ।

ଘାରଇ ଯାହାକୁ ଅବିରଳ ଲୋଭ
ଅକର୍ମ କରଣେ ଅଛି କି ତା କ୍ଷୋଭ ।

ଧନ ଧନ ବୋଲି ଲୋକ ହୋଇ ବାଇ
କୁଳର ଗୌରବ ଦିଅନ୍ତି ବୁଡାଇ ।

ଧନ ଲାଗି ହୃଦେ ଜନ୍ମିଲେ ନୈରାଶ୍ୟ
କଳେବର ଜୀର୍ଣ୍ଣ କି ବିବର୍ଣ୍ଣ ଆସ୍ୟ ।

ବଢ଼ି ଯାଉଅଛି ଜୀବନର ଧୂଅ
ଗଡାଉଛି ନିତି କିଏ କେତେ ଲୁହ ।

ପରସ୍ୱ ହରଣେ ନଜର ସତତ
ନ ଚିନ୍ତେ କିଏସେ ଭୂତ ଭବିଷ୍ୟତ ।

ପକାଇଛି ଜାଲ ସ୍ୱାର୍ଥ ଚରିଆଡେ
ଛପି ରହି ଏଣେ ଲଳସା ଉହାଡେ ।

ଶଠତା ଲଗାଇ ମସ୍ତକେ ମୁକୁଟ
ଦେଉଅଛି ଖଂଜି ନାନା ନଟକୂଟ ।

ପୁଣ୍ୟର ତଉଲ ପାପ ନିକିତିରେ
କେବେ ବାହାଦୁରି ଦେଖାଏ ପ୍ରୀତିରେ ।

ଦେଖାଉଛି ହିଂସା କେତେ ଅଭିନୟ
ନିରତ ମନକୁ କରୁଛି ଅଥୟ ।

କୃତଘ୍ନତା ଚିପି ଦେଉଛି ସଂସାର
ଚଉଦିଗେ ମାଡ ଯାଉଛି ଅନ୍ଧାର ।

ହାଟ ବାଟ ଘାଟେ ମିଥ୍ୟାର ପସର
ବୀଡ ବସିଅଛି ସଫାଗର ଧର ।

ଚତୁର ପଣରେ ଜଟିଆ ଲଗାଇ
କୁଟିଳତା କରେ ନିରୀହକୁ ବାଇ ।

ଯାଉଛି ଜଗତୁଁ ଉଭେଇ ବିଶ୍ୱାସ
ସକଳ ହୃଦୟେ ଉପୁଜଇ ତ୍ରାସ ।

ହେଉଅଛି ଚୂନା ଦାଉ ଗରବର
ତୁଛାରେ କିଏ ବା ହୁଏ ଫରଫର ।

କିଏ ବା ଧନର ବଡିମା ଦେଖାଇ
କହେ ଚକି କଥା ତୁହାଇ ତୁହାଇ ।

କାନକୁହା କେତେ ଚେକିଲେଣି ମୁଣ୍ଡ
ବିଚ୍ଛୁଡର ଶୁଣ୍ଢ ପରି ତାଙ୍କ ତୁଣ୍ଡ ।

ଦେଖାଇ ହୁଏ କେ ନିଜ ବାହୁବଳ
ପରିଣତି ଯା'ର ବିଷମୟ ଫଳ ।

ଭାଗ୍ୟ ପ୍ରତିକୂଳ ହେଲେ ମଣିଷର
ଅନୀତିରେ ବଶ ସିନା ନିରନ୍ତର ।

⊙ ⊙ ⊙

କୃଷ୍ଣ ହେ, ତୁମ ଲୀଳା ବିଚିତ୍ର (ଘୋଷା)

ଦେବକୀ ଗର୍ଭରୁ ବନ୍ଦୀଶାଳେ ଜନ୍ମି
ନନ୍ଦ ରଜା ଘର କଲ ପବିତ୍ର । କୃଷ୍ଣ ହେ

ଯମୁନା କୂଳରେ ଗୋପୀଙ୍କ ମେଳରେ
କଲ ଜଳକେଳି ବାହି ବହିତ୍ର । କୃଷ୍ଣ ହେ

ତୁମ ପଦାଘାତେ ଶକଟା ଅସୁର
ଲଭିଲା ମରଣ ନୁହ କି ଚିତ୍ର (ଆଶ୍ଚର୍ଯ୍ୟ) । କୃଷ୍ଣ ହେ

ଧରିଥିଲ ତୁମେ ଅଂଗୁଳି ଅଗରେ
ଗୋବର୍ଦ୍ଧନ ଗିରି ନୁହ କି ଚିତ୍ର । କୃଷ୍ଣ ହେ

ତୁମ ରୂପ ଦେଖି ତୁମ ମାମୁଁ ମଲା
ଅର୍ଜୁନ ସଙ୍ଗରେ ବସିଲ ମିତ୍ର । କୃଷ୍ଣ ହେ

ଏକୁଟିଆ ଯୁଦ୍ଧେ ବିନାଶିଲ ଚୈଦ୍ୟ (ଶିଶୁପାଳ)
ଧୂଆଁ ବାଣ ଛାଡ଼ ଘୋଡ଼ାଇ ମିତ୍ର (ସୂର୍ଯ୍ୟ) । କୃଷ୍ଣ ହେ

ନେଇଛ ପଉଣ ବଳିଷ୍ଠ ବଳିର
ପାଦେ ଚିପିଦେଇ ନୁହ କି ଚିତ୍ର । କୃଷ୍ଣ ହେ

ନଖରେ ବିଦାରି ହିରଣ୍ୟକୁ ମାରି
ରଖିଲ କୀରତି ନୁହ କି ଚିତ୍ର । କୃଷ୍ଣ ହେ

ତବ ଶ୍ରୀଚରଣେ କରୁଅଛି ଅଳି
ବଦଳୁ ସଂସାରେ ଲୋକ ଚରିତ୍ର । କୃଷ୍ଣ ହେ

⊙ ⊙ ⊙

# ଅଜ ବିଳାପ

(ରାମଙ୍କ ପିତା ଦଶରଥ, ତାଙ୍କ ପିତା ଅଜ)

ମୁହଁକୁ ଅନାଇ ଅଯୋଧ୍ୟାର ସାଇଁ
ଆଉଁଷି ଆଉଁଷି ଦେହ
ଝୁରିଲେ ବିକଳେ ପତି ପ୍ରତି ଇଂଦୁ
ରଖିଥିଲେ ଯେଉଁ ସ୍ନେହ ।

ଆଗୋ ଚଂଦ୍ରାନନି ! କିପାଁ ଅନାଥକୁ
ନଉଛ ଫେଡ଼ ନୟନ
ତୋର ଆଗେ ବସି କାଂଦୁଛି କିପାଇଁ
ନ କହ ପଦେ ବଚନ ।

ଭାବିଲଣି ମୋତେ କପଟ ପ୍ରଣୟୀ
ବୋଲି ଜାଣୁଛି ନିଶ୍ଚୟ
ନୋହିଲେ କି କେବେ ଯାଆନ୍ତ ସେ ଦେଶେ
ନ କହି ଖୋଲି ହୃଦୟ ।

ଯେଦେଶୁଁ ବାହୁଡ ନ ଆସନ୍ତ କେହି
କେବେ ଆଗୋ ସୁଧାହାସି
ନେଉ ନାହଁ କିପାଁ ତବ ସଙ୍ଗେ ମୋତେ
ଯାଏ ଶୋକଜଳେ ଭାସି ।

ରେ, କୁତ୍ସିତ ପ୍ରାଣ ଯାଇଥିଲୁ ଯେବେ
ଶଶୀମୁଖୀ ପ୍ରିୟା ସହ
ଫେରିଲୁ ଯେବେଠି ନ ଆଣି ତାହାଙ୍କୁ
କିପାଁ ଲେଉଟିଲୁ କହ ।

ଭୋଗିବୁରେ ଘୋର ବିରହ ବେଦନା
ଥିବାଯାଏଁ ଧରା ତଳେ
ବୁଝାଇବ କିଏ ସହିଯିବୁ ଯେବେ
ଆତ୍ମକୃତ ପାପ ଫଳେ ।

ଧିକ ଶତବାର ଦେହୀମାନଙ୍କର
ଏ ରୂପ ଅସାର ତାକୁ
ହୃଦୟ ବିଦଗ୍ଧ ହେଉଅଛି ଛାଡ଼
ପ୍ରିୟତମା ବନିତାକୁ ।

ତୁମ୍ଭର ଅପ୍ରିୟ କାର୍ଯ୍ୟ କରି ନାହିଁ
କେତେବେଳେ ଏ ଜୀବନେ
ତେବେ କାହିଁ ପାଇଁ ଯାଉଅଛ ଛାଡ଼ି
ଏତେ ରୋଷ ବହି ମନେ ?

ତୁମ୍ଭଠାରେ ଆଶି ରହିଥିଲା ଲାଗି
ଅବିରାମ ଜୀବନରେ
ଭୁଲିବି କିପରି ତୁମ ଚାରୁ ପ୍ରୀତି
କହ ପ୍ରିୟ ସଖି ! ଥରେ ।

କୁଙ୍କୁମ ଝଟିତ ଅଳକ ତୁମର
ଦୋହଲାଇ ପ୍ରଭଞ୍ଜନ
ଉଠୁଅଛ ବୋଲି ଦେଉଛି ଜଣାଇ
ମୋର ମନେ, ପ୍ରିୟ ଧନ !

ବିଷାଦ କାଳିମା ଘୁଞ୍ଚୁ ମୋ ହୃଦୟୁ
କହି ସୁକୋମଳ କଥା
ତୁମ୍ଭ ବିନା ସଖି ! ନ ଜାଣିବ କେହି
ମୋର ମାନସର ବ୍ୟଥା ।

ଲୋଡ଼ିଥିଲ ଦିନା ତୁମେ ମୋର ସଙ୍ଗ
ସ୍ୱୟମ୍ବର ସଭାସ୍ଥଳେ
ଜାଣି ମୁଁ ନ ଥିଲି ଭଲିଯିବ ବୋଲି
ଭସାଇ ଶୋକ ସଲିଳେ ।

ମୋର ମନ ଜାଣି ତୋଷୁଥିଲ ପରା
ସନ୍ତତ ମୃଦୁ ବଚନେ
ଉଠୁଅଛି କୋହ ମୋହ ଲାଗି ସିନା
ଏବେ ଏ ପାପୀର ମନେ ।

ପୂର୍ବ ସୁକୃତରୁ ଯାଉଛ ବାହାରି
ନ ଛୁଇଁ ଟିକିଏ ରୋଗ
ଅବା ଭବ ଜାଲୁ ମୁକୁଳିବା ଲାଗି
ତେଜିଲ ସକଳ ଭୋଗ ।

ଜନମି ଧରାରେ ଦୁଃଖ ବୋଲି କିଣେ
ଜାଣି ତ ନ ଥିଲି ସଖି !
ଏ ବିରହ ବାଧା ଦେଉଅଛି ଏବେ
ମରମେ ମରମେ ଦହି ।

ଫାଟିପାଏ ହୃଦ ଦେଖି ଶିଶୁ ମୁଦ
ତୁମ ସୁକୋମଳ କୋଳେ
ସନ୍ତାନ ମମତା ଛାଡ଼ିଲ କି ଅବା
ସ୍ୱର୍ଗ ସଉରଭ ଭୋଳେ ।

ଟୋକି ଚନ୍ଦନକୁ ବୋଳି ହେଉଥିଲ
ନିଦାଘ ତାପ ନ ସହି
ଏବେ କେଉଁ ପରି ଶିଖୀ ଶିଖା ପରେ
ଲୋଡୁଛ ଶୟନ ସହି ?

ଉଶୀର (ବେଣାଚେର) ବ୍ୟଜନ ତୂଳିକା ନିରତ
ହେଉଥିଲା ଲୋଡ଼ା ଯାର
ହାୟରେ ଦଇବ ! ମୃତ୍ତିକା ଆବୋରି
ପଡ଼ିଛି ତନୁ ତାହାର ।

ଚକୋର ଚକୋରୀ ବିରହ ଯାତନା
ରହେ ସିନା ଅଳ୍ପ କାଳ
କିନ୍ତୁ ତୋ ବିରହ ଚିର ଦିନ ବୋଲି
ଜାଣିଲଣି ନରପାଳ ।

ହା ! ଦଇବ କହ କିପରି ସହିବ
ସେହି ଚିତାନଳ କ୍ଲେଶ ?
ଯେ ଶୁଏ ସନ୍ତତ ତୂଳିତଳ୍ପ ଶେଯେ
ନଜାଣି ଯାତନା ଲେଶ ।

ହୃଦେ ଯେଉଁ କଥା ଉପୁଜଇ ଏବେ
ପାରୁ ନାହିଁ ଧୈର୍ଯ୍ୟ ଧରି
ଆଗୋ, କଳକଣ୍ଠି ତୋର ପିକ ସ୍ୱନ
କହ, ଭୁଲିବି କିପରି ?

ରୋପିଥିଲ ପରା ଏ ରସାଳ ତରୁ
ପ୍ରିୟଙ୍ଗୁ ଲତିକା ସହ
ଯାଉଛ ବାହାରି ନ ପାରି ଟାଙ୍କର
ଶୁଭଲଗ୍ନେ ପରିଣୟ ।

କେତେ ଶରଧାରେ କେତକୀ ପାଖୁଡ଼ା
ଯୁଡ଼ା ବାନ୍ଧଥିଲ ଆଣି
ଯାଇଛି ମଉଳି ତୁମ୍ଭ ସଙ୍ଗେ ସଖି
ଅଞ୍ଜନ ଲଗା ରହାଣି ।

ଗଜହଂସୀ ପରି ସୁମନ୍ଥର ଗତି
ନୟନ ଭଙ୍ଗୀ ଚଞ୍ଚଳ
କାତର ଏ ହୃଦ ତୁମ୍ଭ ବିରହରେ
ବହୁଅଛି ନେତ୍ରୁ ଜଳ ।

ଦେଖ, ପ୍ରିୟସଖି ! ଥୋପା ଥୋପା ହୋଇ
ଅଶୋକୁଁ କୁସୁମ କଢ
ଏ ଦୁଃଖ ନ ସହି ଅଶ୍ରୁ ଛଳେ ଅବା
ପଡୁଅଛି ତଳେ ଝଡ଼ ।

ଦରଫୁଟା କରି ଥୋଇଅଛ ପାଶେ
ମୁକୁଳ ବକୁଳ ମାଳ
ଏବେ ବେଗେ କିପାଁ ଶୋଇଲ ଶେଯରେ
ହୋଇ ସର ସର ଝାଳ ?

ଉତ୍ସବରେ ଭର ବସନ୍ତାଦି ଋତୁ
ତୁମ୍ଭ ଲାଗି ପ୍ରିୟ ସଖି
ମହାଶୂନ୍ୟ ହୋଇ ରହିବି କିପରି
ଏ ଘୋର ଯାତନା ସହି ?

ଏହି ସଖୀଗଣ କରନ୍ତି ରୋଦନ
ମୁହିଁ ଅଛି ପାଖେ ପୁଣି
ଶୋଉଛି କୋଳରେ ପ୍ରିୟତମ ସୁତ
ଯାଉଛ ଛାଡ଼ି ନ ଶୁଣି ।

ମୋ କଥା ପଡ଼ିଲେ ଡେରୁଥିଲ କାନ
ହେଲ କି ଏବେ ବଧିର ?
ଅବା ନିଷ୍ଠୁରତା ପ୍ରବେଶି ହୃଦୟେ
କଲାଣି ଅବୋଲକର ।

ସଙ୍ଗୀତେ ବିରତି ଭୂଷଣେ ଅପ୍ରୀତି
ବୈରାଗସ୍ପୃହା ବିନିବୃତ୍ତି
ହେବ ସିନା ମୋର ତୁମକୁ ନ ଦେଖି
ଆଜିଠାରୁ ଧୈର୍ଯ୍ୟଚ୍ୟୁତି ।

ସୁଦକ୍ଷା ଗୃହିଣୀ ରହସ୍ୟେ ସଙ୍ଗିନୀ
ବୁଦ୍ଧିଦାନେ ମନ୍ତ୍ରୀବତ
ପ୍ରିୟ ଶିଷ୍ୟା ପୁଣି ପ୍ରିୟତମା ରାଣୀ
ଥିଲ ତୁମ୍ଭେ ଅବିରତ ।

ବଳିଷ୍ଠ କୃତାନ୍ତ କେବଳ ତୁମ୍ଭଙ୍କୁ
ନେଉଅଛି ଟାଣି ବଳେ
ଛଡ଼ାଇ ନେବାକୁ ଯା କରୁଁ କାହାର
ସାଧ୍ୟ ନାହିଁ ମହୀ ତଳେ ।

ଅଖିଳ ସମ୍ପଦ ଥିଲେହେଁ ମୋହର
ସରିଲା ସକଳ ସୁଖ
ଆଜିଠାରୁ ମୋର ନ ସରିବ ଦିନ
ନଦେଖି ପଙ୍କଜ ମୁଖ ।

ଆହାରେ, ବିହାରେ, ବିଳାସେ, ବ୍ୟସନେ,
ରଞ୍ଜାଉଥିଲ ମାନସ
ଲିଭି ଯାଇଛି ତ ଲାବଣ୍ୟ ମୁହଁରୁ
ଦିଶୁନାହିଁ ଟିକେ ହସ ।

ଅନ୍ୟ ପ୍ରଲୋଭନ ନ ପାରିବ ଟାଣି
ତୁମ୍ଭ ଛଡ଼ା ଏ ଜୀବନେ
ତୁମ୍ଭଲାଗି ସିନା ସକଳ ସୌଭାଗ୍ୟ
ଭଣ୍ଡାରେ ଥିଲା ଯତନେ ।

ଭବ ମାୟା ଛାଡ଼ ଯାଉଛ ବାହାରି
ସ୍ୱର୍ଗସୁଖ ଲଭ ଆଶେ
କିନ୍ତୁ ସବୁ କଥା ହୁଅନ୍ତା ସୁଖ ବା
ମୁହିଁ ଥିଲେ ତୁମ୍ଭ ପାଶେ ।

ଅଳତା ରଂଜିତ କୋମଳ ଚରଣ
ଦିଶୁଛି ବିବର୍ଣ୍ଣ ତବ
କହ କେଉଁ ପରି ଯିବ ଚାଲି ଚାଲି
ନ କରି ଦୁଃଖାନୁଭବ ।

ଅଗୁରୁ ମିଶ୍ରିତ ସୁଗନ୍ଧ ସଲିଳ
କରୁଥିଲ ସଦା ପାନ
ଲଭିବ କି ସୁଖ ଦୂଷିତ ଉତପ୍ତ
ପ୍ରେତ ଜଳାଞ୍ଜଳି ଦାନ ।

ଆଗୋ, ସୁଧାହାସି କରୁଥିଲ ନିତି
କେତେ ରଙ୍ଗେ ପରିହାସ
ଭମେ ଭ୍ରମି ଭ୍ରମି ପଙ୍କଜିନୀ ବୋଲି
ଶେଷରେ ହେଲି ନିରାଶ ।

ଏ ରୂପେ ରଞ୍ଜନ ବିଳପନ୍ତେ ସ୍ମୃତି
ମହିଷୀଙ୍କ ଗୁଣାବଳୀ
କାନ୍ଦନ୍ତେ କି ଅବା ତରୁଲତାମାନେ
ପୁଷ୍ପରସ ଅଶ୍ରୁ ଢାଳି ।
ବାହୁନି ବାହୁନି କାନ୍ଦନ୍ତେ କି ହେବ
ଦଇବ ହୃଦ ପଥର
ସ୍ୱକାର୍ଯ୍ୟ ସାଧନେ ଉଚ୍ଚ ନୀଚ ଭବ
କରୁଛି ମନୁଁ ଅନ୍ତର ।
ନ ଥିଲେ ନିୟତି ଭୋଗନ୍ତେ କି ଏହା
ଅଜଙ୍କର ପ୍ରଣୟିନୀ
ସୁଗନ୍ଧା କି ନାଶ ତୁଷାର ପତନେ
ସୁକୁମାରୀ କମଳିନୀ ।

## ପ୍ର ଭା ତ

ପ୍ରସବିଲ କିରେ ବାହିନୀପତି (ସମୁଦ୍ର)
ଧ୍ୱାନ୍ତ (ଅନ୍ଧାର) ଧ୍ୱଂସକାରୀ ସପ୍ତସପ୍ତି (ସୂର୍ଯ୍ୟ)
ଦିଶଇ ଅରୁଣ ସିତ (ଶୁଭ୍ର) ଶରୀର
ହୋଇଅଛି ବୋଳା ଅବା ରୁଧିର
ତମ (ଅନ୍ଧାର) ସଙ୍ଗେ କେଳି କରି
ସର୍ବାଙ୍ଗେ ଅଙ୍ଗଜ (ରକ୍ତ) ବହୁଅଛି ପର
କ୍ଷତ ବିକ୍ଷତରୁ ଝରି !

ପ୍ରାଭାତିକ ବାୟୁ ବହିଲାଣି ଧୀରେ
ଉଠିଲେଣି ଶେଯୁଁ କିଏ ବା ମହୀରେ ।

କାଆ କାଆ ରବେ ଗଗନେ ବାୟସେ
ଚେତାଇ ଦିଅନ୍ତ ଲୋକଙ୍କୁ ରଭସେ[୧] ।

କମଳ ବିକଚ ପଡ଼ ରବିକର
ରଥାଙ୍ଗ[୨] ଦମ୍ପତି ଭେଟ ପରସ୍ପର ।

କ୍ଷପା[୩] କ୍ଷୟ ପ୍ରାପ୍ତେ ତାରକା ବିଲୟ
ଶୋକାକୁଳ ଇଂଦୁ ହେଲଣି ଅଥୟ ।

ଅବଲକ୍ଷ[୪] ବପୁ ଦିଶିଲାଣି ମ୍ଳାନ
ଓଲୋମ ବିଲୋମ ବିଧିର ବିଧାନ ।

ଦୁଅନ୍ତେ ଅସହ୍ୟ ଭାସ୍କର ମୟୂଖ[୫]
ଦିଶିଲା ବିବର୍ଣ୍ଣ କୁମୁଦିନୀ ମୁଖ ।

ଅନବଦ୍ୟ[୬] ବାୟୁ ବହି ନିରନ୍ତର
ଦିଏ ଦୋହଲାଇ ପ୍ରସୂନ[୭] ପ୍ରକର ।

ଉପହସିତ କି ହସ୍ତଶ୍ରୀ ହିମାଂଶୁ[୮]
ପ୍ରାଚୀ ଲଲାଟରେ ଦର୍ଶନେ ଉଷ୍ଣାଂଶୁ ।

ଉଦୟାଦ୍ରି[୧୦] ଶିଖେ ତରୁଣ ତପନ
ଦର୍ଶନେ ଉତ୍କଣ୍ଠ ନହେବ କାମନ ?

ସୁଧାଂଶୁ କରେ ମା ଥିଲା ଧବଳିତ
ଭାନୁ[୧୧] ଭାନୁ ବାଜି ହେଲା ଅରୁଣିତ ।

ହରିଦଶ୍ୱ[୧୨] ଡେଇଁ ଉଦୟ ପର୍ବତ
ନିଜ ବୃଦ୍ଧି ଲାଗି ହେଲେଣି ଉଦ୍ୟତ ।

ସରୋଜ[୧୩] ଆବଦ୍ଧ ଷଟ୍‌ପଦ[୧୪] ପ୍ରକର[୧୫]
ବନ୍ଧନରୁ ମୁକ୍ତ ବାଢି ଭନୁକର ।

ଦିବସ[୧୬] ନାୟକ ବୀକ୍ଷଣେ[୧୭] ଉଲୁକ
ପଚିହରି ମୁଦା[୧୮] ପାଲଟିଲ ମୂକ ।

ବିହଙ୍ଗ ବିରାବ ଶୁଭେ ଘନ ଘନ
ଭାଂଗିଗଲା ନିଦ ପ୍ରାଣୀଙ୍କ ବହନ ।

## ପୂର୍ଣ୍ଣିମା ସଂଧ୍ୟା

ଅତୁଷାରକର[୧୯] ଅସ୍ତାଚଳରେ
ଲୁଚିଯିବା କ୍ଷଣି ଯେଝା ନୀଡରେ
ଶକୁନ୍ତେ[୨୦] କୂଜନେ ପଶି ରଭସେ[୨୧]
ଶାବଙ୍କୁ ଖୁଆଇ ଦେଲେ ରଭସେ[୨୨]
ଆଣିଥିଲା ଖାଦ୍ୟତଳ
ଚକ୍ରଦମ୍ପତିଙ୍କି[୨୩] ଏ ପ୍ରଦୋଷ କାଳ
ହେଲଣି ଦୁଃଖଦାୟକ ।

---

୧ ଶୀଘ୍ର, ୨ ଚକ୍ରବାକ ଚକ୍ରବାକୀ, ୩ ଗାଢ଼, ୪ ଧଳା, ୫ କିରଣ, ୬ ନିର୍ଦ୍ଦୋଷ, ୭ ଫୁଲ ସମୂହ, ୮ ଚନ୍ଦ୍ର, ୯ ସୂର୍ଯ୍ୟ, ୧୦ ପର୍ବତ, ୧୧ ସୂର୍ଯ୍ୟ କିରଣ, ୧୨ ସୂର୍ଯ୍ୟ, ୧୩ ପଦ୍ମ, ୧୪ ଭ୍ରମର, ୧୫ ସମୂହ, ୧୬ ସୂର୍ଯ୍ୟ, ୧୭ ଦର୍ଶନେ, ୧୮ ହର୍ଷ, ସନ୍ତୋଷ, ୧୯ ସୂର୍ଯ୍ୟ, ୨୦ ପକ୍ଷୀମାନେ, ୨୧ ଶୀଘ୍ର, ୨୨ ଆନନ୍ଦରେ, ୨୩ ଚକ୍ରବାକ ଚକ୍ରବାକୀ ।

ଗୁହାଭ୍ୟନ୍ତରରୁ ତମଃପଟଳ[୧]
ଆସି ଘୋଡାଇଲା ଏ ଭୂମଣ୍ଡଳ ।
ପଦ୍ମିନୀ ବଦନ ବିଶେଷ ମଳିନ
ତେଜୋନିଧି ରବି ହୁଅନ୍ତେ ଲୀନ ।

ଦୈବ ହେଲେ ପ୍ରତିକୂଳ
ପାରିବ କି ଏଡ଼ ତା ଦାଉ ଜଗତେ
ସଗଇ ଅର୍ଥ ବିପୁଳ ।

ତମୋବ୍ୟାପ୍ତ[୨] ତମୀ[୩] ନକ୍ଷତ୍ରେ ପାଇ
ଝଟକିଲେ ନଭେ ଜ୍ୟୋତି ଦେଖାଇ
ଶୀତରଶ୍ମି[୪] କ୍ରମେ ହେଲେ ଉଦିତ ।
ଦିଶିଲା ଧରଣୀ ସିତେ[୫] ପ୍ଲାବିତ

ତମ ଗଲା ଅପସରି
ବୀଚିଜାଲ[୬] ପରି ତଳ ଉପରକୁ
ନଷ୍ଟନ୍ତ ଲୋକଙ୍କୁ ହରି ।

ପଗଚୀ ଲଲାଟେ ଚନ୍ଦନ ବିନ୍ଦୁ
ପରି ଦିଶୁଥିଲେ ଏ କାଳେ ଇନ୍ଦୁ
କୁମୁଦିନୀ[୭] ବାଳାସର ଭିତରେ
ଅନାଇଁ ଦେଲାଣି ହରଷ ଭରେ

ତୁହିନଦୀଧିତି[୮] ପ୍ରତି
ସୌଦାମିନୀ[୯] ବେଗେ ତା ଅଙ୍ଗ ସ୍ପରଶେ
କୋଣ୍ଡେ[୧୦] ମୋଟ କଳା ଛାତି ।

ଉଷ୍ଣାଂଶୁ[୧୧] ପୀଡତ ଓଷଧିପତି[୧୨]
ହୁଅନ୍ତେ ଉଦିତ ବାହିନୀପତି[୧୩]
ଉର୍ମ୍ମି ଭୁଜ[୧୪] ଟେକି ବାରକୁବାର
ପ୍ରଚଣ୍ଡ ଗର୍ଜନ କରୁଥିବାର

ଶୁଭିଲା ରତି ଭିତରେ
ଇନ୍ଦୁ ମଣ୍ଡଳକୁ ଗ୍ରାସ କରିବାକୁ
ପାଞ୍ଚିଲା କି ରୋଷଭରେ ।

## ବସନ୍ତ

କୁସୁମ ସମ୍ଭାର ଧରି ମଧୁ[୧୫] ଭୂରେ[୧୬]
ଏବେ ହେଲା ଉପସ୍ଥିତ
ପାଦପ ମଣ୍ଡଳ ନବ କିଶଳୟେ
ହୋଇଛନ୍ତି ବିଭୂଷିତ ।
ଆମ୍ବ ବଉଳିବା ଗନ୍ଧ ପାଇ ପିକ
ଆସି ରସାଳ ଡାଳରେ
ରହି ରହି କୁହୁ କୁହୁ ସ୍ୱନ କରି
ପ୍ରାଣୀଙ୍କ ମାନସ ହରେ ।
ସୁକୁଳ ବକୁଳ ସୁବାସ ଲଭିଣ
ମଧୁମକ୍ଷିକା ନିଚୟ
ଯାଇ ତା ଭିତରୁ ମକରନ୍ଦ ଆଣି
କରନ୍ତ ମଧୁ ସଞ୍ଚୟ ।
ମଧୁପାୟୀ ମଧୁ ପାନ ଲାଳସାରେ
ଗୁଣୁ ଗୁଣୁ ନାଦ କରି
ଉଡ଼ ଉଡ଼ ଯାଇ ନଳିନୀ କୋଷରୁ
ମକରନ୍ଦ ନିଏ ହରି ।
ରମଣୀୟ ଆଜ ହେଲେହେଁ ଶଶୀଙ୍କ
ସତୀଧର ପରିଚୟ
ଦେଇ କମଳିନୀ ମୁହଁ ମୋଡଲାକି
ଦେଖି ତାହାଙ୍କ ଉଦୟ ।
ଧୁଲୁ ଧୁଲୁ ବାୟୁ ଦକ୍ଷିଣ ଦିଗରୁ
ବହି ହୁଏ ରୁଚିକର
ବିଶୁଷ୍କ ଶରୀର ଦିଶିଲା ସୁନ୍ଦର
ଏବେ ପ୍ରାଣୀମାନଙ୍କର ।
ସୁରଭି (ବସନ୍ତ କାଳରେ) ସମୟେ
ସୁରଭି (ବଉଳ) ତରୁଏ
ଦିଶନ୍ତ ସୁରଭି (ମନୋହର) ଅତି
ସୌରଭେ ମୋହିତ ପଥିକ ପଟଳୀ (ସମୂହ)
ଧରନ୍ତ ମନ୍ଥର ଗତି ।

---

୧ ଅନ୍ଧାର ସମୂହ, ୨ ଅନ୍ଧାର ବ୍ୟାପ୍ତ, ୩ ରାତ୍ର, ୪ ଚନ୍ଦ୍ର, ୫ ଚନ୍ଦ୍ର କିରଣ, ୬ ଢେଉ ସମୂହ, ୭, କଇଁ, ୮ ଚନ୍ଦ୍ର, ୯ ବିଜୁଳି, ୧୦ ଫୁଟିଲା, ୧୧ ସୂର୍ଯ୍ୟ, ୧୨ ଚନ୍ଦ୍ର, ୧୩ ସମୁଦ୍ର, ୧୪, ଢେଉ, ୧୫ ବସନ୍ତ କାଳ, ୧୬ ପୃଥିବୀରେ ।

ପୁଷ୍ପେ ବିମଣ୍ଡିତ କିଂଶୁକ ପାଦପେ
ବନେ ଉଭା ଧାଡ଼ ଧାଡ଼
ନବ ବଧୂ ପରି ପିନ୍ଧିଛନ୍ତି ଅବା
ଲୋହିତ ବରଣ ଶାଢ଼ୀ ।

କରୁଛନ୍ତି କେଳି ଜଳପକ୍ଷୀମାନେ
ଠାବେ ଠାବେ ସରୋବରେ
ମାଟି ଫଗୁ ଖେଳେ ବାଳକ କଳାପ (ସମୂହ)
କ୍ରୀଡ଼ୁଛନ୍ତି ହର୍ଷ ଭରେ ।

ଧାନ ମୁଗ ମଣ୍ଡି ମଣ୍ଡି ଚଷାପୁଏ
ଭେକ ଶୋଷେ ଅତି ବ୍ୟସ୍ତ
ଉଦର ଦାଉକୁ ସମ୍ଭାଳି ନେବାକୁ
ଯୋଗୀଏ ଯିନା ଅଭ୍ୟସ୍ତ ।

ମକରନ୍ଦ ଆଶେ ଅନ୍ଧ ହୋଇ ଅବା
ମଧୁକର (ଭ୍ରମର) ଦଳେ ଦଳେ
ଗୁଞ୍ଜରି ମଧୁରେ କୁରୁବକ ପାଶେ
ଉଡ଼ୁଛନ୍ତି କୁତୂହଳେ ।

ବିକଚ ବକୁଳ ପୁଷ୍ପ ଝରିପଡ଼େ
ଏଣେ ପୁଣି ଅଳିତତି
କାନ୍ଦୁଛନ୍ତି କିରେ ଗୁଣୁ ଗୁଣୁ ସ୍ୱନେ
ଦେଖି ମହୁମାଛି ପଂକ୍ତି ।

ଉଦ୍ୟାନ ଭିତରେ ଫୁଟି ମଲ୍ଲିକାଏ
ରଞ୍ଜନ୍ତି ଦର୍ଶକ ମନ
ଚନ୍ଦ୍ରମା କାନ୍ତିକି ଧିକ୍କାରିଲା କିରେ
ତାର ଧବଳ ବରଣ !

ବସନ୍ତ ଉତ୍ସବେ ହାସ୍ୟ ରହସ୍ୟରେ
ମାତନ୍ତି ସକଳ ଯିନା
ନମିଳିବ ମୁକ୍ତି ଏ ଭବ ସାଗରୁ
ପରମେଶ ପୂଜା ବିନା ।

## ବର୍ଷାକାଳ

ରସାରେ ପାବୃଷ କାଳ ପ୍ରବେଶ
ପ୍ରସୂତ[1] ମଣ୍ଡିତ ଶିଖୀ[2] ପ୍ରଦେଶ
ସରୋବରେ ମୋଦେ ଖେଳେ ବରଟା[3]
ଘନ ଦେଖି ଶିଖୀ[4] ଦେଖାଏ ଛଟା
ଅଜମ୍ଭ[5] ଜଳ ଭିତରେ
ଟିପି ଟିପି ନାଦେ ବଜାଉଛି ଟିପା
ନିଶି ଯାପି ଉଜାଗରେ ।

କେବେ ଝିପି ଝିପି କେବେ ଆସାର[6]
ହୋଇ ପରିପୂର୍ଣ୍ଣ ନୀରେ କାସାର[7]
ବସିଛି ତ୍ରିଶଙ୍କୁ[8] ତରୁ ଡାଳରେ
ଲଖିଅଛି ମନ ଘନ[9] ରସରେ
ପ୍ରିୟକ[10] ପ୍ରିୟକ[11] ରସି
ଗୁଞ୍ଜରି ପ୍ରିୟକ[12] କରେ ମଧୁପାନ
ତଥି ପରେ ମୋଦେ ବସି ।

ଘନ ଘନ ଅବ୍ଦ[13] ଶବ୍ଦ ଶ୍ରବଣେ
ରବିଲା ଡାହୁକ ବାଉଁଶ ବଣେ
ବିଟପୀ[14] ଲତାଙ୍କ ଅଙ୍ଗ ଲୁଚାଇ
ଘନ ପଲ୍ଲବ କି ଦେଲା ଘୋଡାଇ !
ନର୍ତ୍ତକ[15] କୂଟ ଦେଶରୁ
ପୁଲକେ ବାହାରି ନର୍ତ୍ତକୀ[16] ସହିତ
ପକାଉଛନ୍ତି ଝଙ୍କ ତରୁ ।

ଦେଖି ଶକ୍ର ଚାପ ଘନ କୋଳରେ
ନାଚି ଉଠିଲେଣି ପିଲେ ମୋଦରେ
ମାରୁଛି ବିଜୁଳି ଥରକୁ ଥର,
ବର୍ହୀ[17] ବର୍ହ[18] ଟେକି ଝାଡିଲା ପର
ବହି କହଲା ପବନ
ଆନୂପାନୂପଙ୍କୁ[19] ଦେଲା ସୁଖଯିନା
କମ୍ପେ ଘନ ଅପଘନ ।

---

୧ ଫୁଲ, ୨ ବନ, ୩ ରାଜହଂସ, ୪ ମୟୂର, ୫ ବେଙ୍ଗ, ୬ ମୂଷଳ ଧାରାରେ ବୃଷ୍ଟି, ୭ ସରୋବର, ୮ ସ୍ତବକ, ୯ ପାଣି, ୧୦ କଦମ୍ବ ଗଛ, ୧୧ ଫୁଲ, ୧୨ ଭ୍ରମର, ୧୩ ମେଘ, ୧୪ ବୃକ୍ଷ, ୧୫ ହାତୀ, ୧୬ ହାତୁଣୀ, ୧୭ ମୟୂର, ୧୮ ପୁଚ୍ଛ, ୧୯ ଆନୁସ + ଆନୂପ = ଆନୂପାନୂପ—ମହାଷ, ଗଣ୍ଡା ।

ଦନ୍ତୀ[1] ଦେଖୁଁ ବହେ ଝରଣା ଜଳ,
ପିଇଲେ ମଦାଏ ପେଟ ଶୀତଳ
ଶତଧାର[2] ସ୍ୱନେ କମ୍ପଇ ଧରା
ଦିନସାରା ପୁଣି ନ ପଡେ ଖରା
ଅନିଳ ବଳ ଦେଖାଇ
ଭାଂଗି ଘରଦ୍ୱାର ମହା ମହା ଦ୍ରୁମ
ଚଳିଲେ ଦେଲା ଉପାଇ ।

କାହୁଁ ଅଇଲା ଏ ବାଦଲ କାଳ
ଭୁଜଙ୍ଗମାନଙ୍କ ହେଲାଣି କାଳ[3]
କଷ୍ଟଜୀବୀତତି ପେଟ ବିକଳେ
ମୁଠେ ଅନ୍ନ ପାଇଁ ଗଡନ୍ତ ତଳେ
ବୁଝାମଣା ଦଇବର
କେ ବୁଝିବ ଭବେ ଏ କପଟ ରୀତି
ତା ହୃଦ ସଦା ପଥର ।

କୀନାଶ[4] ମାନସ ବଡ ଆନନ୍ଦ
ବର୍ଷିଲେ ମଦାଏ ଲାଗିବ ଖନ୍ଦ
ମନ ଫୁଲାଣିଆ ସଙ୍ଗୀତ ଗାଇ
ଲାଗିଛି କେଦାରେ କିଛି ନ ଖାଇ
ସମ୍ଭାଳି ଜଠର ଦାଉ
ଯେତେବେଳେ ଯାହା ମିଳେ ତା କପାଳେ
ଗିଳିଦିଏ ଟାଉ ଟାଉ ।

କେତେ ତୃଣଜୀବୀ ହରଷେ ଅତି
ଭ୍ରମିଲେଣି ଧରଦେଶେ ସଂପ୍ରତି
ତରବରେ ଶସ୍ୟ ଦିଅନ୍ତ ଖାଇ
ଦେଖିଲେ ମଣିଷ ଯା'ନ୍ତ ପଳାଇ
ଦୁର୍ବଳର ସଦା ଡର
ଦେଖିଲେ ବଳୁଆ ଛପିଯାଏ କାହିଁ
ହେବ ବୋଲି ହରବର ।

ଆସିଲାଣି ବଢ଼ ଉଛୁଳି କୂଳ
ଫୋପାଡେ ଉପାଡ ବିଟପୀ ମୂଳ
କେକାରବ ଶୁଣି ଭୁଜଗକୁଳ
ଲୁଚି ରହିବାକୁ ହେଲେ ଆକୁଳ
କୋଟର ଭିତରେ ପଶି
ଉଣ୍ଡୁ ଛୁନ୍ତ ସଢ ରଜନୀ ପ୍ରବେଶେ
ପଳାଇବେ ଧୀରେ ଖସି ।

ନଦୀ କୂଳେ ଥିବା କେତେ ଗ୍ରାମରେ
ପଶିବାରୁ ପାଣି ରତି ଅଧରେ
ଜୀବନଯାପନ ହେଲା ଦୁଃସହ
ବିକଳେ ରଡନ୍ତ ଛାଗ ନିବହ[5]
କିଛି ନାହିଁ କାର ହସ୍ତେ
ପୂର୍ବଜନ୍ମ କୃତ ଫଳ ଅନୁଯାୟୀ
ଭୋଗନ୍ତ ଫଳ ସମସ୍ତେ ।

ପ୍ରକୃତିର ଦୃଶ୍ୟ କରି ଦର୍ଶନ
ଲାଖୁ ନାହିଁ ତହିଁ ନିରନ୍ନମନ
ଓଲଟ ପାଲଟ ଦୁନିଆଁ ରୀତି
ଏଥିଲାଗି କିମ୍ପା ଲାଗିଛି ପ୍ରୀତି
ଅଛି ଯା କପାଳେ ଯାର
ମନ୍ଦ ତେଜି ସିନା ଆଚରିଲେ ଭଲ
ମିଳିବ ସୁଖ ଅପାର ।

ଜଳେ କରୁଥିବା ଶକଳୀ କେଳି
ଦର୍ଶନେ ପିଲାଏ ବାନ୍ଧଲେ ମେଳି
ଘଡ଼କେ ଆନନ୍ଦ ଘଡ଼କେ ଦୁଃଖ
କେ ପାଏ ସଂସାରେ ଅନିଶ ସୁଖ
ଧରିବାକୁ ମୋଦେ ମୀନ
ଆପଣା ବୁଦ୍ଧିରେ ଯାଉଛି ସଂସାରେ
ଗରିବ ବାପୁଡା ଦିନ ।

---

୧ ବନ, ୨ ବଜ୍ର, ୩ ଯମ, ୪ ଚଷା, ୫ ସମୂହ ।

(ପାଣ୍ଡବମାନଙ୍କ ବନବାସ ପ୍ରାରମ୍ଭରେ ଦ୍ରୌପଦୀ ଯୁଧିଷ୍ଠିରଙ୍କୁ କହୁଛନ୍ତି :– ଭୀମାର୍ଜୁନ, ବ୍ୟାସ କଥାହେବା ପରେ ଅର୍ଜୁନ ତପସ୍ୟା କରିବାକୁ ଗଲେ)

(ରାଗ- ରସକୁଲ୍ୟା)

ପ୍ରେଷ୍ୟ[୧] ଆସ୍ୟରୁ ଦ୍ରୌପଦୀ
ଶ୍ରବଣେ ରେଷେ ସପଦି[୨]
କୌନ୍ତେୟଙ୍କୁ ଦୋଷ ଲଦି ଭଷେ ଏସନେ,
ନିତ୍ୟ ଏଣ ଏଣୀ[୩] ନାଶି   ଅଦ୍ଭୁତ ପାପରାଶି
ପାଶୀ[୪] ପରି ପିଶିତାଶୀ[୫] ହେଲୁ କାନନେ
ସସାଗର ଧରା ହରାଇ
ଅକ୍ଷକ୍ରୀଡେ[୬] ନିଜ ପତି ଦେଲ ଲିଭାଇ ।

ବିମୃଶ୍ୟକାରୀ ମାନବ   ଜଗେ ସଦା ତା ବିଭବ
ନ ଲଭଇ ପରାଭବ କେବେ ସଂସାରେ
କପଟୀ ରଖି କପଟ   ଲଟାଇଣ ଲଟପଟ
ମଣିଷକୁ ଛଟପଟ କରେ ବେଭାରେ
ତୁମ ଭିନ୍ନ କିଏ ଭବରେ
ମଙ୍ଗଳାକୁ[୭] ଦିଏ ଛାଡ ପର ହାତରେ ।

ଶୟନୁ ବନ୍ଦୀ ଗାନରେ   ଉଠେ ଯେଝୁ ପ୍ରତ୍ୟୁଷରେ
ଅଶିବ[୮] ଶିବାରୁତରେ[୯] ନିଦ୍ରାବର୍ଜନ
ନଦିଏ କି ଖେଦ ମନେ   ଆବୋରି ଚୀର ବସନେ
ପଲଲ ପଳ[୧୦] ଅଶନେ[୧୧] କାଳ ଯାପନ
କେଉଁ ଜନ ଏହା ସହିବ ?
ଘଟାଇଛି ପୂର୍ବ ପାପୁଁ ଏହା ଦଇବ ।

ଆଚରିବା ସଦା ଶମ   ଅଟଇ ଋଷି ଧରମ
ଯୁଯୁଧାନ[୧୨] ପରାକ୍ରମ ମନୁ ମତରେ
ତବାଦେଶ ମାନି ମାନି   ହେଉଅଛି ମାନହାନି
ହୋଇ ଏତେ ମହାଜ୍ଞାନୀ ଶତ୍ରୁ ଭୟରେ
ଯାପିବା କି ଏପରି କାଳ ?
ଯୁଦ୍ଧ ଲାଗି ଭୀମ ଏବେ କରନ୍ତୁ ଆଳ ।

ଶତ୍ରୁଠାରୁ ପରାଭବ   ଲଭି ଦୁଃଖ ଅନୁଭବ
ନ କଲେ ଭବେ ମାନବ କାର୍ଯ୍ୟ ସାଧନେ
ଜଟାଧର ହୋଇ ବନେ   ପ୍ରାଣ ଧରି ଫଳାଶନେ
କାଳଯାପି ପ୍ରଶମନେ[୧୩] ପ୍ରଶାନ୍ତ ମନେ
ରଥଧ୍ୱଜ[୧୪] କାର୍ମୁକ[୧୫] ଛାଡ
ହବି[୧୬] କରୁ ହୁତାଶନେ ହବି[୧୭] ଅଡାଡ ।

ସଦା ନୀତି ପାଳି ପାଳି   ନୀଚଠାରୁ ଶୁଣି ଗାଳି
ବଦନେ ବୋଳୁଛ କାଳି ଦେଖନ୍ତି ଲୋକେ
ନାନା ନିର୍ଯ୍ୟାତନା ପାଇ   ରହିଛି ପ୍ରାଣ ନଯାଇ
ଭୀମ ଭୁଜବଳ ଥାଇ ଜୀବନେ ଶୋକେ
ଦ୍ରୁପଦ ନନ୍ଦନୀ କାନନେ
ଯାପୁଅଛି ପୂର୍ବ କଥା ପକାଇ ମନେ ।

ପୌରୁଷ ହୀନତା ଭବେ
ଦିଅଇ ପ୍ରେଷ[୧୮] ମାନବେ
ଜନ୍ମାଏ ବିଘ୍ନ ଗୌରବେ ସବୁ ଯୁଗରେ
ଅବିରତ ନେଲେ ସର୍ଗ[୧୯]   ବଢଇ ମଣିଷ ସର୍ଗ[୨୦]
ଆଳସ୍ୟ କରିଲେ ସର୍ଗ[୨୧] ଭୟ ଯୁଦ୍ଧରେ
ମିଳେ ଯଦି ଆଦେଶ ତବ
ଧଇଏ ଆଣିବେ ଜିଣି ହୃତ ବିଭବ ।

---

୧ ସ୍ୱର, ୨ ଶୀଘ୍ର, ୩ ମୃଗମୃଗୀ, ୪ ବ୍ୟାଧ, ୫ ମାଂସଭୋଜୀଙ୍କ, ୬ ପଶା, ୭ ପଦ୍ମବକ୍ତ୍ରା ସ୍ତ୍ରୀ, ୮ ଅରଙ୍ଗଳ, ୯ ବଲୁଆ ଢୋବାଲରେ, ୧୦ ମାଂସ, ୧୧ ଭୋଜନେ, ୧୨ ଛଦ୍ମସ୍ଥ, ୧୩ ଶାସ୍ତ୍ରରେ, ୧୪ ଧ୍ୱଜଚିହ୍ନ, ୧୫ ଧନୁ, ୧୬ ଯଜ୍ଞ, ୧୭ ଘିଅ, ୧୮ କ୍ଲେଶ, ୧୯ ଯତ୍ନ, ୨୦ ଉତ୍ସାହ, ୨୧ ତ୍ୟାଗ ।

ମାଣ୍ଡିଆ ଜାଉରେ ପେଟ ପୂରାଇ
କରୁଥିଲେ କାମ ରାତି ପୁହାଇ
ନ ଥିଲା ଏ ଆଡ଼ମ୍ବର
କୋମଳ କଥାରେ ସକଳ ମାନସ
ତୋଷୁଥିଲେ ନିରନ୍ତର ।

କୋଠଘରେ ରଖି ଗାଆଁ ମଝିରେ
ଭାଗବତ ଶୁଣୁଥିଲେ ରାତିରେ
ନଥିଲା କପଟ ନ ଥିଲା ଛନ୍ଦ
ଖେଳୁଥିଲା ମୁଖେ ସଦା ଆନନ୍ଦ
କାହିଁ ସେ ସୁଖ ସମୟ ?
ନୈରାଶ୍ୟ ପବନ ବହୁ ବର୍ତ୍ତମାନ
ମାନସ କରେ ଅଥୟ ।

ପ୍ରଭୁ ନାମ ଧରି ଉଠି ଶେଯରୁ
ଅବର୍ଜନା ପୋଛୁ ହୃଦ କନ୍ଦରୁ
ତାଙ୍କର ମହିମା କରି କୀର୍ତ୍ତନ
ହସ ହସ ମୁଖେ ଯାଉ ଜୀବନ
ଧର୍ମପ୍ରାଣ ଏ ଭାରତ
ଅନ୍ୟାୟକୁ ତିଳେ ନ ଦେଇ ପ୍ରଶ୍ରୟ
ଜନ ସେବା ହେଉ ବ୍ରତ ।

ମନ ଘୋଟକକୁ କରି ଆୟତ୍ତ
ବିବେକ ଲଗାମ ଧରି ସତତ
ସ୍ୱାର୍ଥ ଦେଖାଇବ ଯାହାକୁ ବାଟ
ଲାଗିଥିବ ତାର ଜୀବନେ ନାଟ
ବିରୁଦ୍ଧ ଚଳିବ ଭବେ
ନୋଇଁବାକୁ ମୁଣ୍ଡ ନପଡ଼ିବ କେବେ
ଆପଦ ନଥିବ ଲବେ ।

ନୀଚ କରମରୁ ଯାଅ ଓହରି
ପାଇବ ପ୍ରଶଂସା ପଛେ ଯେପରି
ଆଦର୍ଶ ମଣିଷ ହେବାକୁ ଭବେ
ଲୋଭ ହିଂସା ହୃଦେ ନରଖି ଲବେ
ଜୀବନ କରି ସାର୍ଥକ
ଦୁଃଖୀରଙ୍କୀଙ୍କର ପେଟ ଚିନ୍ତା ସଦା
ସତ୍ୟର ହୋଇ ପୂଜକ ।

ମୋ ଦେଶର ବୁଦ୍ଧ ମୋ ଦେଶ ଗାନ୍ଧି
ସକଳ ମାନସ ରଖିଲେ ବାନ୍ଧି
ଶିଖାଇ ଥିଲେ ଯା ଗଲା ପାସୋରି
ଚଉଦିଗେ ଦେଖ ଦୁର୍ନୀତି ଭରି
ଘୃଣା କଥାରେ ମନ
ନଦେଇ କିଏ ସେ ନୂଆ ଫେସନରେ
ଅତିବାହିତ ଜୀବନ ।

ବିଳାସ ବ୍ୟସନେ ନ ଦେଇ ମନ
ଭକ୍ତିରସ ପାନେ ଯାପ ଜୀବନ
ଆପଦ ପଡ଼ିଲେ ନୋହି ବିବ୍ରତ
ଧୈର୍ଯ୍ୟ ଧରିଥିବ ଅନବରତ
ସଂଯମ ସଦା ଆଚରି
ଚଳିଲେ ଜୀବନ ହେବ ସୁଖମୟ
ନୀରୋଗରେ ଯିବ ତରି ।

ମଇଳା ଯେପରି ଧୂଆ ଦେହରୁ
ଠକାମି ଭଣ୍ଡାମି ପୋଛ ହୃଦରୁ
ଯା ନାମ ଧଇଲେ ମିଳେ ମୁକତି
ଶ୍ରୀଚରଣେ ତାର ରହିବ ମତି
କଢ଼ାଇବ ବାଟ ଧର୍ମ
ଭବରଙ୍ଗ ଭୂମି ଛାଡ଼ି ଯିବ ଯେବେ
କରି ସତତ ସୁକର୍ମ ।

ନ ପୂରିଲେ ପେଟ ଉପୁଜେ କଳି
ଦେଶକୁ ଗଢ଼ିବ ଚିନ୍ତା କି ଭଳି
କ୍ଷେପାତ ହେବ ନରହୁ ଲବେ
ବିରାଜୁ ଏକତା ଦେଶରେ ଜବେ
ନ ରହୁ ସ୍ୱାର୍ଥ ମନରେ
ଏ ମାଟିରେ ବଢି ଏ ମାଟି ମହତ୍ତ୍ୱ
ଗାଅ ଅମୃତ କଣ୍ଠରେ ।

ଯୌବନ ତରଙ୍ଗେ ଭାସି ନଯାଇ
ଗଢ଼ିବ ଜୀବନ ହାତ ମିଶାଇ
ନମଣିବ କେବେ କାହାକୁ ସାନ
ସମାଜ କଲ୍ୟାଣେ ସର୍ବେ ସମାନ
ପାଦମୁଣ୍ଡ କାହିଁ ଭିନ୍ନ

ସେମାନେ ଅତି ସାହସୀ
ମୁହୂର୍ତ୍ତକେ ଦେବେ ଗ୍ରାସୀ
ଦୁର୍ଯୋଧନ ସୈନ୍ୟଗଣି କାହିଁକି ଭୟ
ଭୀରୁକୁ[୧] ଭୀରୁକ[୨] ଧାର   ଏ ସିନା ଭବ ବେଭାର
ନକଲେ ଆଶୁ[୩] ବିପ୍ଳବ ଅଗତି ଜୟ
ହେବ ନାହିଁ କେବେ ସମ୍ଭବ
ଦିନୁଁ ଦିନ ଶକ୍ତିଶାଳୀ ହେବ ଶାତ୍ରବ[୪] ।

ଏ ଅନ୍ତେ ପ୍ରେମନନ୍ଦନ[୫]   ଶୁଣି ପାର୍ବତୀ[୬] ବଚନ
ଚାହିଁ ଅଗ୍ରଜ ବଦନ ଭଷିଲେ ଖର
ନକରି କେବେ ଖଣ୍ଡନ   ବିନା ଯୁଦ୍ଧେ ଦୁର୍ଯୋଧନ
କରିବ ପ୍ରତି ଅର୍ପଣ ରାଜ୍ୟ ଆମର
ନେଇଅଛି ତାହା ବ୍ୟାଜରେ[୭]
ହେବ ନାହିଁ କେବେ ଲବ୍‌ଧ ବିନା ଉର୍ଜ୍ଜରେ[୮] ।

ସର୍ଗହୀନ[୯] ମଣିଷର   ନରହେ ଐଶ୍ୱର୍ଯ୍ୟ ଭର[୧୦]
ବ୍ୟସନୀ[୧୧] ନ ହୋଇ ନର ଚଳିବ ଭବେ
ଆଚରିଣ ଭଣ[୧୨] ପାଶ[୧୩]
ଭୂତି[୧୪] କରି ସବୁ ଗ୍ରାସ
ଦୁଃଖ ସାଗରେ ସନ୍ୟାସ[୧୫] କରି କୌରବେ
ଲଭୁଛନ୍ତି ମହା ଆନନ୍ଦ
ଦିଏ ପୁଣି ନିତ୍ୟ ମନ୍ତ୍ର ଶକୁନି ମନ୍ଦ ।

ଅସାବଧାନ ଜନିତ   ମୋହକୁ ଛାଡ଼ ତ୍ୱରିତ
ହେବେ କିଭଳି ନାଶିତ ଶାତ୍ରବେ ତବ
କଲେ ତାର ପ୍ରତିକାର   ହେବ ଲଘୁ ଦୁଃଖ ଭର
ଛୁଟିବ ମନୁଁ ବିକାର ଲଗୁ ଆହବ[୧୬]
ଭୀମାର୍ଜୁନ ବଳ ପରୀକ୍ଷା
ହେଲେ ସିନା କୌରବେ ପାଇବେ ଶିକ୍ଷା ।

ଦୁର୍ଯୋଧନ ରଖି ଦ୍ୱେଷ   ଦେଉଛି ବହୁଧା କ୍ଲେଶ
ପାଶୋରି ନଯାଇ ଲେଶ ଧାରେ ମାନସ
ପୌରୁଷ ଅବଲମ୍ବନ   କରି ତାର ଗରଜନ
ଛଡ଼ାଇ ପବ[୧୭] ନନ୍ଦନ ଲଭିବ ଯଶ
ବିପକ୍ଷର ଦେଖି ଉନ୍ନତି
ସହିବ କି କେତେବେଳେ ଉଦ୍‌ଯୋଗୀ ମତି ।

ବସୁନ୍ଧରା ତୃଣପରି   ପରାକ୍ରମ ମନେ କରି
ଅବମାନନା ନ ଡରି ଶତ୍ରୁ ସଂହାରେ
କରେ ପ୍ରଗାଢ଼ ଯତନ   ହୋଇ ଅତି ଅସହନ
ସାହସ[୧୮] ଅବଲମ୍ବନ କରି ପ୍ରହାରେ[୧୯]
ରଖଇ କୀରତି ଭୁବନେ
ଅନୁସରି ତ୍ରିବର୍ଗଙ୍କୁ[୨୦] ସଦା ଜୀବନେ ।

ଦ୍ୱିଷତ[୨୧] ବିନାଶ ଗତି   ଦେଖେ ସଦା ସୁଧୀମତି
ନ ବିଚାରି ନିଜ କ୍ଷତି ମର ସଂସାରେ
ତୁମକୁ ଦେଖି ବିପନ୍ନ   ଅବସନ୍ନ ମୋର ମନ
ନକରି ଟିକେ ଚିନ୍ତନ ଶତ୍ରୁ ସଂହାରେ
ପଉରୁଷ କରି ବିନଷ୍ଟ
ଜାଣି ଜାଣି ବନ ମଧ୍ୟେ ପାଉଛୁ କଷ୍ଟ ।

ପାବନି ବଚନ ଶୁଣି   କହନ୍ତି କୌନ୍ତେୟ[୨୨] ଗୁଣୀ
ତାଙ୍କ ଗୁଣ ଗୁଣି ଗୁଣି ହୋଇ ଆନନ୍ଦ
ତୁମ ବିନା କେହି ଭବେ   ସମର୍ଥ ହେବ କି ଲବେ
କହିବାକୁ ଚଉରବେ ନ ରଖି ଛନ୍ଦ
ଯୁକ୍ତିଯୁକ୍ତ ଉକ୍ତି ତୁମ୍ଭର
ଶ୍ରବଣେ ମୋହିତ ହେଲା ଚିତ୍ତ ଆମ୍ଭର ।

୧ ଓ ୨ ଚଣ୍ଡା, ୩ ଶୀଘ୍ର, ୪ ଶତ୍ରୁ, ୫ ଭୀମ (ପବନର ପୁଅ), ୬ ଦ୍ରୌପଦୀ, ୭ କପଟରେ, ୮ ବଳରେ, ୯ ଉତ୍ସାହହୀନ, ୧୦ ପୂର୍ଣ୍ଣ, ୧୧ ମୃଗୟା, ପଶା ଖେଳିବା, ମଦ ପିଇବା, ଅଳସୁଆ ପ୍ରଭୃତି ବ୍ୟସନୀ, ୧୨ ଛନ୍ଦ, ୧୩ ପଶା, ୧୪ ସମ୍ପତ୍ତି, ୧୫ ପକାଇ, ୧୬ ଯୁଦ୍ଧ, ୧୭ ବାୟୁ ନନ୍ଦନ ଭୀମ, ୧୮ ବଳ, ୧୯ ମୁଷ୍ଟିରେ, ୨୦ ଆସ୍ତ, ବ୍ୟସ୍ତ ବୃଦ୍ଧି, ୨୧ ଶତ୍ରୁ, ୨୨ ଯୁଧିଷ୍ଠିର ।

ଜିଘାଂସୁ[୧] ପ୍ରବଳ ଅତି    ହେବା ହେତୁରୁ ସଂପ୍ରତି
ଆମର ନାହିଁ ଶକତି ରଣ କରଣେ
ପୂର୍ବୁଁ ଭାବି ଲଭ କ୍ଷତି    କରିଲେ କରମତତି
ନଘଟେ କେବେ ବିପତ୍ତି ଦଣ୍ଡ[୨] ପ୍ରାଙ୍ଗଣେ
ବିଧିଯୁକ୍ତ ନ ହେଲେ ସଦା
ସିଦ୍ଧି ଲଭ ନ ଘଟଇ କାର୍ଯ୍ୟରେ କଦା ।

ଯେମନ୍ତ କେଦାରେ ଚଷୀ    ସିଂଚି ସିଂଚି ଜଳରାଶି
ଶସ୍ୟ ରଖି ଘାସ ନାଶି ଫଳାଏ ଫଳ
ତେମନ୍ତ ବିବେକ ଜଳ    ହୃଦ କ୍ଷେତ୍ରେ ଅବିରଳ
ସେଚନ କଲେ ସଫଳ କାର୍ଯ୍ୟ ସକଳ
ବର୍ଗ[୩] କରି ଚିତ୍ତୁଁ ଅମର୍ଷ[୪]
ପ୍ରବେଶ କର ସଂଗ୍ରାମେ କରି ବିମର୍ଶ[୫] ।

ଶତ୍ରୁ ଅଭ୍ୟୁଦୟ ହେରି    ଯାଅ ହୃଦେ ଶାନ୍ତ ବହି
ସତତ ସତର୍କ ରହି ସୁଧୀ ପୁରୁଷ
ଆପଣା ଶରୀରୁଁ ଜାତ    କୋପ ନକଲେ ନିପାତ
ଘଟଇ କର୍ମେ ବ୍ୟାଘାତ ଉକ୍ତି ପରୁଷ
ନକହି ମାରୁତି ନନ୍ଦନ
ଚପଳ[୬] ଇନ୍ଦ୍ରିୟଚୟ କରୁ ଦମନ ।

ଦେଖି ଦୁର୍ଯ୍ୟୋଧନ ଧନ    ହୋଇ ସନ୍ତୋଷ ଭଜନ
ନ୍ୟାୟପଥୁଁ ତେଜି ମନ କେତେ ଭୂପାଳ
ସଦା ସ୍ୱାର୍ଥ ସିଦ୍ଧି ପାଇଁ    କପଟ ସ୍ନେହ ଲଗାଇ
ତାର ସନ୍ନିଧାନେ ଯାଇ ଯାପନ୍ତି କାଳ
ଆରମ୍ଭିବ ଯେବେ ପ୍ରସର[୭]
ଧରିବେ ମୋ ପକ୍ଷ ଆଶୁ ଯୋଦ୍ଧା ପ୍ରବର ।

କର୍ତ୍ତବ୍ୟକୁ ହେଳା କରି    ଅକର୍ତ୍ତବ୍ୟ ଅନୁସରି
ଅନ୍ୟାୟ ମାର୍ଗେ ବିଚରି ରାଜ ଶାସନ
ତିଷ୍ଠିକି ବହୁକାଳ    ସ୍ୱତଃ ଉଠି ପ୍ରଜାଜାଳ[୮]
ଜାଳି ବିଦ୍ରୋହ ଅନଳ ଦ୍ୟନ୍ତି ପୀଡ଼ନ
ଅନ୍ତରଙ୍ଗ ଅମାତ୍ୟଚୟ
କରନ୍ତି ଅସହଯୋଗ ହୋଇ ନିର୍ଭୟ ।

ଜଗତେ ବିସ୍ତରବାନ    ଉଦ୍ଧତ ଶତ୍ରୁ ଉତ୍ଥାନ
ଅବା ତା'ର ଅଭିମାନ ତୁନୀ ଦର୍ଶନେ
ଅବିମୃଶ୍ୟ କାର୍ଯ୍ୟତତି    କରି ଅପସବ୍ୟ[୯] ଗତି
ଆଣେ ନିକାମ[୧୦] ବିପତ୍ତି ଦେଖୁ ଭୁବନେ ।
ଯଥା କାଳ ଜଗି ରହିବ
ପାଦାଘାତ ପ୍ରହାରକୁ ସବୁ ସହିବ ।

ହୋଇଲେ ଇନ୍ଦ୍ରିୟ ବଶ    ଅବଶ ସଦା ଅବସ[୧୧]
ବଢେ ତା'ର ଅପଯଶ ଲୋକ ମୁଖରେ
ପକ୍ଷପାତ ବ୍ୟବହାର    ଯଶୋଲିପ୍ସୁ ପରିହାର
କଲେ ଅରାତି ସଂହାର ସହଜ ଖରେ
ବିଚିତ୍ର ଏ ଭବ ବେଭାର
ହୁଡ଼ିଲେ ମଣିଷ ଥରେ ଦୁଃଖ ଅପାର ।

ଏକାଳେ ଆସି ଦାବନ[୧୨]    ସହସା ଦେଲେ ଦର୍ଶନ
ପ୍ରବେଶି ଦ୍ୱଇତବନ ଯୁଧିଷ୍ଠି ପାଶେ
ଅଶ୍ରୁଲୋଚନା ଦ୍ରୌପଦୀ    ଆଶ୍ରମୁଁ ଆସି ସପଦି[୧୩]
ଭକ୍ତିଭରେ ତାଙ୍କୁ ବନ୍ଦ କୌରବ ନାଶେ
ନିବେଦନ୍ତେ ବିଷାଦ ଭରେ
ଆଶ୍ୱାସି କହିଲେ ଋଷି ତାଙ୍କୁ ଆଦରେ ।

୧ ଶତ୍ରୁ, ୨ ଯୁଦ୍ଧ ଭୂମିରେ, ୩ ତ୍ୟାଗ, ୪ କ୍ରୋଧ, ୫ ବିବେଚନା, ୬ ଚଞ୍ଚଳ, ୭ ଯୁଦ୍ଧ, ୮ ସମୂହ, ୯ ବିପର୍ଯ୍ୟସ୍ତ, ୧୦ ଯଥେଷ୍ଟ, ୧୧ ରାଜା, ୧୨ ବ୍ୟାସ, ୧୩ ଶୀଘ୍ର ।

"ଅସାଧୁ ସଂସର୍ଗ ଭବେ    ପତନ ଆଣଇ ଜବେ[୧]
ନୁହ ଜୟ ଆଶା ଲଭେ ନଦିଅ ମନେ
ଦୁର୍ଯ୍ୟୋଧନ ଦୁଃଶାସନ    ମିଶି ଭୟର ନନ୍ଦନ
ସତତ ସନ୍ଦେହାପନ୍ନ ଇଷ୍ଟ ସାଧନେ
ଇହପର ବିଚାର କରି
କରିବ ସଂସାରେ କର୍ମ କେବେ ନ ଡରି ।

ଦୁର୍ଯ୍ୟୋଧନ ମହାକୃତୀ[୨]    ପ୍ରତିହିଂସା ତା ପ୍ରବୃତ୍ତି
ବଢ଼ୁଛି ଏବେ ତା ଗତି ଅଛି ତା କ୍ରମ
ଭୀଷ୍ମ ଦ୍ରୋଣ କର୍ଣ୍ଣବୀରେ    ରହିଛନ୍ତ ତା ସାଥିରେ
ପରାକ୍ରମରେ ମହୀରେ ନୁହ କେ ସମ
ନ କଲେ ପୂର୍ବରୁ ପ୍ରୟାସ
ଘଟିବ ମନସି[୩] ପାଣ୍ଡବଙ୍କ ପର୍ଯ୍ୟାସ[୪] ।"

"ଅନାଇ କପିକେତନେ[୫]    ଭଟିଲେ ତହୁଁ ପାବନ[୬]
କବିବ ଯୋଗ ସାଧନ ଏକ ଲକ୍ଷ୍ୟରେ
ଶୁଚିବନ୍ତ ହୋଇ ନିତି    ପ୍ରାସନେ[୭] ନରଖି ପ୍ରୀତି
ଅବଲମ୍ବି କାଷ୍ଠାନୀତି ଇନ୍ଦ୍ରକୀଳରେ
ଆଚରିଲେ ଏପରି ବ୍ରତ
ଗୀର୍ବାଣ[୮] ନିକର ହେବେ ଅତି ଉଷତ ।"

ଏମନ୍ତେ ଘଷନ୍ତେ ବ୍ୟାସ    ମାନସେ ବହି ଉଲ୍ଲାସ
କରିବାକୁ ଯୋଗାଭ୍ୟାସ କଲେ ସ୍ୱୀକାର
କବି ତ୍ରିଦର୍ଶ ଉରସା    ଶ୍ୱେତବାହନ[୯] ତରସା[୧୦]
ଯିବାରୁ ତାଙ୍କ ନିକଷା[୧୧] ତେଜି ବିଚାର
ଶିଖାଇଲେ ତପୋନିୟମ
ତୁଟିଗଲା କପିଧ୍ୱଜ[୧୨] ମନୁଁ ଉଦ୍‌ଭ୍ରମ[୧୩] ।

ଯାତ୍ରାକାଳେ ସୁପ୍ରସନ୍ନ    ଥିଲେ ରମଣୀ ଲପନ
ଯାତ୍ରୀକ କରି ଦର୍ଶନ ଲଭେ କୁଶଳ
ଯାଜ୍ଞସେନୀ[୧୪] ଆଗୁଁ ଜାଣି
ଅବରୋଧି ନେତ୍ର ପାଣି
ଜିଷ୍ଣୁଙ୍କୁ[୧୫] ଦେଇ ମେଲାଣି ଭୃଶ[୧୬] ଚଞ୍ଚଳ
ଘଷିଲେ ସକଳ ବୁଝାଇ
ଫୁଲମାଳ ତାଙ୍କ ଗଳେ ମୋଦେ ପିନ୍ଧାଇ ।

ସର୍ଜିଅଛି ଆଗୁଁ ବିଧି    ପଙ୍କେ ବୁଡ଼ଥିବା ନିଧି
ଉଦ୍ଧରି ଲଭିବ ସିଦ୍ଧି ବୋଲି ମନରେ
ଘୋଷୁଥିବ ନିରନ୍ତର    ପୁଲକେ ପୂଜି ଶଙ୍କର
ଚରଣ ବନ୍ଦ କୁଷ୍ତର ହୃଷ୍ଟ ଆସ୍ୟରେ
ଭଷିଲେ ତାହାଙ୍କୁ କୁଣ୍ଢାଇ
ନ କରିବ ଦୁଃଖ ତିଳେ ମନେ ପକାଇ ।

ନାନା ଉପଲମ୍ଭ[୧୭] ସହି    ହୃଦୟ ହେଉଛି ଦହି
ଜୀବନ ଧରିଛି ରହି ବନ ଦେଶରେ
ଅନନ୍ତା[୧୮] ବିଜେତା ପତି    ପାଇ କରେ ଥୟ ମତି
ମୋଭଳି ହତଶ୍ରୀ ସତୀ ଇହ ଲୋକରେ
ଜାତ ହୋଇ ନଥିବେ କେହି
ଧିକ ଧିକ ଏ ଜୀବନ ଧିକ ଏ ଦେହୀ ।

ଅଧ୍ୟବସାୟୀ ସକଳ    ଦୁରୁହ କର୍ମ ସଫଳ
କରି ସାଧନ୍ତି ମଙ୍ଗଳ ସନ୍ତତ ଭବେ
ତୁମ୍ଭେ ସୁଯୋଗ୍ୟ ସନ୍ତାନ    ନିବାରିବ ଅପମାନ
ଶାଶ୍ୱତ[୧୯] ଆମର୍ଶ[୨୦]ମାନ ମାନସେ ଜବେ
ରଖି ତୃପ୍ତି କର ନିର୍ଜରେ[୨୧]
ଅଭିଷ୍ଟ ସାଧିତ ହେଉ ଦଭ୍ର[୨୨] କାଳରେ ।

---

୧ ଶୀଘ୍ର, ୨ ସମର୍ଥ, କ୍ଷମତାପନ୍ନ, ୩ ବିନାଶ, ୪ ଅର୍ଜୁନ, ୫ ବ୍ୟାସ, ୬ ଭୋଜନ, ୭ ଦେବତା ସମୂହ, ୮ ଦେବତା, ୯ ଅର୍ଜୁନ, ୧୦ ଚାଠରୁ, ସାଙ୍ଗେ ସାଙ୍ଗେ ସ୍ଥିର କଲେ, ୧୧ ନିକଟରୁ, ୧୨ ଅର୍ଜୁନ, ୧୩ ଆକୁଳତା, ୧୪ ଦ୍ରୌପଦୀ, ୧୫ ଅର୍ଜୁନ, ୧୬ ଅତି, ୧୭ ତିରସ୍କାର, ୧୮ ପୃଥିବୀ, ୧୯ ବ୍ୟାସ, ୨୦ ଉପଦେଶ, ୨୧ ଦେବତା, ୨୨ ଅଳ୍ପ ସମୟରେ ।

କୌରବଙ୍କ ଅବସାନ ହେଲେ ତ ରହିବ ମାନ
ବିବସନ ଅପମାନ ଘାରେ ହୃଦୟ
ଶ୍ୱାପଦସଙ୍କୁଳ ବନ ଲଭିଥିବ ଘନ ଘନ[୧]
ବ୍ରତ କରି ସମାପନ ତୋଷି ଅବ୍ୟୟ[୨]
ଅପବର୍ଗ[୩] ଯଥା କାଳରେ
ବାଞ୍ଛିତ ଫଳକୁ କରି ସର୍ବଭବ୍ୟରେ[୪] ।

ଯାଜ୍ଞସେନୀର[୫] ଘନ ଘନ କପଟ ଶୂନ୍ୟ କଥନ
ଶୁଣି ମଘବା[୬] ନନ୍ଦନ ଗାମ୍ଭୀର୍ଯ୍ୟ ବହି
କହିଲେ ଯାଉଛି ପ୍ରେଷ[୭] ନପାଇ ପୂର୍ବଜାଦେଶ[୮]
ପାଶୋରି ନାହିଁତ ଲେଶ ସକଳ ସହି
ପଡଅଛି ଘୋର କାନନେ
ଲଙ୍ଘିବା କାଳ ସଖି ! ନାହିଁ କି ମନେ ।

ଖାଣ୍ଡବ ବନରେ ସହି ! ବାସବ ବିପକ୍ଷେ ରହି
ଦେଇଥିଲି ଟାଙ୍କୁ ଦହି ପଡେ ମନରେ
ଗାଣ୍ଡୀବ କୋଦଣ୍ଡ ଧରି ରହିଅଛି କ୍ଲୀବ ପରି
ଏଇ କଥା ଅନୁସରି ଉକତ ଉରେ
ହେବ ପୂର୍ଣ୍ଣ ତବ କାମନା
ସରିଲେ ନିଭୃତ ବାସ ନୁହ ବିମନା ।

ତୂର୍ଣ୍ୟାହରେ ଆଶ୍ରମରୁ ଦର୍ଶନ ଇଚ୍ଛାରେ ଖରୁ[୯]
ବିଦା ମାଗି କୁଟୁମ୍ବରୁ ଗଲେ ଅର୍ଜୁନ
ଶାଶ୍ୱତ[୧୦] ଆଦେଶ ପାଇ କାନ୍ଧରେ ଯକ୍ଷ ବସାଇ
ବନେ ଦେଲା ପହଞ୍ଚାଇ ଶୁଭ ଶକୁନ[୧୧]
ମାର୍ଗେ ମାର୍ଗେ କରି ଲୋଚନ
ଅନନ୍ତର ଅନ୍ତର୍ଦ୍ଧାନ ହେଲେ ପାବନ[୧୨] ।

ତପାତ୍ୟୟ[୧୩] ଅନ୍ତେ ପ୍ରବେଶ ଭବେ ଶରତ କାଳ
ଅପସରି ଗଲା ଅକ୍ଷରୁ[୧୪] ଏବେ ଜଳଦଜାଳ ।

ହସନ୍ତ[୧୫] ଭସନ୍ତୀ[୧୬] ଭାସ୍ୱର[୧୭] ଦିଶିଲେଣି ଶୋଭନ
କୁମୁଦିନୀ ହସି ଉଠିଲା ଦେଖି ପ୍ରିୟ ବଦନ ।

ପରାଶରଙ୍କର[୧୮] ପ୍ରେକ୍ଷଣ[୧୯] ବହୁ ଦିନୁଁ ନ ପାଇ
ଚକୋର ଚକୋରୀ ଦୁଃଖରେ ଥିଲେ ମୁହଁ ଶୁଖାଇ ।

ଜଳସ୍ଥଳ ନଭ ପ୍ରଦ୍ୟୋତେ[୨୦] ବିଚ୍ଛୁରିତ ତୁଙ୍ଗୀରେ[୨୧]
ଫୁଲକେ ପିଇଲେ ମାଳତୀ[୨୨] ଦୁହେଁ ମିଶି ଅଧୀରେ ।

ସ୍ରବନ୍ତୀ[୨୩] ସରସୀ[୨୪] ସଲିଳ ଦିଶିଲାଣି ବିମଳ
ଦିନୁଁ ଦିନ ବପ୍ରେ[୨୫] ବହୁଳ ହେଲେ ଝଷମଣ୍ଡଳ[୨୬] ।

ବପ୍ରମାନଙ୍କରେ ସ୍ତିମିତେ[୨୭] ବସି କାଷ୍ଠମଷ[୨୮]
ବିସାରୀ[୨୯] ଗତିକି ଆନନ୍ଦେ କରୁଅଛନ୍ତି ଲକ୍ଷ୍ୟ ।

ଧାନ୍ୟ ତୃଣେ ପୂରି ରହିଛି ପୁଣି କେଦାର ମଧ୍ୟ
ପରିହିତ ଶ୍ୟାମ ଶାଢୀରେ ଅବା ବାରାହୀ[୩୦] ବକ୍ଷ ।

ବାଳକ ବାଳିକା ନିବହ ମକା ବାଡ଼ରେ ପଶି
ଖୋଜି ଖୋଜି କସି ଆଣନ୍ତି ମକା ପୋଡାରେ ରସି ।

ଜହ୍ନି ଫୁଲ ଫୁଟି ବାଡରେ ଭୂରି[୩୧] କାନ୍ତିକି ଜିଣି
ବୃଷଳୀମାନଙ୍କ[୩୨] ମାନସ ଅବା ନେଉଛି କିଣି ।
ଜହ୍ନି ଓଷା ଲାଗି ସେମାନେ ତୋଳି ତୋଳି ତା ଫୁଲ
ହାଙ୍ଗସାଥୀ ହୋଇ ପ୍ରଦୋଷେ ଓଷା କରନ୍ତି ତୁଲ ।

ମାଳତୀରେ[୩୩] ଫୁଟି ମାଳତୀ ସୁରଭିତ କାନନ
ତା ସହିତ ମିଶି ଶେଫାଳୀ ହରେ ଜୀବର ମନ ।

ଅସିତା[୩୪] ଅପରାଜିତାର ରୂପେ ମଜ୍ଜି କେଶବ
ଏ ଜଳଦକ୍ଷୟେ[୩୫] ହେଲେ କି ଧରାତଳେ ସମ୍ଭବ[୩୬] ।
ପୂତ[୩୭] ତୃଣପୂର୍ଣ୍ଣ ଭୂଖଣ୍ଡେ ପଶି ଭୂଦେବବର[୩୮]
ତା ସଂଗ୍ରହ କଲେ ନଭସ୍ୟେ[୩୯] ଦେଖି ଭବ୍ୟ ବାସର ।

---

୧ ନରେନ୍ଦ୍ରର, ୨ ଶିବ, ୩ ମୁକ୍ତି ଲାଭ, ୪ ସମସ୍ତ ପ୍ରକାର ଶୁଭରେ, ୫ ଦ୍ରୌପଦୀ, ୬ ଅର୍ଜୁନ, ୭ କ୍ଲେଶ, ୮ ଯୁଧିଷ୍ଠିରଙ୍କ ଆଦେଶ, ୯ ଶିବ, ୧୦ ବ୍ୟାସ, ୧୧ ଚଢ଼େଇ, ୧୨ ବ୍ୟାସ, ୧୩ ବର୍ଷାକାଳ, ୧୪ ଆକାଶ, ୧୫ ଚନ୍ଦ୍ର, ୧୬ ନକ୍ଷତ୍ର, ୧୭ ସୂର୍ଯ୍ୟ, ୧୮ ଚନ୍ଦ୍ର, ୧୯ ଦର୍ଶନ, ୨୦ ଆଲୋକ, ୨୧ ରାତିରେ, ୨୨ ଚନ୍ଦ୍ର କିରଣ, ୨୩ ନଦୀ ୨୪ ସରୋବର, ୨୫ ମାଛ ସମୂହ, ୨୬ ବିଲହୁଡ଼ା, ୨୭ ସ୍ଥିର ହୋଇ, ୨୮ ବଗ ସମୂହ, ୨୯ ମାଛ, ୩୦ ପୃଥିବୀ, ୩୧ ସୁନା, ୩୨ ଦଶ ଏଗାର ବର୍ଷର ବାଳିକା, ୩୩ ରାତିରେ, ୩୪ କଳା ବା ନେଳୀ ଅପରାଜିତା, ୩୫ ଶରତ କାଳରେ, ୩୬ ଜନ୍ମ, ୩୭ କୁଶ, ୩୮ ବ୍ରାହ୍ମଣ, ୩୯ ଭାଦ୍ରବ ମାସ ।

ବନବାସ[୧] ଫୁଲେ ଧରିତ୍ରୀ ଦିଶେ ଧବଳମୟ
ଖସି[୨] ପଡ଼ିଲେକି ଅନଂଗୁ[୩] କେତେ ନକ୍ଷତ୍ରଚୟ ।

କର୍ବୁରିତ[୪] ବନ ପ୍ରଦେଶ ପୁଣି ବାହିନୀ[୫] ସର[୬]
ବଳୟିତ[୭] ରମ୍ୟ[୮] ଲତାରେ ଉର୍ବୀରୁହ[୯] ନିକର ।

ଶଶିପ୍ରଭ[୧୦] ପୁଷ୍ପ ବିକସି ବନେ ସପ୍ତଚ୍ଛଦରେ[୧୧]
ବୈଖାନସ[୧୨] ମନ ମୋହୁଛି ଏହି ଶରତ୍ କାଳରେ ।

କଇଁଚି କାକୁଡ଼ ଲେଖନ ଫଳେ ବ୍ରତତିନତ[୧୩]
ବାହୁଭେ[୧୪] ବିଘସ[୧୫] କରନ୍ତି ହୋଇ ମହା ଉନ୍ମତ ।

ନଭସ୍ୟ[୧୬] ସୁଦିର[୧୭] ଚତୁର୍ଥୀ ବିଘ୍ନରାଜ ଜନମ
ଅଧୀତୀସକଳ[୧୮] ଭୁଞ୍ଜନ୍ତି ଫୁଲ ଫଳର ଯମ ।

ଛିଣ୍ଡାଛିଣ୍ଡି କରି ସେତକ ମଣ୍ଡି ମହା ଆନନ୍ଦେ
ଶିରଃ[୧୯] ଫଳଜଳ ଅର୍ପନ୍ତି ଗଜାନନଙ୍କୁ ମନ୍ଦେ ।

ଘହୁଁ ଘହୁଁ ହେଲା ଦଶରା ଘରେ ଘରେ ଉତ୍ସବ
ପରିହିତ ନବ ବସନେ ନରନାରୀ ସରବ ।

ପିତୃପ୍ରସୂ[୨୦] ଦେଖି କେଦାରେ ବ୍ୟାଘ୍ରନାୟକ[୨୧] ପଶି
ଶକଳୀ[୨୨] କୁଳୀର[୨୩] କୁଳକୁ ମୋଦେ ଦେଉଛି ଧ୍ୱଂସି ।

ମଧୁଜା[୨୪] ଉତ୍ସଙ୍ଗେ[୨୫] ବିରଜା[୨୬]
ବିସ୍ତୁରିତ[୨୭] ଏକାଳେ
ଚରି ଚରି ପେଟ ଭରତି କଲେ ଗୋରୁ ସକଳେ ।

ଧୃତରାଷ୍ଟ୍ର[୨୮] ବ୍ରାତ କୌତୁକେ ଧୃତରାଷ୍ଟ୍ରୀ ସଙ୍ଗରେ
ଖଣ୍ଡେ ଖଣ୍ଡେ ଖାଇ ବିଷଣ୍ଡ[୨୯] ଖେଳୁଛନ୍ତି ସରରେ ।

ଅବଲକ୍ଷ[୩୦] ପକ୍ଷ ସଞ୍ଚାଳି କେବେ କୂଳକୁ ଆସି
ଇତରେତର[୩୧] ବା ଘଷନ୍ତି ଚଂଚୁ ପ୍ରେମ ପ୍ରକାଶି ।

ପ୍ରାବୃଷ୍ୟ[୩୨] ଉତ୍ପାତ କିଂଚିନ ନାହିଁ ପ୍ରବାହିନୀର[୩୩]
ଜମ୍ବାଳ[୩୪] ବିହୀନ ହେଲାଣି କ୍ରମେ ରସା ଶରୀର ।

ଭର୍ତ୍ତୃବିଯୋଗିନୀ ନାୟିକା ପରି ଦିଶେ ମଳିନ
କଦମ୍ବ କଦମ୍ବ[୩୫] ହେବାରୁ ଏବେ ପ୍ରସୂନ ହୀନ ।

ଶିରୀଷ କୁସୁମ ବରଣ କୀର କେଦାରେ ଯାଇ
ଲୋହିତ ଚଂଚୁରେ କଳମ କେଣ୍ଟା ଖାଏ ଛିଣ୍ଡାଇ ।

ଆଶ୍ୱିନୀ ରଜନୀ ଆସିଲା ଧରି ଅର୍ଜୁନୀ[୩୬] ବେଶ
ନବବାସ ପିନ୍ଧି ପିଲାଏ କ୍ରୀଡ଼ନକେ ପ୍ରବେଶ ।

ବାଟେ ବାଟେ ଦୃଶ୍ୟ ବୀକ୍ଷଣ କରି କରି ଅର୍ଜୁନ
ଅବତରି ଯକ୍ଷ ଅଂସରୁ[୩୭] ପ୍ରବେଶିଲେ ବିପିନ ।

ପ୍ରାନ୍ତର ପ୍ରଦେଶ ଦିଶଇ ଏବେ ଅର୍ଜୁନମୟ[୩୮]
ଛପିଲେଣି ଲତା କୁଞ୍ଜରେ ଯାଇ ଅର୍ଜୁନଚୟ[୩୯] ।

ପରିପକ୍ୱ ବ୍ରୀହୀ କଳମ ଅବନତ ଶିରରେ
ନମିଲେ କି ଅବା ଅର୍ଜୁନ ଦେଖି ଯୋଗୀ ବେଶରେ ।

ଗୋମକ୍ଷ[୪୦] ସଙ୍ଗରେ ମହୋକ୍ଷ[୪୧] କରି ଗତି ମନ୍ଥର
ଚରୁଥିବା ଦୃଷ୍ଟିଗୋଚର ହେଲା ଅର୍ଜୁନଙ୍କର ।

ଗାଭୀଙ୍କ[୪୨] ଆପୀନୁଁ (ପହ୍ନା) କ୍ଷରିତ
ହେବା କ୍ଷୀର ପ୍ରଚୁର
ବତ୍ସାମାନେ ପିଇ ପିପାସା କ୍ଷୁଧା କରନ୍ତି ଦୂର ।

ଗୋଷ୍ଠ ପ୍ରାଙ୍ଗରେ ଗୋପୀଏ କରେ କଳସ ଧରି
ବତ୍ସାପାନ ଅନ୍ତେ ଆଣନ୍ତି ଦୁଗ୍ଧ ଦୋହନ କରି ।

ନବଯଉବନା ଗୋପୀଙ୍କ ଜିତ କୋକିଳ ଗାନ
ମୃଗୀକଦମ୍ବକ[୪୩] ଶୁଣନ୍ତି ହୋଇ କୃତାବଧାନ[୪୪] ।

---

୧ ମଙ୍ଗଳଧ୍ୱନ, ଶୁଭଦିନ, ୨ କାଶତଣ୍ଡି, ୩ ଆକାଶରୁ, ୪ ନାନାବର୍ଣ୍ଣଯୁକ୍ତ, ୫ ନଦୀ, ୬ ସରୋବର, ୭ ବେଷ୍ଟିତ, ୮ ମନୋହର, ୯ ବୃକ୍ଷ ସମୂହ, ୧୦ ଶୁକ୍ଳ ବର୍ଣ୍ଣ, ୧୧ ସାନ୍ତଫେଣିଆ (କଣ୍ଟାକୁଳ ଓସାରିଆ ଗଛ), ୧୨ ବନବାସୀ, ୧୩ ଲତା, ୧୪ ଶୁକ, ୧୫ ଭକ୍ଷଣ, ୧୬ ଭାଦ୍ର, ୧୭ ଶୁକ୍ଳପକ୍ଷ, ୧୮ ଛାତ୍ର, ୧୯ ନାରିକେଳ, ୨୦ ସଞ୍ଜ, ୨୧ ବିଲୁଆ, ୨୨ ମାଛ, ୨୩ କଙ୍କଡ଼ା, ୨୪ ଓ ୨୫ ପୃଥିବୀ ବକ୍ଷରେ ବା କୋଳରେ, ୨୬ ଦୁବଘାସ, ୨୭ ବର୍ଦ୍ଧିତ, ୨୮ ହଂସ ସମୂହ, ୨୯ ପଦ୍ମନାଡ଼, ୩୦ ଧ୍ୱଜା, ୩୧ ପରସ୍ପର, ୩୨ ବର୍ଷାକାଳ, ୩୩ ନଦୀ, ୩୪ ପଙ୍କ, କାଦୁଅ, ୩୫ କଦମ୍ବ ଗଛ ସମୂହ, ୩୬ ଶୁକ୍ଳ ବର୍ଣ୍ଣ, ୩୭ କାନ୍ଧରୁ, ୩୮ ଶୁକ୍ଳ ବର୍ଣ୍ଣ, ୩୯ ମୟୂରମାନେ, ୪୦ ଗୋରୁପଲ, ୪୧ ବଡ଼ ଷଣ୍ଢ, ୪୨ ଗାଈ, ୪୩ ମୃଗ ସମୂହ, ୪୪ ମନୋନିବେଶ କରି । କୀର—ଶୁଆ, କଳମ—ଶାଳିଧାନ, ଅଶ୍ୱିନୀ—ଆଶ୍ୱିନ ପୂର୍ଣ୍ଣିମା, ଷଣ୍ଡ—ସମୂହ ।

ସରୋବର ଜଳ କି ଅବା ହେଲା ବିସ୍ମିତ ଅତି
ବିକଚ ରାଜୀବ ଲୋଚନେ ଦେଖି ଅର୍ଜୁନ ଗତି ।

ଉଦ୍‌ବର୍ତ୍ତନ[୧] ଗତି ମୀନଙ୍କ କରି ଅବଲୋକନ
ପଥଶ୍ରମ ବାଧା ପଥିକ କରେ ଅପନୋଦନ ।

## ହିମାଳୟ ଦୃଶ୍ୟ

ଅଗ୍ରେ ହିମାଚଳ କରି ଦର୍ଶନ
ତା ମଧ୍ୟେ ପଶିଲେ ଶ୍ୱେତବାହନ[୨] ।

ତାପନ[୩] ତାପନ[୪] ଭେଦି ନପାରି
ଅମାତମା[୫] ପରି ତମସ[୬] ଭରି ।

ମଧ୍ୟାହ୍ନେ କାନନ ଲତାଗୁଳ୍ମରେ
ବିଚ୍ଛୁରିତ[୭] ଦିଶେ ଚଉଦିଗରେ ।

ଗଜତକ୍ଷେତଟୀ ନେତ୍ରୀ[୮] କମଳେ[୯]
ଦିଶୁଛନ୍ତି କମନୀୟ କମଳେ[୧୦] ।

ବହି ଆସୁଅଛି ଜାହ୍ନବୀ[୧୧] ଜଳ
କଳ କଳ ନାଦେ ଅତି ଚପଳ ।

ହିମାଦ୍ରିର[୧୨] ଶୋଭା କରି ଲୋକନ
ଅର୍ଜୁନଙ୍କୁ ଯକ୍ଷ ଭଷେ ଏସନ ।

"ଦେଖ ଅଶ୍ମେ[୧୩] ପଡ଼ ତୁଷାର ରାଶି
ଯାଉଛି କି ବେଗେ ଗଙ୍ଗାରେ ଖସି ।

ନଭସ୍ପର୍ଶ କରା ପରି ଶିଖର
ନିକର[୧୪] ଦିଶଇ ପଡ଼ ଶୀକର[୧୫] ।

ଉଦ୍‌ଭାସିତ ହୋଇ ମଣି ମୟୂଖେ[୧୬]
ସନ୍ଧ୍ୟା ରାଗ ଛଟା ରଜନୀ ମୁଖେ ।

କୁସୁମିତ ନାନା ଲତା ସକଳ
ରହିଛନ୍ତି ଘେରି ଏହି ଅଚଳ ।

ପାଦପ ମଣ୍ଡିତ ଦେଖ ଗହନ[୧୭]
ହୋଇଅଛି ସଦା କେତେ ଗହନ[୧୮] ।

ରୁଚିର ପଲ୍ଲବ ପ୍ରସୂନ[୧୯] ଫଳେ
ଯୋଗୀଙ୍କ ପରୟ ନତ ସନ୍ତଳେ ।

ଏ ଧରେ[୨୦] ତପସ୍ୟା କରି ଶର୍ବରୀ
ଶେଷେ ପତି ରୂପେ ଲଭିଲେ ଭୂରି[୨୧] ।

ହେଉ ନାହିଁ ଜୀର୍ଣ୍ଣ କେବେ ପଲ୍ଲବ
ହର ଗୌରୀ ବାସେ ସିନା ସମ୍ଭବ ।

ଜନ୍ମଜରା ହୀନ ଭବାନୀପତି
ଯୋଗ ସାଧନାରେ ସତତ ବ୍ରତୀ ।

କରନ୍ତି ବସତି ଏହି ଗହନେ
ଲଭେ ଲୋକ ମୁକ୍ତି ତାଙ୍କ ଦର୍ଶନେ ।

ପରାଶରକର[୨୨] ହର ଶିରରୁ
ସ୍ରବି ତଡେ ତମ ଗିରି ଦେଶରୁ ।

ନୁହେ ଭୋଗଭୂମି ଏ ହିମାଚଳ
ମୁକ୍ତିକାମୀର ଏ ତପସ୍ୟାସ୍ଥଳ ।

ବିବିଧ ବର୍ଣ୍ଣର ମଣିନିକର
ପ୍ରତିବିମ୍ବି ଘନେ କି ମନୋହର ।

ତୋୟଯୁକ୍ତା ହୋଇଛନ୍ତି ସିନ୍ଧୁଏ[୨୩]
ଯହିଁ କ୍ରୀଡୁଛନ୍ତି ସଦା ସିନ୍ଧୁଏ[୨୪] ।

ଶତଦଳବ୍ରାତ ବାତ ଚଳିତ
ଜଳେ ନୁଡି କଲପରି ପ୍ରତୀତ ।

ନବଦ୍ୟୁତି ଧରିବାରୁ ଶାଦ୍‌ବଳ[୨୫]
ତାମରସ ବନ ଦିଶେ ଶ୍ୟାମଳ ।

ରସିକ ରୋଳମ୍ବ[୨୬] ବିସିନୀ[୨୭] କୋଳେ
ବସି ଚୁମ୍ବେ ତାକୁ ଆସବ ଭୋଳେ ।

---

୧ ଓଲଟ ପାଲଟ, ୨ ଅର୍ଜୁନ, ୩ ସୂର୍ଯ୍ୟ, ୪ କିରଣ, ୫ ଅମାବାସ୍ୟାର, ୬ ଅନ୍ଧାର, ୭ ଅନୁରଞ୍ଜିତ, ୮ ନଦୀ, ୯ ଜଳରେ, ୧୦ ପଦ୍ମକୁଡ଼ିକ, ୧୧ ଗଙ୍ଗାନଦୀ, ୧୨ ହିମାଳୟ, ୧୩ ପଥର, ୧୪ ସମୂହ, ୧୫ କାକର, ୧୬ ରାତ୍ରୀ, ୧୭ ବନ, ୧୮ ଦୁଷ୍ପ୍ରବେଶ୍ୟ, ୧୯ ଫୁଲ, ୨୦ ଏ ପର୍ବତ, ୨୧ ଶିବ, ୨୨ ଚନ୍ଦ୍ରର କିରଣ, ୨୩ ନଦୀ, ୨୪ ହାତୀ, ୨୫ ହରିତ୍ ବର୍ଣ୍ଣ ସ୍ଥାନ, ୨୬ ଭ୍ରମର, ୨୭ ପଦ୍ମିନୀ ।

କୁରରୀ ପକ୍ଷୀଏ ପାଦପ ଡାଳେ
ବସି କୂଜୁଛନ୍ତି ମୋଦେ ଏ କାଳେ ।
ସମୃଦ୍ଧି ସମ୍ପନ୍ନ ଏ ଧର[୧] ଦରୀ
ଦୂରୁଁ ଦିଶୁଅଛି ନିଳୟ ପରି ।
ଦେଖ ଠାବେ ଠାବେ ଖେଗିବଲ୍ଲଭ[୨]
ଖେଗିକାନ୍ତ[୩] ଯୋଗେ ବ୍ୟାପେ ସୌରଭ ।
ଅଗ୍ରେ ଇନ୍ଦ୍ରକୀଳ ଜଗତିଧର[୪]
ଦିଶୁଅଛି ଦୂରୁଁ କେଡେ ସୁନ୍ଦର ।
ହିରଣ୍ମୟ[୫] କାନ୍ତ କରି ଧାରଣ
ଯୋଗୀଜନ ମନ କରେ ହରଣ ।
ମହାହି[୬] ବର୍ଜିତ ଏ ବନ ଦେଶ
ଯିବ ଅପସରି ଯାବତ କ୍ଳେଶ ।
ଇନ୍ଦ୍ରିୟ ରୂପକ ଅଶ୍ୱ ନିକର
ହୁଅନ୍ତୁ ଆୟତ୍ତ ତୂର୍ଣ୍ଣେ[୭] ତୁମ୍ଭର ।
ଆଚର ତପସ୍ୟା ଇନ୍ଦ୍ରକୀଳରେ
ଅହୋରାତ୍ର ବସି ଉଜାଗରରେ ।
ଦିଅନ୍ତୁ କାପାଳୀ[୮] ସାଧୁ ଉତ୍ସାହ
ହେଉ ନିର୍ବିଘ୍ନରେ ତପ ନିର୍ବାହ ।"
ଗଲା ଯକ୍ଷ କହି ପ୍ରିୟ ବଚନ
ରହିଲେ ଏକାକୀ ପୃଥାନନ୍ଦନ ।

## ଇନ୍ଦ୍ରକୀଳରେ ଅର୍ଜୁନ

(ବଙ୍ଗଳା ଶ୍ରୀ)

ପୁରୁହୂତ[୯] ସୁତ ଆରୋହନ୍ତେ ଧୀରେ
ଇଂଦ୍ରକୀଳ ଅନନ୍ତର
ବହତି[୧୦] ସ୍ଖଳିତ ଜଗତୀରୁହରୁ[୧୧]
ପଡଲା ପୁଷ୍ପ ପ୍ରକର[୧୨] ।
ବହତୀ[୧୩] ବପ୍ରସ୍ଥ[୧୪] ବାନୀର[୧୫] ବନ କି
ଅବନତ ମସ୍ତକରେ ?
ଅର୍ଜୁନ ଦର୍ଶନେ କରିଲା ପ୍ରଣତି
ଏବେ ବିନମ୍ର ଭବରେ ।

ବପ୍ର[୧୬] କ୍ରୀଡାସକ୍ତ ବାରଣମାନଙ୍କୁ[୧୭]
ଦେଖି ବପ୍ର ପାରୁଶରେ
ଅମ୍ବୋଜ[୧୮] ବଜାଇ ଦେଲେ ଘଉଡାଇ
ସେମାନଙ୍କୁ ସେଠୁଁ ଦୂରେ ।

ଚକ୍ରବାକୀ ଏକ ନେତ୍ରୀ ତଟେ ବୁଲି
କରୁଥିବା ଅନ୍ୱେଷଣ
କରୁଣ କୂଜନେ କାନ୍ତ ନ ପାଇବା
କଲେ ସେ ତହୁଁ ବୀକ୍ଷଣ[୧୯] ।

ଯାଉଁ ଯାଉଁ ବାଟେ ଗଙ୍ଗାନୁଗାମିନୀ
ରମାମାନ[୨୦] ଅତିକ୍ରମି
ଗିରିର ସୀମନ୍ତ ବନପ୍ରାନ୍ତ ଭୂମି
ଲଭିଲେ ସେ ଭ୍ରମି ଭ୍ରମି ।

ଫଳିତ ପଲ୍ଲବୀ[୨୧] ବ୍ୟାପ୍ତ ସାନୁ ଦେଶ
ଭବିଲେ ବିବିକ୍ତ[୨୨] ଅତି
ସେ ସୁତ୍ରାମା ସୁତ[୨୩] ତପସ୍ୟା ନିମିତ୍ତ
ବଳାଇଲେ ସେଠି ମତି ।

ବିଷୟ ନିବୃତ୍ତି ମୁଖ୍ୟ ସୁଖ ବୋଲି
ଭାବୁଥାଏଁ ଯେଉଁଜନ
ସେହି ଏକା ସିନା ବସୁନ୍ଧରା ମଧ୍ୟେ
କରିପାରେ ସଂଯମନ[୨୪] ।



୧ ପର୍ବତ, ୨ ଚନ୍ଦନ ଗଛ, ୩ ଚନ୍ଦନ, ୪ ପର୍ବତ, ୫ ସୁନା, ୬ ବଡ଼ ସାପ, ୭ ଶୀଘ୍ର, ୮ ଶିବ, ୯ ଅର୍ଜୁନ, ୧୦ ପବନ, ୧୧ ବୃକ୍ଷ, ୧୨ ସମୂହ, ୧୩ ନଦୀ, ୧୪ ତଟ, ୧୫ ବେତ, ୧୬ ତଟରେ, ଢାଲୁରେ ମାଟି ଖୋଳୁଥିବା, ୧୭ ହାତୀ, ୧୮ ଶଙ୍ଖ, ୧୯ ଦର୍ଶନ, ୨୦ ନଦୀ, ୨୧ ବୃକ୍ଷ, ୨୨ ନିର୍ଜନ ପବିତ୍ର ସ୍ଥାନ, ୨୩ ଅର୍ଜୁନ, ୨୪ ଇନ୍ଦ୍ରିୟ ନିଗ୍ରହ ।




## ଅର୍ଜୁନଙ୍କ ତପସ୍ୟା

(ରାଗ–ରସ୍ତେଖି)

ତପଲାଗି ଦର୍ଭାସନ[୧] କରି ମହେନ୍ଦ୍ର[୨] ନନ୍ଦନ
ଆରମ୍ଭିଲେ ଆରାଧନ ଏକ[୩] ସର୍ଗରେ
ଜୀବନ[୪] ନିରସ କରି ସୁଗ୍ରୀବ[୫] ସୁଗ୍ରୀବ[୬]ସ୍ମରି
ପୂତ[୭] ପୂତ[୮] ପୂତ[୯] ଧରି ଉକଟି ଉରେ
ଅହୋରାତ୍ର ଉଜାଗରରେ
ବ୍ୟାଳାକୀର୍ଣ୍ଣ[୧୦] ଦର୍ଭଟର[୧୧] ଜଟୀମୂଳରେ[୧୨] ।

ମଣ୍ଡଳୀ[୧୩] ମୂଳେ ମଣ୍ଡଳୀ[୧୪] ବିଳୁ ରହେଁ ଗଳି ଗଳି
ନ ଟିବାରୁ ବା କୁଣ୍ଡଳୀ[୧୫] ତପଃ ସାଧନ
ଏକାଳେ ଅର୍ଜୁନଙ୍କର ଜାଣି ଅଗ୍ରଗାମୀତର
ପେଶିଲେ କି ତାକୁ ହର ତାର ନାଶନ
କରିବାକୁ ଦେଖାଇ ଭୟ
ଡରେ କି କେବେ ତହିଁରେ ଅକୁତୋଭୟ[୧୬] ।

ହେବାରୁ ଆତ୍ମ ପ୍ରତ୍ୟୟ ରହିଲା ଲାଖି ହୃଦୟ
ଦର୍ଶନ ଲାଗି ଅବ୍ୟୟ[୧୭] ଅନ୍ୟ ଧାବନା
ନ ଥିଲା ମାନସେ ଲବେ ଗରବ ଲାଗି ଉବେ
ପ୍ରୟାସୀ ସଦା ମାନବେ, ଧନ୍ୟ ସାଧନା
ତ୍ରାଣ ପ୍ରତି ମମତା ମନେ
ନଥିଲା ବା ତାପସର ସିଦ୍ଧି ସାଧନେ ।

ଦେଖି ତାଙ୍କ ଆଚରଣ କୁରଙ୍ଗ କୁରଙ୍ଗୀଗଣ
କରନ୍ତ ତପ ପ୍ରେକ୍ଷଣ[୧୮] ଉତ୍ସୁକ ମନେ
ପ୍ରସୂନ[୧୯] ପ୍ରଦାନ ପାଇଁ ଶାଖାଗ୍ର[୨୦] ଶାଖୀ[୨୧] ନୁଆଇଁ
ରହିଲା କି ସଦା ରହିଁ ଯଶ ଅର୍ଜୁନେ
ବଶୀଭୂତ ହୋଇ ପବନ
ତପୋଜନିତ କ୍ଳାନ୍ତ ବା କରେ ନୋଦନ ।

ପାସୋରି ଗାର୍ହସ୍ଥ୍ୟ ପ୍ରୀତି ଧୃତାୟୁଧ ହୋଇ ନିତି
ଆଚରିଲେ ତପୋରୀତି ଶୁଦ୍ଧ ସ୍ୱାନ୍ତରେ[୨୨]
ଦିନୁଁ ଦିନ ବଢେ ଦାନ୍ତ[୨୩] ତା ସଙ୍ଗେ ଶରୀର କାନ୍ତ
ବନରକ୍ଷୀ ମାନେ ଭ୍ରାନ୍ତ ଜନ୍ମନ୍ତେ ଖରେ
ବିସ୍ମରି ବିସ୍ମରି ସକଳେ
ପରଶରେ[୨୪] ଜଣାଇଲେ ଭୟ ବିହ୍ୱଳେ ।

କଠୀ ଆବରଣ ଚୀର ଭସ୍ମର ପରି ଶରୀର
ଦିଏ କି ତଡ଼ ତିମିର[୨୫] ବନ ଦେଶର ?
ଭୀଷଣ ଭୁଜଙ୍ଗ ପରି ଭୁଜ ବେନି ଦେଖି ଅରି
ନପଶେ ପ୍ରାଣକୁ ଡରି ଋଷିନିକର
ଦେଖି ତାଙ୍କ ତପଃ ସାଧନା
ଉବି ଉବି ହେଲେ କିବା ଅଥୟମନା ?

---

୧ କୁଶାସନ, ୨ ଅର୍ଜୁନ, ୩ ଏକାଗ୍ର ଚିତ୍ତରେ, ୪ ବାୟୁ ଭକ୍ଷଣ କରି, ୫ ଇନ୍ଦ୍ର, ୬ ଶିବ, ୭ ପବିତ୍ର, ୮ କୁଶ, ୯ ଶଙ୍ଖ, ୧୦ ହିଂସ୍ରଜନ୍ତୁପୂର୍ଣ୍ଣ, ୧୧ ନିଭୃତ ବନ, ୧୨ ଓ ୧୩ ବରଗଛ ମୂଳେ, ୧୪ ସାପ, ୧୫ ମୟୂର, ୧୬ ଯେ କାହାକୁ ଭୟ କରେ ନାହିଁ, ୧୭ ଶିବ, ୧୮ ଦର୍ଶନ, ୧୯ ଫୁଲ, ୨୦ ଡାଳ, ୨୧ ଗଛ, ୨୨ ଚିତ୍ତ, ୨୩ ତପଃ କ୍ଳେଶଜନିତ ସହିଷ୍ଣୁତା, ୨୪ ଇନ୍ଦ୍ର, ୨୫ ଅନ୍ଧାର ।

ଶୈଳ ଋଷୀଙ୍କ ବଚନ ଶ୍ରବଣେ ପାକ[୧] ଶାସନ
ଅର୍ଜୁନ ବୋଲି ଭବନ କରିଲେ ମନେ
ପରଖିବାକୁ ଭକତି ଡକାଇ ଅପ୍ସରତତି
ପେଷନ୍ତେ ବନେ ସଂପ୍ରତି ତପୋନାଶନେ
ଇନ୍ଦ୍ରକୀଳେ ସିତାଶ୍ୱଙ୍କର[୨]
ମୋଦଭରେ ବାହାରିଲେ ରମାନିକର[୩] ।

## ଅପ୍ସରାମାନଙ୍କ ଆଗମନ

(କୁମ୍ଭ କାମୋଦୀ)

ଆରୋହି ସ୍ୟନ୍ଦନେ[୪] ତ୍ରିଦଶ[୫] ବଧୂଏ
ଗନ୍ଧର୍ବ ସଙ୍ଗରେ,
ନିବେଶିଲେ ଆସି ମହାଶଇଳର
ମେଖଳା ଦେଶରେ ।
ଅବତରି ତହିଁ କମନୀୟ କାନ୍ତ
କାନନ ଦେଶର,
କରନ୍ତେ ଲୋକନ ବିହାରେ ମାନସ
ବଳିଲା ସଧର ।
ବିଲୁଳିତ କେଶ ନାୟିକା ନିକର
ବିମୁଗ୍ଧ ହୃଦୟେ,
ପୁଷ୍ପଭର ଶାଖୀଚୟ ଦେଖିଗଲେ
ପ୍ରସୂନା[୬] ବଚୟେ[୭] ।
ଉତ୍କଣ୍ଠିତ ପୁଷ୍ପନୟନେ ତରୁଏ
ଆଦର ସହିତ,
ସୁରବଧୂ ରୂପ ଦେଖୁଥିଲା ପରି
ହୋଇଲା ପ୍ରତୀତ ।
ଏକାଳେ ଅରୁଣ ଅସ୍ତୋନ୍ମୁଖ ହୋଇ
ଦିଶିଲେ ପାଟଳ,
ଅରୁଣ ବରଣେ ଶୋହିଲା ବାରୁଣୀ[୮]
ବିୟତମଣ୍ଡଳ[୯] ।

ମୁଦିତ ହେଲେକି ସହସ୍ରମରୀଚି[୧୦]
ଶରୀର ସୌଷ୍ଠବେ ?
ଲେଉଟନ୍ତି ନୀଡେ ବିହଙ୍ଗ ବିତାନ
ମଧୁର ଆରବେ ?
ନାନା ଜାତି ଫୁଲେ ସଜାଇ କୁନ୍ତଳ
ଅପ୍ସର ବିତତି,
ଉଦଗଦ୍ରି[୧୧] ଦୃଶ୍ୟ ଦରଶନ କରି
ଯାପିଲେ ବସତି[୧୨] ।
ଅସ୍ତାଚଳ ଡେଇଁ ପଡନ୍ତେ ପତଙ୍ଗ[୧୩]
ଯେ ଯାହା ନୀଡରେ,
ରହିଲେ ପତଙ୍ଗେ[୧୪] ଶାବକ ସଙ୍ଗରେ
ତିମିତ[୧୫] ଭବରେ ।
ନିଶାଦି[୧୬] ସମୟେ ମନ୍ଦ ମନ୍ଦ ଭବେ
ଘୋଟନ୍ତେ ତିମିର,
ଖାଦ୍ୟ ଅନ୍ୱେଷଣେ ନିଶାଚରଚୟ
ହୋଇଲେ ଅସ୍ଥିର ।
ଅବନତ ମୁଖେ ରହିଲା ନଳିନୀ
ନ ଦେଖି ରବିକି,
କାମିନୀ ବିଯୋଗ ଯାମିନୀରେ ଅତି
ବାଧିଲା ଚକ୍ରୀକି[୧୭] ।
କେତକୀ କୁଙ୍କୁମ କେଶର ସଦୃଶ
ପାଣ୍ଡୁବର୍ଣ୍ଣ ଅଂଶୁ[୧୮],
ପୂରବ ଦିଗରେ ଏକାଳେ ଶୋହିଲେ
ବିସ୍ତାରି ହିମାଂଶୁ[୧୯] ।
ତମସ୍ତୋମ[୨୦] ଦୂରେ ମଧୁଜା[୨୧] ବକ୍ଷରୁ
ହୁଅନ୍ତେ ଅନ୍ତର,
ନ ପାରିଲା ସହି ବିରହୀ ରଥାଙ୍ଗ[୨୨]
ଦେଖି ଇନ୍ଦୁକର ।

---

୧ ଇନ୍ଦ୍ର, ୨ ଅର୍ଜୁନ, ୩ ସୁନ୍ଦରୀ ନାରୀ ସମୂହ, ୪ ରଥ, ୫ ଦେବ, ୬ ଫୁଲ, ୭ ତୋଳିବାକୁ, ୮ ପଶ୍ଚିମ ଦିଗ, ୯ ଆକାଶ, ୧୦ ସୂର୍ଯ୍ୟ, ୧୧ ହିମାଳୟ, ୧୨ ଗତ, ୧୩ ସୂର୍ଯ୍ୟ, ୧୪ ପକ୍ଷୀମାନେ, ୧୫ ନିଶ୍ଚଳ, ୧୬ ସନ୍ଧ୍ୟା, ୧୭ ଚକ୍ରବାକ, ୧୮ କିରଣ, ୧୯ ଚନ୍ଦ୍ର, ୨୦ ଅନ୍ଧାର ସମୂହ, ୨୧ ପୃଥିବୀ, ୨୨ ଚକ୍ରୀ ।

ମନୋହର ଦ୍ରବ୍ୟ କେତେବେଳେ ହେଲେ
ନଦିଏ ଆନନ୍ଦ,
ଦୁଃଖିତ ପ୍ରାଣୀର ହୃଦୟେ ଧଗରେ
ଦେଖାଇଲେ ଫନ୍ଦ[1] ।

ଗଭସ୍ତି[2] ସଂହତି[3] ଆଡାଳି ପାତାଳି
ବ୍ୟାପନ୍ତେ କ୍ରମଶଃ,
ତାରକା ବଧୂଏ ଚଉପାଶେ ଘେରି
ରହିଲେ ବିକସ[4] ।

ଚନ୍ଦ୍ରିକା ପିପାସୁ ଚକୋର ଚକୋରୀ
ଶାଖୀଶାଖା ପରେ,
ଉଦକୁ ଜନାଇଁ ରହିଥାନ୍ତି ବସି
ସହର୍ଷ ସ୍ୱାନ୍ତରେ[5] ।

ସରୋବର ଜଳେ ହସି ଉଠିଲଣି
ପାଖୁଡ଼ା ମେଲାଇ,
କୁମୁଦିନୀ, ନଭେ ସୁଧାସୁତିଙ୍କର[6]
ଦରଶନ ପାଇ ।

ନିଶୀଥିନୀ ଶେଷ ହେଲା କ୍ରମେ କ୍ରମେ
ଶୟନ ବର୍ଜନ,
କରି କାମିନୀଏ ସାରିଲେ ତକ୍ଷଣେ
ଶରୀର ମାର୍ଜନ ।

ଧୀରେ ଧୀରେ ଧ୍ୱାନ୍ତ[7] ଧରଗଲା ଛାଡ଼
ଉଇଁଲେ ଧ୍ୱାନ୍ତାରି[8],
ଅଲକ୍ତକ[9] ରସେ ରଞ୍ଜାଇଲେ ପଦ
ପ୍ରାତଃକୃତ୍ୟ ସାରି ।

ପ୍ରାଭାତିକାତପ ଉତ୍ତୁଙ୍ଗ ଶୃଙ୍ଗରେ
ହେଲା ସୁଖପ୍ରଦ,
କ୍ରମେ କ୍ରମେ ଏଣେ ବସୁନ୍ଧରା ବକ୍ଷ
ଦିଶିଲା ବିଶଦ[10] ।

ନେତ୍ର ଶୋଭା ଲାଗି ନୟନେ କଜ୍ଜଳ
କପୋଳେ ତିଳକ,
ଗ୍ରଥିତ[11] ପ୍ରସୂନ[12] ମାଲ୍ୟ ଗଳେ ହେଲା
ଆନନ୍ଦ ଦାୟକ ।

ସଞ୍ଚୟ[13] ସଂସର୍ଗ ଲଭିବା ମାନସେ
ତପସ୍ୟା ସ୍ଥାନରେ,
କୁଚ କଳସକୁ ଦେଖାଇ ଦେଖାଇ
ନିବେଶିଲେ ଖରେ ।

ତଦନ୍ତେ ବାମାଏ ତପସ୍ୟା ଦର୍ଶନେ
ଗମିଣ ଉତ୍ସୁକେ,
ତପସ୍ୟା ଭଂଗିବା ଲାଗି ନାନାଭଙ୍ଗି
କରିଲେ କୌତୁକେ ।

ବାରୁଣୀକି[14] ପିଇ ତରୁଣୀଏ କେତେ
ଲଭି ଉନ୍ମାଦନ,
କୁଣ୍ଢାକୁଣ୍ଢି ହୋଇ ପ୍ରେମ ପରସ୍ପର
ଦିଅନ୍ତି ଚୁମ୍ବନ ।

କେହିବା ନବୋଢା[15] ବ୍ରୀଡ଼ାକୁ[16] ବରଜି
ନୀବୀବନ୍ଧ[17] ବାସ,
ଦେଇଥିଲା ଟେକି ଟାଣିବାକୁ ମନ
ପ୍ରକାଶି ଉଲ୍ଲାସ ।

ମର୍ଯ୍ୟାଦାକୁ ଲଂଘି ପୀବର[18] ସ୍ତନରେ
ପୀନ[19] ପୟୋଧର[20],
ଉଚ୍ଛୃଙ୍ଖଳ ହୋଇ କରିଲେ ତାଡନ
ପ୍ରମଦାନିକର ।

କୌଣସି ନାୟିକା ନିର୍ନିମେଷ[21] ନେତ୍ରେ
ଅର୍ଜୁନ ରୂପକୁ,
ନିରୀକ୍ଷଣ କରି ଠିଆ ହେଲା ପାଖେ
ଦେଖାଇ ଉରକୁ ।

---

୧ ସ୍ୱରୂପ୍ୟ, ୨ କରଣ ସମୂହ, ୩ ସଙ୍ଘ, ୪ ଚନ୍ଦ୍ର, ୫ ଚନ୍ଦ୍ରେର, ୬ ଚନ୍ଦ୍ର, ୭ ଅନ୍ଧାର, ୮ ସୂର୍ଯ୍ୟ, ୯ ଅଳତା, ୧୦ ନିର୍ମଳ, ଧୋବ, ୧୧ ଗୁଂଥା, ୧୨ ଫୁଲ, ୧୩ ଅର୍ଜୁନ, ୧୪ ମଦ, ୧୫ ନୂଆ ହୋଇ ବିବାହିତା ସ୍ତ୍ରୀ, ୧୬ ଲଜ, ୧୭ ଅଣ୍ଟାର ଲୁଗା, ୧୮ ମୋଟା, ୧୯ ମୋଟା, ବଡ଼, ୨୦ ସ୍ତନ, ୨୧ ପଲକ ନ ପକାଇ ।

ନିଜ ଜର୍ଣ୍ଣୋପଳ ସ୍ୱହସ୍ତରେ ଧରି
କେହି ବା ରମଣୀ,
ମୁନି ଉରେଦେଶେ କରିଲା ତାଡନ
ଆସି ସେହିକ୍ଷଣି ।

ନ ଫେରଇ ଦୃଷ୍ଟି ରହିଲେ ତାପସ୍ୟ[1]
ତଦ୍‌ଗତ[2] ଚକ୍ଷୁରେ[3],
ବାଢି ତପୋତେଜ ଦିଶିଲେ ମଳିନ
ଏକାଳେ ଅପ୍‌ସରେ ।

ବିସ୍ମୟାବିଭୂତ ହୋଇ କାମିନୀଏ
ଆଚରି ବଞ୍ଚନା,
ବଜାନ୍ତେ ବୀଣାକୁ ବିଭତ୍ସୁ[4] ଅଟଳ
ନ ହୋଇ ଉନ୍ମନା ।

ସକଳ କୌଶଳ ହେବାରୁ ନିଷ୍ଫଳ
ଚଟୁଳାଯୋଷିତେ[5],
ହୋଇ ଅନ୍ତମନା[6] ଗନ୍ଧର୍ବ ନିକଷା[7]
ଫେରିଲେ ତ୍ୱରିତେ ।

ତୁହିନ[8] ରହିତ ପୁଷ୍ପମାସ[9] କଲା
ଏକାଳେ ପ୍ରବେଶ,
ଶୁଭେ କୁହରିତ[10] ଆତାଳି[11] ପାତାଳି
କାନନ ପ୍ରଦେଶ ।

ଆସଙ୍ଗ[12] ଅଳିଏ[13] ଆସ୍ଥା କଲେ ଯାଇ
ମୃଣାଳିନୀ ବନେ,
ମଳୟ ମରୁତ ଅବିରତ ବ୍ୟସ୍ତ
ସୁରଭି[14] ବଣ୍ଟନେ ।

ଗନ୍ଧର୍ବ ନିବନ୍ଧ[15] ସୁରଙ୍ଗନା ନୃତି
ସୁରଭି[16] ସମୟେ,
କିଂଚିତ ବିକ୍ରିୟା ନ କଲା ପ୍ରବେଶ
ସିତାଶ୍ୱ[17] ହୃଦୟେ ।

ଶତକ୍ରତୁ[18] ସୁତ ନ ହୁଅନ୍ତେ ବଶ
ସୁରବଧୂଚୟ,
ଗନ୍ଧର୍ବ ସଙ୍ଗରେ ଲେଉଟିଲେ ଦୁଃଖେ
ଆପଣା ନିଳୟ ।

ଅପ୍‌ସରମାନଙ୍କ ପ୍ରତ୍ୟାବର୍ତ୍ତନ ପରେ ଇନ୍ଦ୍ର ଅର୍ଜୁନଙ୍କ ଆଶ୍ରମରେ ଉପସ୍ଥିତ ହେଲେ ।

(ରାଗ–ରେଖି)

ମନେ ରଖି ଶତ୍ରୁଦ୍ୱେଷ ନିର୍ବିକାରେ ଗୁଡାକେଶ[19]
ତପସ୍ୟାମଗ୍ନ ସଦେଶ ଘନବାହନ[20]
ଅପ୍‌ସର ମୁଖଁରୁ ଶ୍ରବଣେ ଅର୍ଜୁନାଶ୍ରମ ବୀକ୍ଷଣେ[21]
ବାହାରି ଅଳପ କ୍ଷଣେ ହୋଇ ପ୍ରସନ୍ନ
ଅଧ୍ୱକ୍ଲାନ୍ତ[22] ପଳିତ[23] ପରି
ପ୍ରବେଶିଲେ ପୁତ୍ର ଅଗ୍ରେ ଛଳନା କରି ।

ଖଣ୍ଡିଏ ଯଷ୍ଟି ହସ୍ତରେ ଜଟାଜୁଟ[24] ମସ୍ତକରେ
ସିତକେଶ[25] ଭ୍ରୂଯୁଗରେ ଜୀର୍ଣ୍ଣ ଅଜିର[26]
ତାହାଙ୍କୁ କରି ଦର୍ଶନ ପ୍ରେମରେ ପ୍ରେମନନ୍ଦନ[27]
ଦିଅନ୍ତେ ପାଶେ ଆସନ ଏମନ୍ତ ଗିର
ଶ୍ରମ ଦୂର କରିବା ପରେ
ଭଷିଲେ ସେ ବର୍ଷୀୟାନ କଥା ଛଳରେ ।

"ମାଦୃଶ ବ୍ୟକ୍ତି ଏ ଭବେ ବିଷୟ ନଛାଡ଼ ଲଭେ
ମାତୁଛି ନିତି ଗରବେ ପଡେ ନୟନେ

୧ ଅର୍ଜୁନ, ୨ ଏକାଗ୍ର, ୩ ଚକ୍ଷୁ, ୪ ଅର୍ଜୁନ, ୫ ସୁନ୍ଦରୀ, ୬ ଅନ୍ୟମନସ୍କ, ୭ ନିକଟକୁ, ୮ ଭାସ୍କର, ୯ ବସନ୍ତ, ୧୦ କୋକିଳ ଧ୍ୱନି, ୧୧ ସଙ୍କେତ, ୧୨ ସଦା, ୧୩ ଭ୍ରମରମାନେ, ୧୪ ସୁଗନ୍ଧ, ୧୫ ଗୀତ, ୧୬ ବସନ୍ତକାଳ, ୧୭ ଅର୍ଜୁନ, ୧୮ ଇନ୍ଦ୍ରଙ୍କ ପୁଅ ଅର୍ଜୁନ, ୧୯ ଅର୍ଜୁନ, ୨୦ ଇନ୍ଦ୍ର, ୨୧ ଦର୍ଶନେ, ୨୨ ବାଟରେ ହାଲିଆ ହୋଇଥିବା, ୨୩ ବୁଢ଼ା, ୨୪ ଜଟା ସମୂହ, ୨୫ ଧୋବ ବାଳ, ୨୬ ଶଙ୍କର, ୨୭ ଅର୍ଜୁନ ।

ସୌମ୍ୟ କଳେବର ତବ　　ତଥା ଗୁଣେ ସଉଷ୍ଠବ
ଉଭୟ ଗୁଣ ଦୁର୍ଲ୍ଲଭ ତବ ସାଧନେ
ସୁବର୍ଣ୍ଣରେ ସୁଗନ୍ଧ ଯୋଗ
ତେଜିଛି ଅକ୍ଷରଚରି[1] ଯୌବନ ଭୋଗ ।

ଦେଖ ଯଉବନ ଶିରୀ　　ପଳାଉଛି ଥିରି ଥିରି
ଘନାନ୍ତ[2] ଜୀମୂତ[3] ପରି ବିଷୟ ଭୋଗେ
ଆସକ୍ତି ରଖି ମାନବ　　ପାଉଛି ସଦା ଆଶ୍ରବ[4]
ଗୌରବ ସିନା ଲାଘବ ଲାଳସା ଯୋଗେ
ଦୁଃଖପୂର୍ଣ୍ଣ ଜୀବ ଜୀବନ
ଆପାତ ସୁଖକୁ ସାଧୁ କରେ ବର୍ଜନ ।

କଲ୍ୟାଣକାରିଣୀ ବୁଦ୍ଧି　　ଉପେକ୍ଷି ନିରତ ଋଦ୍ଧି
କରିବାକୁ ଚିତ୍ତ ଶୁଦ୍ଧି ରହେ ଜାଗ୍ରତ
ତପେ ହିଂସାପରାୟଣ　　ହୋଇ ଆୟୁଧ ଧାରଣ
ଅଟଇ ମହା ଦୂଷଣ ଅନବରତ
ମୁକ୍ତିକାମୀ ଶରୀର ପ୍ରତି
ନରଖି ଆସ୍ଥା ଇଚ୍ଛଇ ପରମ ଗତି ।

ପ୍ରାଣୀଙ୍କି ଜନ୍ମାଏ ଭୟ　　ତୁମର ଏ ବାହୁଦ୍ୱୟ
କରିବାକୁ ଶତ୍ରୁ ଜୟ ତୁମ କାମନା
ଶାନ୍ତ ମାର୍ଗ ପରିହରି　　ଭୀଷଣ ଆୟୁଧ ଧରି
ବସିଛ ତପସ୍ୟା କରି ବୃଥା ଧଦନା
ତୁମର ଏ କର୍ମ ଜଟିଳ
କରୁଛ ପଙ୍କିଳ ସିନା ସ୍ୱଚ୍ଛ ସଲିଳ ।

ମୁକ୍ତିଲାଗି ଶତ୍ରୁ ଧନ　　କ୍ଲେଶ ସାଧ୍ୟ ଉପାର୍ଜନ
ଉପୁଜେ ନାନା କଷଣ ତା'ର ରକ୍ଷଣେ
ନଜାଣି ଭବେ ଅବ୍ୟକ୍ତ[5]　　ଧନ ପ୍ରତି ଅନୁରକ୍ତ
ନୋହି କେବେ ଅନାସକ୍ତ ଚପଳ ପଣେ
ଅନର୍ଥର ହେତୁ ସମ୍ପତ୍ତି
ଅବିସ୍ତରେ କରେ ସଦା କୁଟିଳ ଗତି ।

ଅର୍ଥଲାଭ ପରିହରି　　ସମାଧି ଆଶ୍ରୟ କରି
ବୀରଧର୍ମ ଅନୁସରି ଅଛ ଏଠାରେ
ଆପଣା ପୀଡା ଯେପରି　　ପରର ବାଧା ସେପରି
ଭଲମନ୍ଦ ନ ବିଚାରି ଯେହୁ ସଂସାରେ
କରୁଅଛି କରମମାନ
ଅସହାୟେ ଭୋଗଇ ସେ ଦୁଃଖବିତାନ ।

ନ୍ୟାୟକୁ ଅବଲମ୍ବନ　　କରିଥାଏ ତପୋଧନ
ସମଦ୍ରୋହ ବର୍ଜନ କରି ସଦରେ
ନାଶିକା ନେତ୍ର ଶ୍ରବଣ　　ଥାଆନ୍ତୁ ଇନ୍ଦ୍ରିୟଗଣ
ନପଶି କା'ର ଶରଣ ସ୍ୱଚ୍ଛ ଅନ୍ତରେ
ଅନ୍ତଃ ଶତ୍ରୁ କରି ଦମନ
ଯଶଲାଭ କରି ତପେ ଜିଣ ଭୁବନ ।

ଜୀବନଟା ବିଷଯୁକ୍ତ　　ଅନ୍ନତୁଲ୍ୟ ବୋଲି ଉକ୍ତ
ଥିବାରୁ ଯୋଗୀଏ ମୁକ୍ତ ହେବା ନିମିତ୍ତେ
କରନ୍ତ ଉଦ୍‌ଯୋଗ ନିତି　　ବିଷୟେ ନରଖି ପ୍ରୀତି
ଅବଲମ୍ବି ଦୃଢ ନୀତି ପ୍ରଶାନ୍ତ ଚିତ୍ତେ
ଗୁଣାର୍ଜନ ଅତି ଦୁର୍ଲ୍ଲଭ
ଜଳର ବୁଦ୍‌ବୁଦ୍[6] ପରି ସିନା ବୈଭବ ।

ନୀଚ୍ଚନୀଚ ପ୍ରିୟାପ୍ରିୟ　　ନଜାଣେ ଅଜିତେନ୍ଦ୍ରିୟ
କରେ ଘୃଣା ପୂଜନୀୟ ଦେଖନ୍ତ ଜନେ

୧ ତପସ୍ୟା, ୨ ଓ ୩ ବର୍ଷା ଶେଷରେ ମେଘ ପଳାଇଲା ପରି, ୪ କ୍ଲେଶ, ୫ ମୂର୍ଖ, ୬ ପାଣି ଫୋଟକା ।

ପୁନର୍ଜନ୍ମ ନିବର୍ତ୍ତକ ମୋକ୍ଷହିଁ ସୁଖଦାୟକ
ପାସୋରି ମନୁଁ ଦୂଷକ ସ୍ୱାର୍ଥ ସାଧନେ
ସ୍ୱପ୍ନତୁଲ୍ୟ ଅର୍ଥାନୁସରି
ପୁରୁଷର ହୁଏ ଭୃତ୍ୟ ବଳଦ ପରି ।

ସ୍ୱାର୍ଥ ସାଧନ ନିମିତ୍ତ ପରାଧୀନ ଅନୁଚିତ
ତେଜିଲେ ଶସ୍ତ ତୁରିତ ପାଇବ ମୁକ୍ତି"
ଏଷିବା ଅନ୍ତେ ବାସବ ଓଜସ୍ୱୀ ଅର୍ଥ ଗୌରବ
ସିତସପ୍ତି[୧] ଅକୈତବ[୨] ମଧୁର ଉକ୍ତି
ଉତ୍ତରନ୍ତେ ଅତି ଗମ୍ଭୀରେ
ଶତକ୍ରତୁ[୩] ସେହୁଡ଼କ ଶୁଣିଲେ ଧୀରେ ।

## ଅର୍ଜୁନଙ୍କ ପ୍ରତ୍ୟୁକ୍ତି

କହନ୍ତ ବିଜୟ "ଜାତିରେ କ୍ଷତ୍ରିୟ
କୁନ୍ତୀ ଦେବୀଙ୍କ ମୁଁ ତନୟ
କୃଷ୍ଣ ଦ୍ୱୈପାୟନ ଉପଦେଶ କ୍ରମେ
ରଖିଅଛି ତପେ ହୃଦୟ
ବୃଦ୍ଧ ହେ, ବୈରି ନିର୍ଯାତନା ନିମିତ୍ତ
ଜୀମୂତ[୪] ବାହନ ଉପାସନା ଲାଗି
ହୋଇଅଛି ଯୋଗେ ଆସିତ ।

କପଟ ପାଶେ ମୋ ଅଗ୍ରଜ କୌନ୍ତେୟ
ସର୍ବସ୍ୱ ହରଇ ପଣରେ
ପାଞ୍ଚାଳୀକି ଘେନି ଅନୁଜ ସହିତ
ପ୍ରବେଶିଲେ ବନେ ଦୁଃଖରେ
ବୃଦ୍ଧ ହେ, ବୈରାଗ୍ୟ ଆସିବ କିପରି ?
ସନ୍ତାପିତ ପ୍ରାନ୍ତ[୫] ହେଉଅଛି ଢାରି
ଶାତ୍ରବେ[୬] ହାରିବେ ଯେପରି ।

ଅରାତି ନିକର ସଭରେ ଆମର
ବସନ ଆକର୍ଷି ରାଗରେ
ମର୍ମଚ୍ଛିଦ ବାକ୍ୟ କରିଲେ ପ୍ରୟୋଗ
ଗାଙ୍ଗେୟ ଦ୍ରୋଣାଦି ଆଗରେ
ବୃଦ୍ଧ ହେ, ଯାଜ୍ଞସେନୀ[୭] କେଶ ଅମ୍ବର[୮]
ଦୁର୍ଯୋଧନାଦେଶେ ଦୁଃଶାସନ ଆସି
କଲା ଆକର୍ଷଣ ସତ୍ୱର ।

ତିରସ୍କୃତ ହୋଇ ଆମ୍ଭେ ପାଞ୍ଚ ଭାଇ
ହରିଣ ସଦୃଶ ଆହାରେ
ନାନା ପ୍ରେଷ[୯] ସହି କଟାଉ ସମୟ
ଘୋର ବନଦେଶ ବିହାରେ
ବୃଦ୍ଧ ହେ ମାନହୀନ ବ୍ୟକ୍ତି ଉବରେ
ତୃଣ ଠାରୁ ମଧ୍ୟ ହୀନ ବିବେଚିତ
ହୋଇଥାଏ ଲୋକ ମତରେ ।

ତୃଣପ୍ରିୟ ଭ୍ରାତ କୌନ୍ତେୟ ସହିଲେ
ନିକୃଷ୍ଟ ଅବସ୍ଥା ଆମର
ନ ଲଂଘି ମର୍ଯାଦା ସତ୍ୟ ରକ୍ଷା କରି
ସହୁଛନ୍ତି ଦୁଃଖ ନିକର
ବୃଦ୍ଧ ହେ, ମନସ୍ୱୀ ପୁରୁଷ ମାନସ
କଳୁଷିତ ହୋଇ ସ୍ୱଚ୍ଛତାକୁ ଧରି
ବିକଶେ ଅପୂର୍ବ ସହସ[୧୦] ।

ପ୍ରତାପ ସଂପନ୍ନ ମାନୋନ୍ନତ ଜନ
ବୀର ଧର୍ମ ପାଳି ମର୍ତ୍ତ୍ୟରେ
ବଇରି ବିଧ୍ୱଂସ କରି ଇଷ୍ଟ[୧୧] ମୁନେ
ରଖଇ କୀରତି କୁଳରେ
ବୃଦ୍ଧ ହେ, ଜୟଶ୍ରୀ ଲୋଡ଼ଇ କେବଳ
ଦିଅନ୍ତୁ ଆଶିଷ ଯେପରି ଏ କର୍ମ
ହେବ ଅବିଳମ୍ବେ କୁଶଳ ।

---

୧ ଅର୍ଜୁନ, ୨ କପଟଶୂନ୍ୟ, ୩ ଇନ୍ଦ୍ର, ୪ ଇନ୍ଦ୍ର, ୫ ଚନ୍ଦ୍ର, ୬ ଶତ୍ରୁମାନେ, ୭ ଦ୍ରୌପଦୀ, ୮ ବସ୍ତ୍ର, ୯ କ୍ଲେଶ, ୧୦ ଶକ୍ତି, ୧୧ କାର୍ଯ୍ୟ ।

ଉଷୀର[୧] କ୍ଷେତ୍ରରେ  ଶାଳି ବୀଜ ବୁଣା
ଘଟଇ ବିଫଳ ଯେସନ
ସଙ୍ଗତି ନ ଜାଣି  ଉପଦେଶ ଦେବା
ହୁଅଇ ଅଗ୍ରାହ୍ୟ ତେସନ
ବୃଦ୍ଧ ହେ,  କୁମୁଦ ବାନ୍ଧବ ବିକାଶେ
ହୋଇଲେ ଉଦିତ  ସରୋଜିନୀ ମନ
ମାତି ଉଠିବ କି ବିକାଶେ[୨] ?

ସିଂଧୂର୍ମି ସଦୃଶ  ଚପଳ[୩] ସୁଖକୁ
ନ ଇଚ୍ଛି ଅନିତ୍ୟ ସଂସାରେ
ସମୁଚ୍ଛେଦ ଲାଗି  ଆପଣା ଶତ୍ରୁକୁ
ବଂଶ ଲକ୍ଷ୍ମୀଙ୍କର ଉଦ୍ଧାରେ
ବୃଦ୍ଧ ହେ, ନୋହିଲେ ଚେଷ୍ଟିତ ପୁରୁଷ
ଇହଲୋକେ ତାର  ବଢ଼ିବ କିପରି
ଗୁଣୀଙ୍କ ସଙ୍ଗରେ ପୌରୁଷ ।

କହ ତପୋଧନ  ଶତ୍ରୁକୁ ନ ଜିଣି
ଯେ ପୁରୁଷ ଶାନ୍ତ ଆଚରେ
ପୁରୁଷ ନାମର  ସାର୍ଥକତା ନାଶି
ଲଭେ ପରାଭବ ଲୋକରେ
ବୃଦ୍ଧ ହେ, ପଛଘୁଞ୍ଚା ଦେଲେ ବ୍ୟସନେ[୪]
ନିର୍ମଳ ଚଂଦ୍ରରେ  କଳଙ୍କ ସଦୃଶ
ରହଇ ଲାଞ୍ଛନ[୫] ଜୀବନେ ।

ଲୋକ ଅପବାଦ  ନ ଡରି ଆଚରେ
ସର୍ବଦା ଧୂର୍ତ୍ତତା ଯେ ଜନ
ଅମର୍ଷ[୬] ଅଶନି[୭]  ନିକ୍ଷେପଣ କରି
ଘଟାଇବ ତାର ନିଧନ
ବୃଦ୍ଧ ହେ, ନ କରେ କେ ନିନ୍ଦା ଭବରେ
ଶତ୍ରୁକୃତ ପାପ  ପଙ୍କକୁ ଧୋଇଲେ
ସେମାନଙ୍କ ପତ୍ନୀ ଅସ୍ରରେ ।"

ଶୁଣି ସହସ୍ରାକ୍ଷ[୮]  ସବ୍ୟସାଚୀ[୯] ଠାରୁ
ଏମନ୍ତ କରୁଣ ବଚନ
ସ୍ୱରୂପ ପ୍ରକାଶ  କରି ତତକ୍ଷଣେ
ଆଲିଂଗି ଭଷିଲେ ଏସନ
"କାପାଳୀ[୧୦], ସେବନ କର ଯାଇ ଖରେ
ସନ୍ତୁଷ୍ଟ ହେଲେ ସେ  ନିବେଦିବ ତାଙ୍କୁ
ଯେପରି ଜିଣିବ ସମରେ ।"

## ଅର୍ଜୁନଙ୍କ ଶିବଙ୍କୁ ଆରାଧନା

(ରାଗ-କଳହଂସ କେଦାର)

ଜୀମୂତ[୧୧] ତିରୋଧାନ ପରେ ବିଜୟ[୧୨]
ସପ୍ତାଶ୍ୱ[୧୩] ଅଭିମୁଖେ କରିଲେ ଲୟ ।

ପୁଲକେ ଏକପାଦେ ହେଲେ ସେ ଠିଆ
ବାହ୍ୟାଭ୍ୟନ୍ତର ଶୁଦ୍ଧେ ଛାଡଲେ ଖିଆ ।

ନଗପତି ସନାଭି[୧୪] ହେଲେ ଅଚଳ
କାମନା ସିଦ୍ଧି ଲାଗି ହେଲେ ଅଟଳ ।

ମହାମନା ଲୋକର ଧୈର୍ଯ୍ୟ ଦୁର୍ଜ୍ଜେୟ
ମଣନ୍ତି ଜୀବନକୁ ସର୍ବଦା ହେୟ ।

ସୁରଭି[୧୫] ପକ୍ୱଫଳେ ମନ ନ ବଳେ
ସୁକୃତୀ[୧୬] ପୁରୁଷର ଧ୍ୟାନ ନିଷ୍ଫଳେ ।

ରଜ ତମ ଉଭୟେ ହେଲେ ପରାସ୍ତ
ସତ୍ତ୍ୱଗୁଣେ ଲୋକର ଚିତ୍ତ ପ୍ରଶସ୍ତ ।

ବିଭୀଷଣ ବପୁକୁ କଲେ ଧାରଣ
ପଳାଉଛନ୍ତି ଦେଖି ବାରଣଗଣ[୧୭] ।

ନିଶୀଥେ ପ୍ରଜ୍ୱଳିତ ଜ୍ୱଳନସମ[୧୮]
ଦିଶୁଥିଲା ଅଜିର ତେଜ ସୁଷମ ।

ଚଉଦିଗରେ ଦନ୍ତ ପ୍ରଭା ପ୍ରସରି
ଶୋହୁଥିଲା ଏକାଳେ ପୂର୍ଣ୍ଣେନ୍ଦୁ ପରି ।

୧ ବେଣା, ୨ ଉଲ୍ଲାସେ, ୩ ଚଞ୍ଚଳ କ୍ଷଣସ୍ଥାୟୀ, ୪ ବିପଦରେ, ୫ କଳଙ୍କ, ୬ କ୍ରୋଧ, ୭ ବଜ୍ର, ୮ ଇନ୍ଦ୍ର, ୯ ଅର୍ଜୁନ, ୧୦ ଶିବ, ୧୧ ଇନ୍ଦ୍ର, ୧୨ ଅର୍ଜୁନ, ୧୩ ସୂର୍ଯ୍ୟ, ୧୪ ହିମାଳୟ ସଦୃଶ, ୧୫ ମନୋହର, ୧୬ ଧର୍ମାତ୍ମା, ୧୭ ହାତୀ, ୧୮ ଅଗ୍ନି ।

ନିତ୍ୟ ସବନ[1] ଲଗି ଥିବା ଚରଣ
ଧରବକ୍ଷ କଂପିତ କଲେ କ୍ଷେତଣ ।

କାର୍ମୁକ[2] ଦେଖି ମନେ ହୁଏ ପ୍ରତୀତ
ଦମ୍ଭୋଳିଧର[3] ଚାପ[4] ପର ପତିତ ।

ଦୁର୍ଦ୍ଧର୍ଷ ଜ୍ୟୋତି ଦେଖି ମହର୍ଷିଗଣ
କାଳେଶ[5] ପାଶେ ଯାଇ ନେଲେ ଶରଣ ।

ତ୍ରିକାଳଜ୍ଞ ଶମ୍ଭୁ ତା ଦର୍ଶନ ପାଇଁ
ଶଇଳ ଶିଖରକୁ ଦେଲେ ଅନାଇଁ ।

ସୌମ୍ୟ ମୂରତି ଧରି ଚଂଦ୍ରଶେଖର
ସାକ୍ଷାତ ଦେଲେ ଆସି ମୁନି ନିକର ।

ମସ୍ତକେ ଜଟାଜୁଟ[6] ଅହି କଣ୍ଠରେ
ସ୍କନ୍ଧେ ଶୋଭିତ ଯଜ୍ଞ ଉପବୀତରେ ।

ତୁହିନ[7] ରଶି ପରି ଧୂର୍ଜ୍ଜଟି[8] ଦିଶଇ
ବିସାରୀ[9] ଚଂଦ୍ର ତେଜ ସରି ନୁହଇ ।

ଆଗରେ ଠିଆ ହୋଇ ତାପସଚୟ
ଭଷିଲେ ଅର୍ଜୁନଙ୍କ ତପ ବିଷୟ ।

"ଜଗତକୁ ଜିଣିବା ଇଚ୍ଛା ବା କରି
ଦିଶନ୍ତି ତେଜୋବନ୍ତ ତପ ଆଚରି ।"

ଏମାନଙ୍କ ଉଦନ୍ତ ଶୁଣି ଶବର
"ଶତ୍ରୁ ସଂହାର ଲଗି ପୃଥାକୁମାର ।

ଅର୍ଜୁନ ନିରଜନା ମୋର କରନ୍ତି
ନ ଜାଣନ୍ତି କିପରି ତାପସପନ୍ତି ?

ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ଅନୁରୋଧରେ
ଦାନବ ବଧ ଲଗି ପ୍ରଜା ହିତରେ ।

ଜନମିଛନ୍ତି ମର୍ତ୍ତ୍ୟଲୋକେ ଅର୍ଜୁନ
ଶକ୍ର ଆଦେଶମତେ ତପେ ମଗନ ।

ମୂକ ନାମେ ଦଇତ ଏକ ବାହାରି
ଅର୍ଜୁନ ତପ ସୁର କୃତ୍ୟ ବିଚାରି ।

ତାଙ୍କ ନିଧନ ଲଗି ହେଲଣି ବ୍ୟଗ୍ର
ହୁଦାର[10] ରୂପେ ଯାଏ ତାହାଙ୍କ ଅଗ୍ର ।

ପାପାସକ୍ତ ନିରତ ସେହି ରାକ୍ଷସ
ବିନାଶ କରି ତାକୁ ରଖିବି ଯଶ ।

ମୋ ସଙ୍ଗେ ଆସ ତୁମେ ଋଷି ସକଳ
ଦେଖିବ ଦୈତ୍ୟ ଯତ୍ନ ହେବ ବିଫଳ ।"

ଏମନ୍ତ କହି ଖରୁ[11] 'କିରାତ[12]'ବେଶ
ଧରି ଅଇଲେ ଖରେ[13] ସେ ବନ ଦେଶ ।

ଶୂଳ, ପରଶୁ ଚାପ ଶର ଧାରଣ
କରି, ଆଇଲେ ସଙ୍ଗେ ପ୍ରମଥଗଣ ।

ସୁଶୋଭିତ ଲତାନ୍ତେ[14] କେଶ ମଣ୍ଡିତ
ଶବଭସ୍ମ କପୋଳେ ଅତି ଶୋଭିତ ।

ନୟନ ଦିଶୁଅଛି ଅରୁଣ ବର୍ଣ୍ଣ
ଅଜଗବ[15] ନିକ୍‌କଣେ[16] ବଧିର କର୍ଣ୍ଣ ।

ଜନମାଗର ଦୃଶ୍ୟ ଦେଖି ସକଳେ
ବୁଲିଲେ ଘରିଆଡେ ମୃଗୟା ଛଳେ ।

ମାର୍ଗରେ ଇତସ୍ତତ ହରିଣକରୀ
ପଳାଇ ଯାଉଥିଲେ ତକ୍ଷଣେ ଡରି ।

ପ୍ରବଳ ଭୟ ହେତୁ ବାଳ ଚମରୀ
ବେଣୁ[17] ଗୁଳ୍ମେ ଛପିଲ ମାଆକୁ ଧରି ।

ଗଜମଦ ବାସିତ ସଟା[18] କେଶରୀ
ଜୃମ୍ଭାମାରି[19] ରହିଲ ନିଃଶଙ୍କ ପରି ।

ଏଣେ ଦେଖିଲେ ଅଗ୍ରେ ଭୀମ ଅନୁଜ
ବରାହ ବପୁ ଧରି ମୂକ ଦନୁଜ ।

୧ ସ୍ଥାନ, ୨ ଧନୁ, ୩ ଇନ୍ଦ୍ର, ୪ ଧନୁ, ୫ ଶିବ, ୬ ଜଟା ସମୂହ, ୭ କାକର, ୮ ଜଟା, ୯ ପ୍ରସାଶ୍ୱ, ୧୦ ବଗ୍ଧ, ୧୧ ଶିବ, ୧୨ ଶବର, ୧୩ ଶୀଘ୍ର, ୧୪ ଫୁଲ, ୧୫ ଧନୁ, ୧୬ ଶବ୍ଦ, ୧୭ ବାଉଁଶ, ୧୮ ଜଟା, ୧୯ ହାଇ ମାରି ।

ବୃକ୍ଷ ମୂଳ ବିଦାରି ସ୍କନ୍ଧ ଘର୍ଷଣ
କରି ଆସେ ଦେଖାଇ ଯୁଦ୍ଧ ଲକ୍ଷଣ ।

ଭାବିଲେ ମନେ ଜିଷ୍ଣୁ[1] ଏହି ଭୂଦାର[2]
ଆହୁତି କରିବାକୁ ମୋତେ ସଂହାର ।

ଛଦ୍ମେ ବରାହ ମାତ୍ର ଜଣେ ଦଇତ
ନ ବଧିଲେ ଏହାକୁ ହେବ ଅହିତ ।

ମନ ହୁଏ ପ୍ରସନ୍ନ ଯାର ଦର୍ଶନେ
ସେ ସିନା ମିତ୍ର ବୋଲି କହନ୍ତି ଜନେ ।

ନିରପରାଧ ଋଷି ପୁଣି ଜିତାତ୍ମା
ଡରିବ କିପାଁ ଚିନ୍ତେ ଦେଖି ଦୁରାତ୍ମା ।

ଅବା ଦୁର୍ଯ୍ୟୋଧନାଦି ମୋର ନିଧନେ
ବରାହ ରୂପେ ୟାକୁ ପେଷିଲେ ବନେ ।

ଏବଂଭୂତ[3] ବିତର୍କେ ଶକ୍ର[4] କୁମାର
ଯୋଖିଲେ ଗାଣ୍ଡୀବରେ ସୁତୀକ୍ଷ୍ଣ ଶର ।

ନିଯୋଗ କାଳେ ଅବ୍ଦ[5] ଶବ୍ଦ ସଦୃଶ
ହେଲା ଜାତ ତହିଁରୁ ନିନାଦ ଭୀଷଣ[6] ।

ସହସା ଆସି ଶଙ୍କୁ[7] ପ୍ରବେଶ କରି
କ୍ଷେପିଲେ ନାରାଚେକ[8] ପିନାକ ଧରି ।

ସଙ୍ଗେ ସଙ୍ଗେ ଅର୍ଜୁନ ନ୍ୟାସିଲେ ବାଣ
ଉଭୟ-କାଣ୍ଡ ଭେଦି ଗଲା ତା ପ୍ରାଣ ।

ଶିବ ପ୍ରେରିତ ଶର ନେବା ମାନସେ
ବରାହ ପାଶେ ଗଲେ ପାର୍ଥ[9] ରଭସେ[10] ।

ବନେଚରେକ ଜାଣି ବିଜୟ[11] ମନ
ନ ଦେବାକୁ ସେ ବାଣ କଲା ବାରଣ ।

"ସଦାଚାର ପଦ୍ଧତି ନ ଛାଡ ଲବେ
ନ୍ୟାୟ ମାର୍ଗେ ରହନ୍ତି ତାପସେ ଭବେ ।

ଅମାର୍ଗରୁ ନିବୃତ୍ତ ହେବାକୁ ଲୋକେ
ଦିଅନ୍ତି ଉପଦେଶ ଯୋଗୀଏ ଲୋକେ[12] ।

ନିଶିତ[13] ଇଷୁ[14] ଯୋଗେ ପ୍ରଭୁ ଆମ୍ଭର
ଦୈତ୍ୟ ମାରି ସାଧିଲେ ଇଷ୍ଟ ତୁମ୍ଭର ।

ଚମୂପତିଙ୍କ ବିନା କିଏ ଏ ଭବେ
ନିସ୍ତ୍ରିଂଶନେ[15] ସମର୍ଥ ହୁଅନ୍ତା ଲବେ ।

ତୁମଭଳି ସଜ୍ଜନ କରିଲେ କୋପ
କୃତଜ୍ଞତା ଜଗତୁଁ ପାଇବ ଲୋପ ।

ଆପଦରୁ ଯେ ବନ୍ଧୁ କିରାତ ପତି
ତାଠାରେ ରହୁ ସଦା ତୁମ୍ଭର ମତି ।

ଅଟଇ ମୋ ସ୍ୱାମୀଙ୍କ ଶୁଦ୍ଧ ଚରିତ
ଶ୍ରବଣେ ନହୁଏ କେ ସଦା ମୋହିତ ?

ସମ୍ପର୍କ ରଖି ଆମ ସ୍ୱାମୀଙ୍କ ସହ
ତପସ୍ୟା ଫଳ ହେତୁ ତୁଟ ନିର୍ବନ୍ଧ[16] ।

ପ୍ରବଳ ଶତ୍ରୁ କରେ ଧନ ହରଣ
ତେଣୁ ମିତ୍ରତା ପାଶେ ପଶ ଶରଣ ।

ଅମାର୍ଗରୁ ନିବୃତ୍ତ ହେଲେ ପୁରୁଷ
ଲୋକ ମୁଖରେ ସିନା ମିଳେ ପୌରୁଷ ।

ଅନ୍ୟ ବ୍ୟକ୍ତି ପ୍ରେରିତ ବିଶିଖ[17] ପ୍ରତି
ମନସ୍ୱୀ ପୁରୁଷର ନବଳୁ ମତି ।

ଫଣୀର[18] ଶିରୋମଣି ନେବାକୁ ବଳେ
ଉଦ୍ୟମ କଲେ ଶେଷେ ବିଷମ ଫଳେ ।

ତ୍ୟଜନ[19] କର ତୁମେ ଚପଳ କର୍ମ
କିଏ ସହିବ କହ କଲେ ଅକର୍ମ ?

ଖଟିଲା ବନେଚର ତାଙ୍କ ମାର୍ଗଣ[20]
ନ କଲେ ପ୍ରତ୍ୟର୍ପଣ ଲାଗିବ ରଣ ।"

୧ ଅର୍ଜୁନ, ୨ ବରାହ, ୩ ଏହିପରି, ୪ ଅର୍ଜୁନ, ୫ ମେଘ, ୬ ଅତଶସ୍ତ, ୭ ଶିବ, ୮ ଶର ଗୋଟିଏ, ୯ ଅର୍ଜୁନ, ୧୦ ଶୀଘ୍ର, ୧୧ ଅର୍ଜୁନ, ୧୨ ଜଗତେ, ୧୩ ମୁନିଆଁ, ୧୪ ଶର, ୧୫ ବିନାଶେ, ୧୬ ବନ୍ଧନ, ୧୭ ଶର, ୧୮ ସାପ, ୧୯ ତ୍ୟାଗ, ୨୦ ଶର ।

## ଅର୍ଜୁନଙ୍କ ପ୍ରତ୍ୟୁକ୍ତି (୨)

ପ୍ରଗଲ୍‌ଭ ଭାରତୀ କିରାତର ଶୁଣି
ବିଜୟ ବିକ୍ଷୁବ୍‌ଧ ମାନସେ
ନୋହି ବିଚଳିତ ମୁଖାବନ୍ଦ ବୋଲି
ଭଷିଲେ ଋଭସେ ସାହସେ
ବ୍ୟାଧ ହେ, ପୁଣ୍ୟବାନ ଲୋକ ଭବରେ
ମନୋଗତ ଭାବ କରନ୍ତ ପ୍ରକାଶ
ନ ଆଚରି ଶାଠ୍ୟ ଅନ୍ତରେ ।

ଫଳ ବିରୋଧର କର୍ମ କରିବାକୁ
ଉଦ୍ୟତ ନୃପତି ତୁମ୍ଭର
ଏବେ ବ୍ୟତିକ୍ରମ କଥାମାନ କହି
ଭିଆଅ ଅହିତ ଲୋକର
ବ୍ୟାଧ ହେ, ସତତ ସଂସାରେ ସଜ୍ଜନେ
ସାଧୁ ଆଚରଣ ଅବଲମ୍ବି ହୃଦେ
ରଖିଥାନ୍ତି ଯଶ ଭୁବନେ ।

ଅକ୍ଷୟ ତୂଣୀର ତଥା ଶୀଳିମୁଖ[1]
ଦେଇଛନ୍ତ ମୋତେ ଅନିଳ
ତେବେ କେଉଁପରି କିରାତ[2] ସାୟକେ
ଅଛି ମୋ ଆଦର, କହଳ
ବ୍ୟାଧ ହେ, ଭିଆଇବା ଲାଗି ପ୍ରୟାସ
କହୁଛ ତୁଚ୍ଛାକୁ ଏକୁଟିଆ ଦେଖି
ଉପୁଜାଇ ମନେ ବିତ୍ରାସ ।

ନିଜ ଦୋଷଚୟ ଘୋଡାଇବା ଲାଗି
ନିର୍ଦ୍ଦୋଷ ବ୍ୟକ୍ତିକି ଦୋଷରେ
କଲ ଅଭିଯୋଗ ଉଲେଇ ହେବାକୁ
କିରାତ ନୃପତି ଆଗରେ
ବ୍ୟାଧ ହେ, ହେଲ ବୁଦ୍ଧି ଭ୍ରଷ୍ଟ ତୁମ୍ଭର
ଶରପ ହରଣେ ମୋତେ ଶଙ୍କା କରି
ପିଅ ନାହିଁ କେବେ ଜହର ।

ବନାଶ୍ରିତ ମୃଗ କୌଣସି ବ୍ୟକ୍ତିର
ନୁହେ ପରିଗ୍ରହ ଏ ଭବେ
ଯେ ମୋର ପ୍ରସରେ[3] ନିହନ୍ତା ସେ ସିନା
ପ୍ରାଣୀ ହିଂସା କରି ଗରବେ
ବ୍ୟାଧ ହେ, ଅଭିମାନ ଛାଡ ମନରୁ
ଆତ୍ମରକ୍ଷା ଲାଗି ଅଜଗର ନ୍ୟାସ
କରିଅଛି ସିନା ଭୟରୁ ।

ମୃଗୟୁ[4] ମୃଗକୁ କରୁଅଛି ବଧ
ଅବିରତ[5] ସ୍ୱାର୍ଥ ନିମିତ୍ତ
ତପସ୍ୱୀମାନଙ୍କ ଉପକାର ବୋଲି
କହିବା ନୁହଇ ଉଚିତ
ବ୍ୟାଧ ହେ, ଦୁହିଁଙ୍କ ନାଗଚେ[6]ଭୂଦାର[7]
ଶରୀରେ ପ୍ରବେଶ କରି ଏକାବେଳେ
ଘଟିଛି ତାହାର ସଂହାର ।

ବର୍ଣ୍ଣାଶ୍ରମ ଧର୍ମ ରକ୍ଷଣ ରୂପକ
ବିଶୁଦ୍ଧ ବୃତ୍ତି ଯେ ଆଚରେ
ଜାତିହୀନ ମୃଗ ଜୀବନ ନାଶକ
ହିଂସାପରାୟଣ ସଂଗରେ
ବ୍ୟାଧ ହେ ବଂଧୁତା ବାଂଧିବି କିପରି ?
ବିଷାଣୀ[8] କେବେକି ଗୋମାୟୁ[9] ସହିତ
ରହିଛି ମିତ୍ରତା ଆଚରି ।

ହେ ନୃପ ଜଗତେ ତପୋରତ ଠାରେ
କରୁଛି ଅସୂୟା ପ୍ରକାଶ
ସେ କିପରି ପୁଣି ମିତ୍ର ହେଲେ ତାର
ହୃଦୟେ ଆସିବ ଉଚ୍ଛ୍ୱାସ
ବ୍ୟାଧ ହେ, ନୀଚ ଲୋକ ସହ ମିତ୍ରତା
କଲେ ବା ସଜ୍ଜନ ଗୁଣ ନାଶ ଘଟି
ଫୁଟି ଉଠିବ ତା ହୀନତା ।

---

୧ ଶର, ୨ ଶବର, ୩ କଳାହାରରେ, ୪ ଶିକାରୀ, ୫, ସର୍ବଦା, ୬ ଶର, ୭ ବରାହ, ୮ ହାତୀ, ୯ ବିଲୁଆ ।

## ଅର୍ଜୁନଙ୍କ ସଙ୍ଗେ କିରାତ ବେଶଧାରୀ ପ୍ରମଥମାନଙ୍କ ଯୁଦ୍ଧ

(ଗଗ-ଗମକେରୀ)

ପାଶୀ[୧] ବେଶଧାରୀ ପ୍ରମଥ
ଶୁଣି କୃଷ୍ଣ[୨] ବଚନ
ପହଂଚିଲା ଯାଇ ତରସା[୩]
ପାଶେ ହରିଚନ୍ଦନ[୪] ।
ଗାଣ୍ଡୀବ ଘଷିତ[୫] ଘଷନ୍ତେ
କୋପେ ପୁଙ୍ଗବକେତୁ[୬]
ପଠାଇଲେ ସେନାମାନଙ୍କୁ
ଦିଶେ ଚୌଦିଗେ କେତୁ[୭] ।
ଅମ୍ଭୋନିଧି[୮] ଉର୍ମି ସଦୃଶ
ମାଡ଼ ଆସି ସେମାନେ
ବନଭୂମି ଅବରୋଧିଲେ
ସବ୍ୟସାଚୀ[୯] ସଂଧାନେ ।
ଜୟ ଜୟ ନାଦେ କଂପିଲା
ଗିରିଗୁହା ସକଳ
ଜ୍ୟା[୧୦]ଘୋଷ ମିଶନ୍ତେ ତହିଁରେ
ବିସ୍ଫୁରିତ[୧୧] ସେ ସ୍ଥଳ ।
ବିଶାଳ ବକ୍ଷରେ ଆଚ୍ଛାଦି
ଦଶ ଦିଙ୍ମୁଖ ଜବ[୧୨]
ସେନା ମଣ୍ଡଳର ଉପରି
ଦେଶେ ରହିଲେ ଭବ[୧୩] ।
ଏତାଦୃଶ କାର୍ଯ୍ୟ ଦର୍ଶନେ
ଧରି ଅଙ୍କୁଶଚୟ[୧୪]
ଅସମ୍ଭ୍ରମେ[୧୫]ଚକ୍ଷୁ ନିବେଶ
କଲେ ତହିଁ ବିଜୟ[୧୬] ।

କୃଶାନୁ[୧୭]ସଦୃଶ ଶରୀର
ଦ୍ୟୁତି ଦେଖି ତାଙ୍କର
ଭୟରେ ନିଷ୍ପ୍ରଭ ହେଲେଣି
ଏଣେ ଶିବାନୁଚର ।
ଅସମର୍ଥ ହେବେ ବିଚାରି
ଜଣେ ଜଣେ ଯୁଝିଲେ
ସଂଘଶକ୍ତି ଆବଶ୍ୟକତା
ଅଛି ବୋଲି ବୁଝିଲେ ।
ଏକତ୍ର ପ୍ରମଥେ ନିକ୍ଷେପ
କଲେ ବିକର୍ଷଚୟ[୧୮]
ଚତୁର୍ଦ୍ଦିଗ ବ୍ୟାପି ନିର୍ଘୋଷେ
ହେଲା ଜାତ ବିସ୍ମୟ ।
ତହୁଁ ଜିଷ୍ଣୁ[୧୯]ଇଷୁ[୨୦]ବିନ୍ଧନ୍ତେ
ଗାଣ୍ଡୀବକୁ ଉଠାଇ
ଉଲ୍କା ପରି ଶିବ ସୈନ୍ୟଙ୍କ
ପରେ ପଡ଼ିଲା ଯାଇ ।
ଲକ୍ଷ୍ୟ ଭେଦୀ ଶରସଂଘାତ[୨୧]
ଦେଖି ଶିବାନୁଚରେ
କଳ୍ପାନ୍ତ କାଳ କି ଆସିଲା
ବୋଲି ଭାବିଲେ ଡରେ ।
ବକ୍ରଗତି ନୋହି ସମର୍ଥ
ହେଲେ ତାପସ ଶରେ
ଅକ୍ଳମ ଛେଦନ, ଭେଦନ
ପାତନାଦି କର୍ମରେ ।
ସଙ୍କୁଚିତ ଚଂଦ୍ର ପ୍ରଭରେ
ଯଥା ପଙ୍କଜତତି
ଲୋଉ ହେଲେ ଭର୍ଗ[୨୨]ସେନାଏ
ପାର୍ଥ[୨୩] ମାର୍ଗଣେ[୨୪] ଅତି ।

---

୧ ବ୍ୟାଧ, ୨ ଅର୍ଜୁନ, ୩ ଚଞ୍ଚଳ, ୪ ଶିବ, ୫ ବଚନ, ୬ ଶିବ, ୭ ଅମଙ୍ଗଳ ଚିହ୍ନ, ୮ ସମୁଦ୍ର, ୯ ଅର୍ଜୁନ, ୧୦ ଧନୁ ଶବ୍ଦ, ୧୧ କଂପିତ, ୧୨ ଶୀଘ୍ର, ୧୩ ଶିବ, ୧୪ ଶରମାନ, ୧୫ ସ୍ଥିର ଭାବରେ, ୧୬ ଅର୍ଜୁନ, ୧୭ ଅଗ୍ନି, ୧୮ ଶର ସମୂହ, ୧୯ ଅର୍ଜୁନ, ୨୦ ଶର, ୨୧ ଶର ସମୂହ, ୨୨ ଶିବ, ୨୩ ଅର୍ଜୁନ, ୨୪ ଶର ।

ଏକ ମାତ୍ର ଅର୍କ[୧] ଯେପରି
ଏକ ସ୍ଥାନରେ ରହି
ନାନା ସ୍ଥାନେ ଥିବା ଲୋକଙ୍କ
ହେଲେ ଦୃଷ୍ଟି ପଡଇ ।

ବାଣବର୍ଷୀ ପାର୍ଥ ସେପରି
ରହି ଏକ ସ୍ଥାନରେ
ଭୃଗୁ[୨] ସେନାଙ୍କର ନୟନ
ପଥେ ପଡ଼ିଲେ ଖରେ ।

ଚାରିଆଡ଼ୁ ତୀବ୍ର ବେଗରେ
ଆସେ ତାପସ ଶର
ଛିନ୍ନଭିନ୍ନ ହୋଇ ବ୍ୟାହତ
ହେଲେ ଶିବାନୁଚର ।

ବାହୁଡ଼ିବା ବେଳେ ଏମାନେ
ହୋଇ ନିରସ୍ତବଳ
ପୁରୋବର୍ତ୍ତୀରୁଦ୍ର[୩] ଦେଖି ତା
ହେଲେ ରୌଦ୍ରେ[୪] ବିହ୍ୱଳ ।

ବାରବାର କଲେ ବାରଣ
ଏବେ ଏସନ କହି
"ନକର ବିନାଶ ଯଶକୁ
ହୁଟି ପ୍ରସରେ[୫] ରହି ।

ଦ୍ୱିଗୁଣିତ ତେଜ ଧରିଣ
ପଢ଼ ଉସ୍କର କର
ହସିଲ ପରଏ ଦିଶନ୍ତ
ତୁମ୍ଭ ଅସ୍ତ୍ର ବିସର[୬] ।

ପଶୁତୁଲ୍ୟ ତୁମ୍ଭମାନଙ୍କୁ
ମଣି ଏହି ପୁରୁଷ
ମୋ ସମ୍ମୁଖେ ନାଶ କରିଛି
ତୁମ୍ଭ ଯଶ ପୌରୁଷ ।

ଶୂରତାଭିମାନ[୭] ନଛାଡ଼
ରହ ରଣ ଭୂଇଁରେ
ପରାଙ୍ମୁଖ ହୋଇ ପଳାନ୍ତି
କେତେବେଳେ କି ବୀରେ ?

କଳତ୍ରର ଦୋଷ ଲୁଚଇ
ଭର୍ତ୍ତା ରଖିଲା ପରି
ଯାବତ କୁକର୍ମ ଘୋଡ଼ାଇ
ଦେବେ ସ୍ୱାମୀ ତୁମରି ।"

ଈଶାନଙ୍କ[୮] ତୁଣ୍ଡୁ ଏକାଳେ
ଶୁଣି ଉକ୍ତି ଅଭୟ
ସନ୍ତାପିତ ଧ୍ୱଜିନୀଙ୍କ[୯]
ସ୍ଥିର ହେଲା ହୃଦୟ ।

ବାର୍ତ୍ରଘ୍ନ ତୋର୍ତ୍ରଘ୍ନ[୧୦] ମଧ୍ୟରେ
ଲାଗେ ତୁମୁଳ ରଣ
ଏ ତୁମୁଳ[୧୧] ଦେଖୁ ଥାଆନ୍ତି
ମୋଦେ ପ୍ରମଥଗଣ ।

## କିରାତାର୍ଜୁନ ଯୁଦ୍ଧ

ଅଜଗବେ[୧୨] ଅଜଗବ[୧୩]
ଖଂଡି କ୍ଷେପନ୍ତେ ଭୈରବ[୧୪]
ଶୁଭିଲା ଶବ୍ଦ ରୌରବ[୧୫] କଂପିତ ବନ
କୃତହସ୍ତ[୧୬] ଧନଞ୍ଜୟ[୧୭] ନବହି କିଂଚିତ ଭୟ
ଶବର[୧୮] ଖୁପର୍ବାଚୟ[୧୯] କରି ଖଣ୍ଡନ
ଗାଣ୍ଡୀବକୁ ବହି ସ୍କନ୍ଧରେ
ରଣାଙ୍ଗନେ ସଞ୍ଚରିଲେ ଶଉର୍ଯ୍ୟ ଭରେ ।

ପ୍ରସନ୍ନ ସଦା ମାନସ ସହଜେତର[୨୦] ସାହସ
ନଥିଲା ହୃଦେ ସାଧ୍ୱସ[୨୧] ଶତ୍ରୁ ତାଡନେ
ଭ୍ରମିବାର ଗୁଡାକେଶ[୨୨] ଅବଲୋକି ଗୁଡାକେଶ[୨୩]
ନିବେଶେ[୨୪] କରି ନିବେଶ ଅତି କୋପନେ

୧ ସୂର୍ଯ୍ୟ, ୨ ଶିବ, ୩ ଅଗ୍ରେସ୍ଥିତ, ୪ ଅଶସ୍ତ୍ର, ୫ ଯୁଦ୍ଧ, ୬ ସମୂହ, ୭ ବୀରତ୍ୱ, ୮ ଶିବ, ୯ ସୈନ୍ୟ, ୧୦ ଅର୍ଜୁନ, ଶିବ, ୧୧ କଳହ, ୧୨ ଧନୁରେ, ୧୩ ଶର, ୧୪ ଶିବ, ୧୫ ଉଚ୍ଚୈଃସ୍ୱର, ୧୬ ଶର କ୍ଷେପଣେ ନିପୁଣ, ୧୭ ଅର୍ଜୁନ, ୧୮ ଶିବ, ୧୯ ଶର ସମୂହ, ୨୦ ଅଲୌକିକ, ୨୧ ଭୟ, ୨୨ ଅର୍ଜୁନ, ୨୩ ଶିବ, ୨୪ ଯୁଦ୍ଧ ।

ଦେଖାଇ ନିଜର ବିକ୍ରାନ୍ତ[୧]
କାଦମ୍ବ[୨] କଦମ୍ବ ନ୍ୟାସ କଲେ ଅଶ୍ରାନ୍ତ ।

କଣ୍ଟାଳ[୩] କ୍ଷେତ୍ରେ ଅଚଳ[୪] ପରାଏ ରହି ଅଚଳ
ତୂଣୀରୁ ତୀର ମଣ୍ଡଳ କାଢ଼ ବହନ

ରୁଦ୍ର ଆତାଳ[୫] ପାତାଳି ତତକ୍ଷଣେ ଦେଲେ ଢାଳି
ପୁନର୍ବସୁ[୬] ବିଶିଖାଳି[୭] କପିକେତନ[୮]
ହେଲା ସ୍ୱନେ ବଧିର କାନ
ବିଦ୍ୟୁନ୍ମାଳା ପରି ଶୋଭି ଶରବିତାନ[୯] ।

## ଯୁଦ୍ଧ

ଶୌର୍ଯ୍ୟବୀର୍ଯ୍ୟ ଦେଖି ଶ୍ୱେତବାହନର[୧୦]
କାବତାର[୧୧] ବୋଲି ଭାବିଲେ ହର
କଲେ କୂଟ ଏବେ ନାନା ଉପାୟରେ
କରିବାକୁ ହ୍ରାସ ଶକ୍ତି ତାଙ୍କର ।

ଯୋଦ୍ଧାମାନଙ୍କର ହୁଂକାର ଶବଦ
ଶୁଣାଯାଉ ନାହିଁ ଆଉ ସମରେ
ତେଜୋଯୁକ୍ତ ଶର ହୋଇ ଉଲ୍ଲସିତ
ଦିଶୁ ନାହିଁ କାହିଁ ବ୍ୟୋମ ଦେଶରେ ।

ପ୍ରକୃତ କିରାତ[୧୨] ନୁହେ ଏ ପୁରୁଷ
ରଖିଛି ପ୍ରଚ୍ଛନ୍ନ ନିଜ ଆକାର
ଶଶ[୧୩] ଲାଞ୍ଛନର ଶିରୀକୁ ଧାରଣ
କରି ଦୃଶ୍ୟ ହୁଏ ଶୂନ୍ୟ ବିକାର ।

ଶତ୍ରୁ ଛିଦ୍ର ଅନ୍ଧ ଦେଖି ଯୋଦ୍ଧା ଅତି
ପ୍ରହାର ବିଷୟେ ହୁଏ ଉଦ୍ୟତ
ନିଜ ଛିଦ୍ର ବହୁ ଥିଲେହେଁ ତାହାର
ଘୋଡାଇ ଦେବାକୁ ସଦା ଜାଗ୍ରତ ।

ବିହାୟସେ ଯଥା କୁମୁଦବାନ୍ଧବ[୧୪]
କାନ୍ତ ପ୍ରଭହୀନ ପୁରି[୧୫] କିରଣେ
ଶତ୍ରୁ ପରକ୍ରମ ଅତିକ୍ରମେ କ୍ଷମ
ମୋ ଶକତି ହ୍ରାସ ବ୍ୟାଧ ମାର୍ଗଣେ[୧୬] ।

ଆକାଶ ମାର୍ଗକୁ ଦୁଇଖଣ୍ଡ କରି
ଦେବା ପାଇଁ ଅବା ଏହି କିରାତ
ବାରବାର ଧନୁ ଟାଣି ପରକ୍ରମେ
କରଉଛି ଦୃଢ଼େ ସାଧ୍ୱସ[୧୭] ଜାତ ।

ଧାବି ଏହିପରି ବିଜୟ[୧୮] ଏ ଅନ୍ତେ
ପ୍ରସ୍ୱାପନ ଅସ୍ତ୍ର କରି ପ୍ରହାର
ସପ୍ତସପ୍ତିଙ୍କର[୧୯] ତେଜକୁ ଘୋଡାଇ
କରିଦେଲେ ଦଶଦିଶ ଅନ୍ଧାର ।

ସୁମେରୁ ଶୃଙ୍ଗରୁ ଅର୍କ[୨୦] ବିମ୍ବ ତୁଲ୍ୟ
କିରାତ ମୌଳିରୁ[୨୧] ଜ୍ୟୋତି ବାହାରି
ତମୋମୟୀ ଛାୟା କରିଦେଲା ଦୂର
ଶଶଧର[୨୨] କାନ୍ତ ଊର୍ଦ୍ଧ୍ୱେ ବିସ୍ତାରି ।

ନିଷ୍ପ୍ରଭ ହୁଅନ୍ତେ ପ୍ରସ୍ୱାପନ ଅସ୍ତ୍ର
ଦିଶିଲା ନିର୍ମଳ ଘନ[୨୩] ପଟଳ
ନାନା ବର୍ଣ୍ଣ ଯୁକ୍ତ ଶାଣିତ[୨୪] ଆୟୁଧ
ଧଇଲେ ଏକାଳେ ଭୈରବ[୨୫] ବଳ[୨୬] ।

ପ୍ରସ୍ୱାପନ ଅସ୍ତ୍ର ହୁଅନ୍ତେ ଶିଥିଳ
ଭୁଜବୀର୍ଯ୍ୟଶାଳୀ କପିକେତନ[୨୭]
ଭୁଜଙ୍ଗ ପାଶାସ୍ତ୍ର କରିଲେ ପ୍ରେରଣ
କରିବାକୁ ତୂର୍ଣ୍ଣେ[୨୮] ଶତ୍ରୁ ବନ୍ଧନ ।

ବିଷାଗ୍ନି ପ୍ରଯୁକ୍ତ ଭୁଜଗେନ୍ଦ୍ର ଉଘେ
ନଭସ୍ତର ତ୍ୟକ୍ତ ବିକାଶ[୨୯] ବାଟ

---

୧ ବଳ, ପରାକ୍ରମ, ୨ ଶର ସମୂହ, ୩ ଯୁଦ୍ଧ, ୪ ପଙ୍କଜ ପତ୍ର, ୫ ସଙ୍କଟ, ୬ ଶିବ, ୭ ଶର ସମୂହ, ୮ ଅର୍ଜୁନ, ୯ ଶର ସମୂହ, ୧୦ ଅର୍ଜୁନ, ୧୧ କ + ଅବତାର—ବିଷ୍ଣୁ ଅବତାର, ୧୨ ବ୍ୟାଧ, ୧୩ ଚନ୍ଦ୍ର, ୧୪ ଚନ୍ଦ୍ର, ୧୫ ସୂର୍ଯ୍ୟ କିରଣ, ୧୬ ଶର, ୧୭ ଭୟ, ୧୮ ଅର୍ଜୁନ, ୧୯ ସୂର୍ଯ୍ୟ, ୨୦ ସୂର୍ଯ୍ୟ, ୨୧ ମୁଣ୍ଡରୁ, ୨୨ ଚନ୍ଦ୍ର, ୨୩ ମେଘ, ୨୪ ପଜା ହୋଇଥିବା, ୨୫ ଶିବ, ୨୬ ସୈନ୍ୟ ସମୂହ, ୨୭ ଅର୍ଜୁନ, ୨୮ ଶୀଘ୍ର, ୨୯ ଆକାଶ ।

ଶତ ଶତ ଛିଦ୍ରା ବାରମ୍ବାର ରଚି
କଲେ ଅବରୋଧ ଭୁଜଗ ଥାଟ ।
ସର୍ପମାନଙ୍କର ଉନ୍ନମିତ[୧] ଫଣା
ମଣ୍ଡଳୁ ନିର୍ଗତ ନିଶ୍ୱାସ ଧୂମ
ସୂର୍ଯ୍ୟ ମଣ୍ଡଳକୁ ଗ୍ରାସ କଲପରି
ହୋଇଥିଲା କା'ର ମତି ବିଭ୍ରମ ।
ସର୍ପାସ୍ତ୍ର ପ୍ରଭବ ରିପୁ ପରାକ୍ରମେ
କ୍ରମେ କ୍ରମେ ରଣେ ଲଭନ୍ତେ ହ୍ରାସ
ଆଗ୍ନେୟାସ୍ତ୍ର କୃଷ୍ଣ[୨] କଲେ ନିକ୍ଷେପଣ
ଜନମାଇ ବୈରିମନେ ବିତ୍ରାସ ।
ତିର୍ଯ୍ୟକ[୩] ଗତିରେ ଉର୍ଦ୍ଧ୍ୱେ ଅଧୋଦେଶେ
ଜ୍ୱାଳାଜାଲ[୪] ବ୍ୟାପି ପ୍ରାଣୀ ନାଶନେ
ସମୀର ସଂଯୋଗେ ସ୍ଫୁଲିଙ୍ଗ ବିସ୍ତାରି
ଲାଗିଲା ଜ୍ୱଳନ[୫] ତୀବ୍ର ଜ୍ୱଳନେ[୬] ।
ଗିଳି ଦେଲାପରି ଦିଶନ୍ତେ ଲୋକକୁ[୭]
ପର୍ଜନାସ୍ତ୍ର[୮] ଯତୀ[୯] କଲେ କ୍ଷେପଣ
ତହିଁରୁ ବାହାରି ବଳାହକ ମାଳ
ଅବିରଳ[୧୧] ଜଳ କଲେ ବର୍ଷଣ ।
ଆସାର[୧୧] ପାତରେ ନିର୍ବାପିତ ଶିଖା
ଜଳପାତ ପରି ତପ୍ତ ଲୌହରେ
ପାବକ ଶରୀରେ ଉପୁଜାଇ ଧ୍ୱନି
ବିଛାଇଲା ଧୂମ ଚଉଦିଗରେ ।
ଆପନ୍ନି ବାରକ ଆଗ୍ନେୟାଦି ଅସ୍ତ୍ର
ହୁଅନ୍ତେ ସମାପ୍ତ ଇନ୍ଦ୍ରନନ୍ଦନ[୧୨]
ଅବଲମ୍ବି ଧୈର୍ଯ୍ୟ ପୁନଶ୍ଚ ଆହବେ[୧୩]
ନିବେଶିବା ଲାଗି କଲେ ଯତନ ।

ନେତ୍ର ଯୁଗଳରୁ ମହାସର୍ପ ବିଷ
ସଦୃଶ କ୍ରୋଧାଶ୍ରୁ ପଡୁଛି ଝରି
ବାହାରିଲେ ଯୁଦ୍ଧେ ଅବ୍ଦ ଶବ୍ଦ ପରି
ଗର୍ଜୁଥିବା ଚାପ[୧୪] ହସ୍ତରେ ଧରି ।
ଶମ୍ଭୁଙ୍କ ଧନୁରୁ ନିର୍ଗତ ଇଷୁରେ[୧୫]
ନିବାରଣ ପାଇଁ ଦୃଢ଼ ମନରେ
ଶୂରଧ୍ୱ ଦେଖାଇ ଧରତ୍ରୀକୁ ଜିଷ୍ଣୁ[୧୬]
କଲେ ଆଚ୍ଛାଦନ ଶର ଜାଲରେ ।
ଉଦ୍ଭଟ[୧୭] ଉଦ୍ଭଟ[୧୮] ପଟଳ ପ୍ରକ୍ଷେପି
ଗଣ୍ଡଳୀ[୧୯]ସେନାଙ୍କୁ ଦେଲେ ସନ୍ତାପ
ମାତ୍ର ଖଣ୍ଡପଶୁ[୨୦] ରହିଲେ ଅଖଣ୍ଡ
ଫଳ ଶୂନ୍ୟ ହେଲା ଜିଷ୍ଣୁ[୨୧] ପ୍ରତାପ ।
ହୈମନ[୨୨] ସପ୍ତାଶ୍ୱ[୨୩] ତେଜପୁଞ୍ଜ ଯଥା
ନ ଦିଅଇ ବାଧା କେବେ ପ୍ରାଣୀଙ୍କି
ତଥା ପୃଥା ସୁତ ଶିଖଣ୍ଡୀ[୨୪] ନିକ୍ଷେପ
ନ ଲଗିଲା ବ୍ୟଥା ପଶୁପତିଙ୍କି ।
ନିଜ ସୈନ୍ୟଠାରେ ଅର୍ଜୁନଙ୍କ କୀର୍ତ୍ତି
ବଢାଇବା ଲାଗି ଧୂର୍ଜ୍ଜଟି[୨୫] ତତ୍ପର
ଏକ ପରେ ଏକ ଜୟ ପରାଜୟ
ରଣକ୍ରିୟା ଇଚ୍ଛା ଥିଲା ତାଙ୍କର ।
ବୃଷ୍ଟି କରୁଥିବା ଘଡ଼ି ଘନସ୍ୱନେ
ଦୁଃଅନ୍ତ ଶଙ୍କିତ ଗୋବୃନ୍ଦ ଯଥା
କପିଧ୍ୱଜ[୨୬] ଧନୁ ଧନ୍ୱ ଶ୍ରବଣରେ
ଧ୍ରୁବ[୨୭]ଧ୍ୱଜନୀଏ[୨୮] ତରସ୍ତ ତଥା ।
ଜଳଜିହ୍ୱ[୨୯] ଦ୍ୱାରା ନଦୀମୁଖାଗତ
ଜଳଜନ୍ତୁ ଜାଳ ଭକ୍ଷିତ ଯଥା

---

୧ ଉପରକୁ ଟେକିଥିବା, ୨ ଅର୍ଜୁନ, ୩ ବଙ୍କା, ୪ ଶିଖା ସମୂହ, ୫ ଅଗ୍ନି, ୬ ଜଳଧାରେ, ୭ ଜଗତକୁ, ୮ ଶବ୍ଦକାରୀ ମେଘ ଅସ୍ତ୍ର, ୯ ଶିବ, ୧୦ ସବଦା, ୧୧ ମୂଷଳ ଧାର ବୃଷ୍ଟି, ୧୨ ଅର୍ଜୁନ, ୧୩ ଯୁଦ୍ଧରେ, ୧୪ ଓ ୧୫ ଧନୁ, ୧୬ ଅର୍ଜୁନ, ୧୭ ଭୟଙ୍କର, ୧୮ ଶର ସମୂହ, ୧୯ ଓ ୨୦ ଶିବ, ୨୧ ଅର୍ଜୁନ, ୨୨ ହେମନ୍ତ କାଳୀନ, ୨୩ ସୂର୍ଯ୍ୟ, ୨୪ ଶର, ୨୫ ଶିବ, ୨୬ ଅର୍ଜୁନ, ୨୭ ଶିବ, ୨୮ ସେନାମାନେ, ୨୯ କୁମ୍ଭୀର ।

ପୁନର୍ବସୁ[୧] ପ୍ରତି ଫାଲ୍‌ଗୁନ[୨] ପ୍ରେରିତ
ପୃଷତ୍କ[୩] ପ୍ରକର[୪] ପୀଡିତ ତଥା ।
ବିଜୟ[୫] ବିକ୍ରମ ବିକାଶ ବୀକ୍ଷଣେ
କଲେ ବାଣବୃଷ୍ଟି ଭୂରି[୬] ବ୍ରାତ୍ର୍ଘ୍ନ[୭]
ମାତ୍ର ସେ ଗୁଡକ ମର୍ମ ସ୍ଥାନେ ଆସି
ନ ବାଜିବା ଯୋଗୁଁ ଖୁସି ବ୍ରାତ୍ର୍ଘ୍ନ ।

ନିଜ ସଇନଙ୍କୁ ଊର୍ଦ୍ଧହୀନ[୮] ଦେଖି
କୈଳାସ[୯] ଶିଖରୀ ଜିଷ୍ଣୁ[୧୦] ମାର୍ଗଣ[୧୧]
ନେଲେ ଅପହରି କଉଶଳ କରି
ସୂରି[୧୨] କଲପରି ବାରି ଶୋଷଣ ।

ନିଷଙ୍ଗରେ[୧୩] ଶିରୀ[୧୪] ଶୂନ୍ୟଥିବା ଦେଖି
ସବ୍ୟସାଚୀ[୧୫] ମନ ଅତି ବିଷଣ୍ଣ
ଚେତନା ରହିତ ପ୍ରାଣ ପରି ଥିଲ
ସେ ଶରଧି[୧୬] ଦେଖି ଜିଷ୍ଣୁ[୧୭] ବ୍ୟସନ ।

ଅନନ୍ତର ଖରୁ[୧୮] ଅର୍ଜୁନ ଗାତ୍ରରୁ
ମାୟାରେ କଂଚୁକ[୧୯] ନେଲେ ଛଡାଇ
ଘନମୁକ୍ତ ରବି ପରାଏ ଦୀପିତ
ଦିଶନ୍ତ ବିଜୟ[୨୦] ଶସ୍ତ୍ର ହରାଇ ।

ପୁନଃ ପୁନଃ ପାଣି[୨୧] କଲେହେଁ ନିବେଶ
ନଥିଲ ତୂଣୀରେ କିଛି ତ୍ରିପୁଟ[୨୨]
ଭୁଜବଳେ ତହୁଁ ଆରମ୍ଭିଲେ ରଣ
ବୁଝି ନପାରି ସେ ଧୂର୍ଜଟି[୨୩] କୂଟ ।

ସପ୍ତିଗୁଣ ଯୁକ୍ତ ତାପସକୁ ଈଷ
ବହୁ ଅସ୍ତ୍ରାଘାତେ କରନ୍ତେ କ୍ଷତ
ପୁଷ୍ପିତ କିଂଶୁକ[୨୪] ପରି ଦିଶୁଥିଲ
ଅନାରତ[୨୫] ଦେହୁଁ ବୋହି ରକତ ।

ଅନନ୍ତର ଧନ୍ୱୀ[୨୬] କ୍ରୋଧେ ଧରଟଳେ
ପିଟି ଗୁଲ୍‌ଫ କରି କେଶରୀ ଧ୍ୱନ
କୁଳିଶ[୨୭] ସଦୃଶ କଠିନ ଗାଣ୍ଡୀବ
ଉଠାଇ ପିଟିଲେ ଘନବାହନ[୨୮] ।

ସେ ଗାଣ୍ଡୀବ ଧନୁ ଅବ୍ୟକ୍ତ ଅମ୍ବରେ[୨୯]
ଅନ୍ତର୍ଲୀନ ହେବା ଦେଖି ଅର୍ଜୁନ
ଭଗ୍ନ ମନୋରଥ ହୋଇ ରଣସ୍ଥଳେ
ଦୁଃଖରେ ଟିକିଏ ହେଲେ ମଉନ ।

ସ୍ଥପ[୩୦] ଅନ୍ତର୍ଦ୍ଧାନ ପରେ ସବ୍ୟସାଚୀ[୩୧]
ଶତ୍ରୁର ଦୁର୍ଲଙ୍ଘ୍ୟ ତୀରକ[୩୨] ଧରି
ଜନ୍ମାଇଲେ ଭୟ ପ୍ରମଥଙ୍କ ମନେ
ବିଚିତ୍ର ଗତିରେ ସେକ୍ଷେ ସଞ୍ଚରି ।

ଅନ୍ତରୀକ୍ଷେ ପୁଣି ପ୍ରତିବିମ୍ବି ଜଳେ
ହେଉଥାଏ ଦୃଶ୍ୟ ସପ୍ତାଶ୍ୱ[୩୩] ଯେସନ୍ତେ
ଦ୍ୱିମୂର୍ତ୍ତି ରୂପରେ ନଭେ ରଣ ସ୍ଥଳେ
ଦେଖିଲେ ପ୍ରମଥେ ସିତାଶ୍ୱ[୩୪] ତେସନ୍ତେ ।

ଜିଷ୍ଣୁ ଧୃତ ତୀର[୩୫] ଜୟନ୍ତ[୩୬] ନାଟଚେ[୩୭]
ଖଣ୍ଡ ହୋଇ ତଳେ ପଡନ୍ତେ ଖରେ
ଗୋଟାଇ ପାଷାଣ ଫୋପାଡନ୍ତେ ତାଙ୍କୁ
ନିବାରିଲେ ଭବ[୩୮] ଅମୋଘ ଶରେ ।

ନୋହି ସର୍ଗହୀନ[୩୯] ବାସବ[୪୦] ନନ୍ଦନ
ନୀରନ୍ଧ୍ର ବନରୁ ତରୁ ଉପାଡ
ହୋଇ ବେଗଗାମୀ ଘୋର[୪୧] ଘୋରତର
ଉତ୍ତମାଙ୍ଗ ପରେ ଦେଲେ କରଡ଼ ।

ଈଶାନ[୪୨] ତକ୍ଷଣେ ତରୁମାନଙ୍କର
ବଲ୍‌କଳ ପଲ୍ଲବ କୁସୁମ ନେଇ

୧ ଶିବ, ୨ ଅର୍ଜୁନ, ୩ ଶର, ୪ ସମୂହ, ୫ ଅର୍ଜୁନ, ୬ ଶିବ, ୭ ଅର୍ଜୁନ, ୮ ଜଳ, ୯ ଶିବ, ୧୦ ଅର୍ଜୁନ, ୧୧ ଶର, ୧୨ ସୂର୍ଯ୍ୟ, ୧୩ ତୂଣ, ୧୪ ଶର, ୧୫ ଅର୍ଜୁନ, ୧୬ ତୂଣ, ୧୭ ଅର୍ଜୁନ, ୧୮ ଶିବ, ୧୯ କବଚ (ବିଘ୍ନ ଦୂର ହେବା ପାଇଁ କବଚ ପିନ୍ଧାଯାଏ), ୨୦ ଅର୍ଜୁନ, ୨୧ ହସ୍ତ, ୨୨ ଶର, ୨୩ ଶିବ, ୨୪ ପଳାଶ, ୨୫ ସର୍ବଦା, ୨୬ ଅର୍ଜୁନ, ୨୭ ବଜ୍ର, ୨୮ ଶିବ, ୨୯ ଶିବ, ୩୦ ଧନୁ, ୩୧ ଅର୍ଜୁନ, ୩୨ ଖଣ୍ଡା, ୩୩ ସୂର୍ଯ୍ୟ, ୩୪ ଅର୍ଜୁନ, ୩୫ ଖଣ୍ଡା, ୩୬ ଶିବ, ୩୭ ଶର, ୩୮ ଶିବ, ୩୯ ହସ୍ତାହସ୍ତିନ, ୪୦ ଅର୍ଜୁନ, ୪୧ ଓ ୪୨ ଶିବ ।

କଲେ ବଳି ପୂଜା          ରୁଣ୍ଡ ଭୂମି ସ୍ଥିତ
ଗୀର୍ବାଣମାନଙ୍କୁ[୧] ଚନ୍ଦନ ଦେଇ ।

ତଦନ୍ତେ ଗାଣ୍ଡିବୀ          ଭବ[୨] ବାଣ ବେଗ
ନ ମାନି ପ୍ରବେଶି ପ୍ରତି ମୁଖରେ
ନିଜ ମୁଷ୍ଟି ଦ୍ୱୟ          ଛେଚିଲେ ଯୁଦ୍ଧରେ
ଜଟାଧରଙ୍କର[୩] ଉର ଦେଶରେ ।

ଈଶାନ[୪] ହୋଇ ଉଦାର     ଅବିନୟ ବ୍ୟବହାର
ପୁନଶ୍ଚ ଉରେ ପ୍ରହାର ବିଜୟଙ୍କର
ସ୍ନେହ ବଶେ ଗଲେ ସହି  ମାନସେ କୋପ ନ ବହି
ରହନ୍ତା କି କେବେ ମହୀ ରାଗିଲେ ହର
ଭକତର ଶୁଣି ଗୁହାରି
ଭକ୍ତି ଯୋଗୁଁ ଭବାର୍ଣ୍ଣବୁ କରନ୍ତ ପାରି ।

ଅର୍ଜୁନ ମୁଷ୍ଟି ପ୍ରହାରନ୍ତେ ଶଙ୍କର
ଧନୁ ନାରଚ ତେଜି ଲୌହ ମୁଦ୍‌ଗର ।

ସଦୃଶ ବଜ୍ର ମୁଷ୍ଟି କରି ରୋଷରେ
ନିଷ୍ଠୁର ମାଡ ଦେଲେ କୃଷ୍ଣ[୫] କାନ୍ଧରେ ।

ନିବିଡ ମୁଷ୍ଟି ଧ୍ୱନି ହୋଇ ସ୍ଫୁଟିତ
ପାଷାଣ ଶବ୍ଦ ପରି ପ୍ରତିଧ୍ୱନିତ ।

ତହିଁରୁ ଉପୁଜିବା ତୀବ୍ର ଯାତନା
ସହିଲେ ସବ୍ୟସାଚୀ ହୋଇ ଉନ୍ମନା ।

ସୁଖ ଦୁଃଖ ଗଣନା ବୀରଚରଣେ
ନଥାଏ କେବେ ହେଲେ ରଣ ପ୍ରାଙ୍ଗଣେ ।

ଅସାଧାରଣ ଧୈର୍ଯ୍ୟ ସଂପନ୍ନ କୃଷ୍ଣ
ଯୁଝିବା ପାଇଁ ପୁଣି ନିର୍ଭୟେ ଉଷ୍ଣ ।

ଶଶୀକଳାମଉଳି[୬] ବାହୁ ଯୁଗଳ
ଧଇଲେ ନିଜ ଭୁଜେ ଦୃଢେ ଚଞ୍ଚଳ ।

ତ୍ରିପୁରାନ୍ତକ[୭] ଉଠିଯାନ୍ତେ ନଭକୁ
ଧଇଲେ ତତ୍‌କ୍ଷଣେ ତାଙ୍କ ପାଦକୁ ।

ପାଦ ଗ୍ରହଣ ହେତୁ ଭର୍ଗ[୮] ତ୍ୱରିତ
ଆଲିଂଗି ପାର୍ଥ[୯] ହେଲେ ଅତି ମୁଦିତ ।

ଶବର[୧୦] ରୂପ ଛାଡ଼ି ଦେଇ ଶବର
ଧରନ୍ତେ ନିଜ ରୂପ ଶକ୍ର କୁମାର ।

ପ୍ରଣାମ କଲେ ଧରି ପଦଯୁଗଳ
ପଡୁଛି ନେତ୍ରୁଁ ଖସି ଆନନ୍ଦ ଜଳ ।

ପୂର୍ବପରି ନିଷଙ୍ଗ[୧୨] ନିଜ କାନ୍ଧରେ
ଥିବାର ଦେଖିଲେ ସେ ପୂର୍ଣ୍ଣ ଶରରେ ।

ବିସ୍ମିତ ହୋଇ ଆରମ୍ଭିଲେ ସ୍ତବନ
କରିବା ଲାଗି ତାଙ୍କ ମନ ପ୍ରସନ୍ନ ।

## ଅର୍ଜୁନଙ୍କ ସ୍ତୁତି

(ରାଗ- ଚକ୍ରକେଳି)

ଅପରାଜିତ ହେ, ଅତି ଦୟାଳୁ,
ବିଦ୍ୟମାନ ସୃଷ୍ଟି ସର୍ଜନା କାଳୁଁ ।
ଅରକ୍ଷର ତୁମ୍ଭେ ସ୍ୱୟଂ ରକ୍ଷକ,
ଦୁଷ୍ଟ ପୁରୁଷର ମୁକ୍ତି ଦାୟକ ।
ବିନୟ ପ୍ରଣାମ ନ କରି ଜନେ
ହେଉଛନ୍ତି ଘାର୍ଣ୍ଣି ସଦା ଜୀବନେ ।
କାମ କ୍ରୋଧ ଲୋଭ ମୋହ ମାତ୍ସର୍ଯ୍ୟ,
ବିପତ୍ତିର ହେତୁ ସଦା ଐଶ୍ୱର୍ଯ୍ୟ ।
ସର୍ବ କ୍ଷୟକାରୀ ହିଂସା ବିକାର
ଆଣୁଅଛି ଲୋଡ଼ ଗୋଳ ସମ୍ଭାର ।
ଦମିଅଛ ଚିତ୍ତ ଯୋଗ ବଳରେ
ବଧୂଯୁକ୍ତ ହୋଇ ଅର୍ଦ୍ଧ ଅଙ୍ଗରେ ।
ଆସଇ ନିବୃତ୍ତି, ଇଷ୍ଟ ପ୍ରାପତି
ଘଟେ, ତୁମ୍ଭଠାରେ ଥିଲେ ଭକତି ।
କରି ଅନୁଭବ ମୃତ୍ୟୁ ଯାତନା
ସେବି ଭକ୍ତ କରେ ମୋକ୍ଷ କାମନା ।

୧ ଦେବତା, ୨, ୩ ଓ ୪ ଶିବ, ୫ ଅର୍ଜୁନ, ୬, ୭ ଓ ୮ ଶିବ, ୯ ଅର୍ଜୁନ, ୧୦ ବ୍ୟାଧ, ୧୧ ଶିବ, ୧୨ ତୂଣ ।

ନିସ୍ପୃହ ଆପଣ ପ୍ରଣତ ଜନେ
ଲଭନ୍ତ କରୁଣା ପଡେ ଲୋଚନେ ।
ଜଗତ୍‌ବନ୍ଦ୍ୟ ବ୍ରହ୍ମା ପ୍ରାତଃ ସନ୍ଧ୍ୟାରେ
କରନ୍ତ ବନ୍ଦନା ଭକତି ଭରେ ।
ପରାର୍ଥ ସାଧନେ ତୁମ୍ଭେ ତତ୍ପର
ସ୍ୱାର୍ଥାନ୍ୱେଷୀ କି ତା ନୁହେ ଗୋଚର ।
ତୁମ୍ଭର ବିଦ୍ୱେଷୀ ନରକ ଗତି
ଲଭୁଅଛି ସିନା ନଶିଖି ନତି ।
ତତ୍ତ୍ୱ ଜ୍ଞାନ ହୀନ ପୁରୁଷ ଭବେ
ତୁମ୍ଭର ମହିମା ନ ଜାଣେ ଲବେ ।
ଚିତ୍ତଭେଦ ନାହିଁ କାହାରି ଠାରେ
ସମଭାବାପନ୍ନ ତୁମ୍ଭେ ସଂସାରେ ।
ତୁମ୍ଭଙ୍କୁ ଯେ ସେବେ ଭକ୍ତି ପୂର୍ବକ
ହୁଅ ତା'ର ତୁମ୍ଭେ ମୁକ୍ତିଦାୟକ ।
ସ୍ୱକର୍ମେ ସାଧକ ଲଭେ ନିସ୍ତାର
ଦୋଷାଦୋଷ ତୁମ୍ଭେ କର ବିଚାର ।
ଦର୍ଗବ[1] ଚରମ ଅଙ୍ଗାଭରଣ
ଜ୍ୱଳନ୍ ମଣି ଅହି କଣ୍ଠ ଭୂଷଣ ।
ଶବଭସ୍ମ କରିଅଛ ଚନ୍ଦନ
ମସ୍ତକୁ ନିର୍ଗତ ଶଶୀ କିରଣ ।
ପାପ ପୁଣ୍ୟ କର୍ମେ ସାକ୍ଷୀ ସ୍ୱରୂପ
ନ ଜାଣି ମଣିଷ କରେ ବିଦ୍ରୂପ ।
ତୁମ୍ଭଠାରେ ପ୍ରୀତିଯୁକ୍ତ ମଣିଷ
ଲଭଇ କୈବଲ୍ୟ ହେ ଜଗଦୀଶ ।
ନୁହ ଉପମେୟ ବା ଉପମାନ
କରନ୍ତ ଯୋଗୀଏ ତୁମ ସନ୍ଧାନ ।
ନଥିବାରୁ ତୁମ ଉତ୍ପତ୍ତି ନାଶ
ନିତ୍ୟ ବୋଲି ତୁମ୍ଭେ ପାଅ ବିକାଶ ।
ଦୁରାତ୍ମାମାନଙ୍କ ଆପଣ ଗତି
ପଶୁଛି ଶରଣ ଘେନ ବିନତି ।
ହେ ଈଶ ମୋ ଦୋଷ କର ମାର୍ଜନ
ଅନୁକମ୍ପା ବହି ହୁଅ ପ୍ରସନ୍ନ ।
ଶତ୍ରୁ ନାଶକାରୀ ଅସ୍ତ୍ର ପ୍ରଦାନ
କରି ଅର୍ଜୁନର ରଖ ସମ୍ମାନ ।
ଶ୍ୱେତବାହନଙ୍କ[2] ଶୁଣି ବଚନ
ଆଲିଙ୍ଗନ କରି ଦେଲେ ସାନ୍ତ୍ୱନ ।
ଧନୁର୍ବେଦ ପାଠ ତାଙ୍କୁ ପଢାଇ
ପାଶୁପତ ଅସ୍ତ୍ର ଦେଲେ ବଢାଇ ।
ଇନ୍ଦ୍ରାଦି ପ୍ରବେଶି ଶମ୍ଭୁ ଆଜ୍ଞାରୁ
ନାନା ଅସ୍ତ୍ର ଦେଇ ଗଲେ ସେଠାରୁ ।
ଆଶିଷ ପ୍ରଦାନ କରି ମହେଶ
ଲେଉଟିବା ଲାଗି ଦେଲେ ଆଦେଶ ।

ମତ୍ସ୍ୟ ଦେଶରେ ପାଣ୍ଡବମାନେ ଅଜ୍ଞାତବାସ କରୁଥିବା ବେଳେ ଦୁର୍ଯୋଧନ କୁମନ୍ତ୍ରଣା ପାଇ ବିରାଟ ରାଜାଙ୍କ ଗୋଧନ ନେଇଯିବା ପାଇଁ ଭୀଷ୍ମ, ଦ୍ରୋଣଙ୍କ ସହ ଆସିଥିଲେ । ସେହି ସମୟକୁ ଅଜ୍ଞାତ ବର୍ଷ ପୂରି ଆସିଥିଲା । ଅର୍ଜୁନ ଭୀଷ୍ମ ଦ୍ରୋଣ ପ୍ରଭୃତି ମହାରଥୀମାନଙ୍କୁ ପରାସ୍ତ କରିବା ପରେ ଦୁର୍ଯୋଧନ ସହ ମୁହାଁମୁହିଁ ହେଲେ ସେହି ଯୁଦ୍ଧର କାହାଣୀ ଦିଆଗଲା -

ନିରଶ ହୃଦୟେ ଯୁଦ୍ଧରୁ ଓହରି
ଗାଙ୍ଗେୟ ଯିବାରୁ ଫେରି
ଅବସନ୍ନ ଦେଖି ତାଙ୍କୁ ସେ ସମୟେ
କଉରବେ ଗଲେ ଘେରି ।
ଏକୁଟିଆ ଯୁଦ୍ଧେ ଯୁଝିଯୁଝି ଧନ୍ୱୀ'
କୌରବ ରଥୀ ସହିତ
ଅକ୍ଷତ ଶରୀର ଥିଲେ ତାହାଙ୍କର
ଦିଶୁଥିଲେ ଉଲ୍ଲସିତ ।

[1] ହାଡ, [2] ଅର୍ଜୁନ ।

ପରାଜୟ ଲଭି ସକଳ ଗଲେ ହେଁ
ପୁନର୍ବାର ଦୁର୍ଯୋଧନ
ସଂଗ୍ରାମ ଅଙ୍ଗନେ ଆସିଲା ସତ୍ୱର
ହୁଙ୍କାକୁ କରି ଗର୍ଜନ ।

ଅକାଣ୍ଡେ[୧] କାଣ୍ଡଟେ ବିଛନ୍ତେ ବାଜିଲା
କୀରିଟୀ ଲଲାଟ ପଟେ
ତହୁଁ ସେ କ୍ରୋଧରେ ନ୍ୟାସନ୍ତେ ପଶିଲା
ଦୁର୍ଯୋଧନ ବକ୍ଷପଟେ ।

ଆଢେଣି ଦେଖାଇ ହେଲା ଧାବମାନ
ପୁନଶ୍ଚ ଫାଲ୍‌ଗୁନ[୨] ପାଶେ
ଦେଖି ତାକୁ ଜିଷ୍ଣୁ ବଜାଇ ଆସ୍ଫୋଟ[୩]
ବୋଲେ ଅତି ପରିହାସେ ।

"ଅଦଭ୍ର[୪] ବିଧାନ ଠୁଳ କରି ପାଶେ
ଶୁଭୁନାହିଁ ଜୟ ନାଦ
ସୁଝାଇବି ଆଜି ପଶା ଖେଳ ବେଳେ
ଦେଇଛ ଯା ପରିବାଦ ।

ପ୍ରାଣଠାରୁ ବଳି ଅଛିକି ପ୍ରପଞ୍ଚେ
ଅଧିକ ପ୍ରିୟ ପଦାର୍ଥ
କିନ୍ତୁ ଯୁଦ୍ଧେ ହାରି ଲେଉଟିଲେ ତୋତେ
କି ବୋଲିବେ ପ୍ରଜାସାର୍ଥ[୫] ।

ଦୁର୍ଯୋଧନ ନାମ ବ୍ୟର୍ଥ ହେବ ସିନା
ପାର୍ଥର ଶିରି ଘାତରେ
ଆସିଅଛୁ କିମ୍ବା ତାରକ[୬] ନଥାଇ
ଆଗରେ ଅବା ପଛରେ ।

ବିଜୟର ବଳ ଜାଣିଛ ତ ତୁମେ
ଗନ୍ଧର୍ବ ଯୁଦ୍ଧ ସମୟେ
ନିଜ ନେତ୍ରେ ଦେଖି ଆଜି ଏ ସଂଗ୍ରାମେ
ଆସିଲ ବୃଥା ନିର୍ଭୟେ ।

ପ୍ରାଣ ରକ୍ଷା ଲାଗି ପଳାଅ ସପଦି[୭]
ଆଜି ଏ ଆଜି[୮] କ୍ଷେତ୍ରରୁ
ଭବିଛ କି ସତେ ପଳାଇବ ବର୍ତ୍ତି
ଏକ୍ଷଣି ପାର୍ଥ ହାତରୁ ।

କାହିଁ ସେ ଶକୁନି ଯାହାର ଭଣ୍ଡାମି
ଡ଼ବି ଡ଼ବି ବାଜେ ଭବେ
ଭଣଜାକୁ ପେଷି ଏକୁଟିଆ ରଣେ
ନ ମାତେ କି ଲାଜ ଲବେ ।

ଗତାକ୍ଷ[୯] ବାବୁ ତୋ ଜାଣି ଜାଣି ସବୁ
ତୋ କଥାରେ ସଦା ବଶ
ହେବାରୁ ନିକଟ ଅନ୍ତକାଳ ତୋର
ଘଟିଲଣି ବୁଦ୍ଧି ଭ୍ରଂଶ ।

କୁଳବୁଡ଼ା ବୋଲି ପଡ଼ଲଣି ହୁରି
ପଶିଲା କି ତୋ ଶ୍ରବରେ[୧୦]
ଜୀବନ ଧରିତୁ ରହିଛୁ କିପରି
ସନ୍ଧ କଳୁଷ ଭରରେ[୧୧] ।

ଭୀମସେନ ଗଦା କରିଦେବ ପଦା
ଚକ୍ରୀ[୧୨] ନିଚୟକୁ ରଣେ
ସଙ୍ଖୋଳିବା ଲାଗି ନଥିବେ କେ ତୋର
ବଂଧୁବାଂଧବରୁ ଜଣେ ।

ଧିକ ତୋ ଜୀବନ ଅନ୍ୟର ନିନ୍ଦନ
କରି ପାଉ ଅମଙ୍ଗଳ
ଚକ୍ରୀ[୧୩] ବୋଲି କିମ୍ବା ହେଉଅଛୁ ଟେକି
ଭିଆଇ ନାନା କନ୍ଦଳ ।

ଫୁଟାଇଲେ ବାଣ ଫିଟି ଯାଉଅଛି
ହେଲଣି କାଳ ନିର୍ବାଣ[୧୪]
ଲୋକ ଅପବାଦେ ଡରି ଡରି ସିନା
ଦେଖାଉ ମୁହଁରେ ଟାଣ ।

୧ ଅକସ୍ମାତ୍, ୨ ଅର୍ଜୁନ, ୩ ଶଙ୍ଖ, ୪ ପ୍ରଚୁର, ୫ ପ୍ରଜା ସମୂହ, ୬ କର୍ଣ୍ଣଧାର, ୭ ଶୀଘ୍ର, ୮ ଯୁଦ୍ଧ, ୯ ଅନ୍ଧ, ୧୦ କାନରେ, ୧୧ ପାପ ସମୂହରେ, ୧୨ ଖଳ, ୧୩ ସମ୍ରାଟ, ୧୪ ଶୂନ୍ୟ-ଶେଷ ।

କାଣ୍ଡାରୀ[୧] ବିହୀନ ଦଦରା ଉଡୁପେ[୨]
ଦୁସ୍ତର ଭବ ସାଗର
ପାରି ହେବା ଲାଗି କରୁ ମନେ ଆଣ୍ଡ
ତର୍ଣ୍ଣି ଚିପି ଅପରର ।

ଥରୁଅଛି ହାତ ଟେକିବାକୁ ଧନୁ
ବିନ୍ଧବୁ ଶଙ୍କୁ[୩] କିପରି ?
କୁଳର ମହତ୍ତ୍ୱ ବୁଡାଇଲୁ ସିନା
ପର ଦ୍ରବ୍ୟ ଅପହରି ।

ରହି ନାହିଁ କାର ରହିବ ନାହିଁଟି
ତୋର ଟାଣ ପଣ ଲବେ
ଅଭିମାନ ବଶେ ଲଭିବୁ ବିନାଶ
ଲୁଚିଲେ ହେଁ କାହିଁ ଭବେ ।

ଭଣ୍ଡି ନେଇ ଯେତେ ମଣ୍ଡି ହୋଇଅଛୁ
ଯିବ ନାହିଁ ତୋ ସଙ୍ଗରେ
ଧରମ ରହାକୁ ଛାଡ ଦେଇ ଏଣେ
ଯାଉଛୁ ଅଣବାଟରେ ।

ପାଶେ ଥିବା ଲୋକେ ପାଉଥିବେ ଯେତେ
ଗାଉଥିବେ ଗୁଣ ସିନା
ଦେହ ଦେଖି କୁଣ୍ଡ[୪] ବସୁନ୍ଧରା ତଳେ
କିଏ ବଶ ଅର୍ଥ ବିନା ।

ପ୍ରାଣରୁ ଅଧିକ ଯାହାକୁ ତୁ ମଣୁ
ସାଥି ସେହି ସମୟର
ଆପତ୍ତି ପଡ଼ିଲେ କେ ନୁହେ କାହାର
ହୁଏ କି ନେତ୍ର ଗୋଚର ।

ଲକ୍ଷାଗୃହ[୫] କଥା ପଡ଼ିଲେ ମନରେ
ହୃଦୟ ହୁଏ କରତି
ମଣ୍ଡା[୬] ପେଟେ ପିଇ ତୁଣ୍ଡ କରୁଥିଲେ
ଯିବୁ କି ଦଣ୍ଡୁ[୭] ବରତି ।

ଭୀମକୁ ମଣ୍ଡାରେ[୮] ମଧୁର[୯] ଦେଇ ତୁ
ଭସାଇଥିଲୁ ନଦୀରେ
ସେହି ତୁ ମତ୍କୁଣ[୧୦] ମାରୁଚି[୧୧]ହାତେ ତୋ
ଉଡ଼ବ ଶ୍ୱାସ ଅଚିରେ ।

ଅନ୍ନଦାସ[୧୨]ଯେତେ ଅଛନ୍ତି ତୋ ପାଶେ
ହିତକୁ ମଣି ଅହିତ
ଫୋଡନ୍ତ ଯା କାନେ ନ କରି ବିଚାର
ଶ୍ରବଣେ ହେଉ ମୋଦିତ ।

ପରେତର[୧୩]ଯେତେ ଆଣିଛୁ ଆନର୍ତ୍ତେ[୧୪]
ଦିଶନ୍ତ ପରଘୁ[୧୫]ପରି
ତୁଚ୍ଛାକୁ ବାଉଳି ହେଉଅଛୁ ସିନା
ଅକର୍ମେ ପ୍ରବେଶ କରି ।

ମନା କରୁ କରୁ ସରଭସ୍ଥା[୧୬]ନାରୀ
ଟାଣିଲୁ ସଭ ପ୍ରାଙ୍ଗଣେ
ତୋ ଭଳି ଲଟକ[୧୭] କଟକେ[୧୮]ତୋହର
ନଥିବେ ତ କେହି ଜଣେ ।

ତାର ପ୍ରାୟଶ୍ଚିତ୍ତ ତୋ ଲୋହିତେ[୧୯]କରି
କରିବି ପାପ ଖଣ୍ଡନ
ବୋଲି ପାଂଚିଥିଲି ବହୁକାଳୁଁ ମନେ
ମିଳିଲା ଏବେ ଦର୍ଶନ ।

ସ୍ୱର୍ଗାପଗା ସ୍ୱଜ[୨୦] କର୍ଣ୍ଣ ଧରଦ୍ୱାଜ
ପଳାଇଲେ ଖସି ଧୀରେ
ବକ୍ରନକ୍ର[୨୧] ବର୍ଗ ଲୋଡୁଛୁ ଯେତେକ
ପଡ଼ିବେ କି ତୋ ପିଠିରେ ।

ତୋର ଦୁର୍ବିଚାରେ ଭଦ୍ରା[୨୨] ସ୍ୱୟମ୍ବରେ
ଉପୁଜିଲା ଶୂନ୍ୟ କାଣ୍ଡ
ଶତ ଶତ ପ୍ରାଣ ଭଜିଲେ ନିର୍ବାଣ[୨୩]
ବାଜି ଭୀମାନୁଜ କାଣ୍ଡ ।

---

୧ ନାବିକ, ୨ ନୌକା, ୩ ଶର, ୪ ମୂର୍ଖ, ୫, ଜଉଘର, ୬ ମଦ, ୭ ମୁଞ୍ଚୁ, ୮ ମଦ, ୯ ବିଷ, ୧୦ ଦାନ୍ତ ନଥିବା ଲୋକ, ୧୧ ଭୀମ, ୧୨ ଖରୁଆ, ୧୩ ଆତ୍ମୀୟ, ୧୪ ଯୁଦ୍ଧ, ୧୫ ମୃତ, ମଲାପର, ୧୬ ଋତୁବତୀ, ୧୭ ଲମ୍ପଟ, ୧୮ ରାଜଧାନୀ, ୧୯ ରକ୍ତ, ୨୦ ଗଙ୍ଗାଙ୍କ ପୁଅ ଭୀଷ୍ମ, ୨୧ ଖଳ, ୨୨ ଦ୍ରୌପଦୀ, ୨୩ ଶୂନ୍ୟ ।

ଗଜକୁଳେ ଜନ୍ମି ଗଜପୁତ୍ର ହୋଇ
ଧଇଲୁ ତସ୍କର ବୃତ୍ତି
କହୁଛିରେ କୁଶ[୧] ଜୀଇଁଥିବା ଯାଏଁ
ନ ଘଟୁ ପୁନରବୃତ୍ତି ।

ବକବ୍ରତୀ[୨] ବୋଲି ନଭସ୍ୱାନୁ[୩] ତୋତେ
ଜାଣନ୍ତି ଭବେ ସକଳ
କୁରୁକୁଳ କ୍ଷୟ କରିବୁ ବୋଲି ତୁ
ଦିଶିଲଣି ଜଳଜଳ ।

ମୋ ବଚନ ମାନି ଆଜି ଏ ଆଜିରୁ[୪]
ନଗଲେ ଏକ୍ଷଣି ଛାଡ
ମହିଳାଏ ଯେତେ ଆଶ୍ରି ଛନ୍ତି ତୋତେ
ହାତୁଁ ଶଙ୍ଖା ଦେବେ କାଢ ।

ପର କଥା ଶୁଣି ଏଠାରେ ପ୍ରବେଶି
ଗଲୁଣି ନିଦାରେ ବୁଡ
ଅର୍ଜୁନ ହାବୁଡ଼ୁଁ ଜୀବନ ଧରି କି
କଟକେ ପିନ୍ଧୁ ବାହୁଡ ?

ଯେତେକ କଷଣ ଦେଇଛୁ ପାଣ୍ଡବେ
ନ ନେଲେ ତା ପ୍ରତିଶୋଧ
ଆଜି ଏ ଆହବେ[୫] କପିକେତନର[୬]
ହେବ କି ଶମିତ କ୍ରୋଧ ?

ମଉଳି ଗଲଣି ବଦନ ତୋହର
ଦେଖିଲୁଣି କିରେ ଧଇ !
ଛାଡଦେଇ ଏବେ ପଳା ଯା ନବରେ
ବିରାଟ ରଜାର ଗାଇ ।

ଦେଖୁଛୁ ତ ଧଇ ଆଟପଟ ହୋଇ
ମିଶନ୍ତି ସର୍ବେ ମାଟିରେ
ଧବିଲ କି ଦିନେ କି କର୍ମ କରୁଛ
ଥିବାଯାଏ ଏ ମହୀରେ ।

ସୁଖ ବୋଲି ଯାହା ଭବୁ ବର୍ତ୍ତମାନ
ଭବିଷ୍ୟେ ଦୁଃଖର କେତୁ[୭]
ଘଟି ଯାଇଛି ଯା ଜୀବନେ ତୁମର
କର ବାରବାର ହେତୁ ।

କେ କରୁଛି ଚିନ୍ତା ପ୍ରପଞ୍ଚ ପଥରେ
ଅକିଞ୍ଚନ ପେଟ ଲାଗି
ଅହଂମଦ ବଶେ ପରସ୍ପର ଜନେ
ଦ୍ୱନ୍ଦ୍ୱେ ସିନା ଅନୁରାଗୀ ।

ଅଙ୍କୁଶ ଆଘାତେ ମତ୍ତଦନ୍ତୀତତି
ହୁଅନ୍ତି କ୍ରୁଦ୍ଧ ଯେସନ
ଜିଷ୍ଣୁ ଉକ୍ତି ଶୁଣି ଦୁର୍ଯ୍ୟୋଧନ ଗରି
ଆସିଲ ହୋଇ ତେସନ ।

ଚଢ଼ି ଶତାଙ୍ଗରେ[୮] ପ୍ରବିଷ୍ଟ ହୁଅନ୍ତେ
ଅର୍ଜୁନ ତା ପାଶେ ଯାଇ
ଦେଲେ ଲେଉଟାଇ ସପ୍ତି[୯] ସହ ପତ୍ରୀ[୧୦]
ନିସ୍ତୁକ ମାଡ ଚଢ଼ାଇ ।

ଖର୍ବ ହେଲା ଗର୍ବ ଦଉଡ ଦଉଡ଼
ଫେରିଲେ ସର୍ବେ ହତାଶେ
ଲେଉଟିଲେ ପାର୍ଥ ଉତ୍ତର[୧୧] ସହିତ
ଗୋଧନ ଧରି ଉଲ୍ଲାସେ ।

## ନଳ ଦମୟନ୍ତୀ

ନିଷଧ ଦେଶରେ କୃତ[୧୨] ଯୁଗେ ଥିଲେ
ନଳ ନାମେ ନୃପ କୀର୍ତ୍ତିସମ୍ପନ୍ନ
ଷଡଙ୍ଗ[୧୩] ବେଦରେ କ୍ଷମତା ଅର୍ଜି
କରୁଥିଲେ ନିତି ପ୍ରଜା ପାଳନ ।

ସମରାଙ୍ଗଣରେ[୧୪] ପ୍ରତୀପ[୧୫] ଭୂପାଳେ
ହୁଅନ୍ତି ଭୟରେ ଶରଣାପନ୍ନ
ଅନଳ ସଦୃଶ ଉଜ୍ଜ୍ୱଳ କାନ୍ତିକି
ପାଉଥାଏ ଶୋଭା ହୃଷ୍ଟ ଆନନ ।

୧ ପାପିଷ୍ଠ, ୨ ସ୍ୱାର୍ଥପର, ୩ ଯୌବନରୁ, ୪ ମୂଳରୁ, ୫ ଯୁଦ୍ଧ, ୬ ଅର୍ଜୁନ, ୭ ଉତ୍ପାତ ଚିହ୍ନ, ୮ ରଥ, ୯ ଅଶ୍ୱ, ୧୦ ରଥ, ୧୧ ବିରାଟଙ୍କ ପୁଅ, ୧୨ ସତ୍ୟ ଯୁଗରେ, ୧୩ ମୀମାଂସା, ନ୍ୟାୟ, ୧୪ ଯୁଦ୍ଧ ଭୂମିରେ, ୧୫ ବିପକ୍ଷ ।

କବିବୁଧ[୧] ସହ    ଯୁକ୍ତ ହୋଇ ମୋଦେ
ଦେବ ଦୀନେଶ୍ୱର ଉଦିତ ଯେହ୍ନେ
କବି ବୁଧ[୨] ମେଳେ    ଲଭନ୍ତି ଆନନ୍ଦ
ନୃପ ନଳ କାଳ ଯାପନେ ତେହ୍ନେ ।

ଦିଗୀଶ ବୃନ୍ଦାଂଶ[୩]    ଧାରଣରୁ ଅବା
ମୁଖର ପ୍ରତିମା[୪] ନଥିଲା ଭବେ
ପୀନତା[୫] ଧାରଣ    କରି ବାହୁ ବେନି
ଦୁର୍ଦ୍ଧର୍ଷ ବୈରିଙ୍କି ଦମନ୍ତ ତବେ ।

ସୁଗଠନ ବପୁ    ବୀକ୍ଷଣେ[୬] ଜନଙ୍କ
କାମଦେବ ବୋଲି ଉପୁଜେ ଭ୍ରାନ୍ତ
ନିର୍ନିମେଷ ନେତ୍ରେ    ତ୍ରିଦଶୀଏ[୭] ଅବା
ଦେଖୁଥିଲେ ତାଙ୍କ ତ୍ରିଦଶ[୮] କାନ୍ତ ।

ଜିତେନ୍ଦ୍ରିୟାଗ୍ରଣୀ    ନଳ ଏ ସମୟେ
ଅନୁରୂପ କାନ୍ତ ଦମୟନ୍ତୀର
ଜନମୁଖୁଁ ଶୁଣି    ପରିଣୟ ଲଗି
ଚିନ୍ତା କରି କରି ହେଲେ ଅସ୍ଥିର ।

ଅଗମ[୯] ବିହାର    କୈତବେ[୧୦] ନୃପତି
ଯିବାକୁ ସଂପ୍ରତି ବଳାଇ ମତି
ମନ୍ଦୁରା[୧୧] ଭିତରୁ    ଚଟୁଳ[୧୨] ବାଜୀଙ୍କି
ଅଣାଇଲେ ଦେଖି ଚଟୁଳ[୧୩] ଗତି ।

ସୁତବର୍ଗ[୧୪] ରଥେ    ସେମାନଙ୍କୁ ଯୋଚି
ନୃପଙ୍କୁ ବସାଇ ଗମନ୍ତେ ଖରେ
ନଗରବାସୀଏ    ସ୍ୱହ୍ଲାଦିତ ହୋଇ
ସମ୍ବର୍ଦ୍ଧିଲେ ତାଙ୍କୁ ସଂଭ୍ରମଭରେ[୧୫] ।

ଧୂଳି ପଟଳିରେ[୧୬]    ବିୟତ[୧୭] ଘୋଡ଼ାଇ
ନିବଶନ୍ତେ ରଥ ଉପବନରେ
ଅବରୋହି ନୃପ    କରିଲେ ବୀକ୍ଷଣ
ବିଟୁକ୍ତ[୧୮] ବିଟପୀ[୧୯] ଚଉଦିଗରେ ।

ପାଦପ ପ୍ରସୂନ[୨୦]    ସୌରଭ ସମ୍ପଦ
ବନାନିଳ ଆଣି ସେବନ୍ତେ ନଳ
ମହା ମୋଦଭରେ    ଶାନ୍ତ ଦୂର କରି
ଭକ୍ଷିଲେ ଏ ଅନ୍ତେ ମାଳୁର[୨୧] ଫଳ ।

ମଲ୍ଲିକା କୁସୁମ    ସମ ବିକଶିତ
ଚମକ କୋରକେ ଭୃଙ୍ଗ[୨୨] ଝଙ୍କାର
ପୁଣି ରସାଳରେ    ପିକସ୍ୱନ କଳ
ମନ ଉତ୍କଣ୍ଠିତ ନଳ ରଜାର ।

କିଛି କ୍ଷଣ ପରେ    ବନେ ଭ୍ରମୁଁ ଭ୍ରମୁଁ
ଦେଖିଲେ ସମ୍ମୁଖେ ଗୋଟିଏ ସର
ଯାର ତଟ ପ୍ରାନ୍ତେ    କରିଲେ ବିଶ୍ରାମ
ନିଷଧ ନୃପତି ହୟ[୨୩] ନିକର ।

## ସର ବର୍ଣ୍ଣନ

ସିତାସିତ[୨୪] ସରୋଜେ[୨୫] ଭରିତ ସର
ଯହିଁ କ୍ରୀଡନ୍ତ ମୋଦେ[୨୬] ଭ୍ରମରଭର ।
ମୃଣାଳ[୨୭] ଖଣ୍ଡ ଲଗି ମୃଣାଳାବଳୀ[୨୮]
କେବେ ବା ପରସ୍ପର ଲଗନ୍ତ କଳି ।

ତା ମଧ୍ୟେ ହିରଣ୍ମୟ[୨୯] ଗୋଟିଏ ହଂସ
ଦର୍ଶନେ ଲଭିଗଲା ନୃପ ମାନସ ।
କୁତୂହଳ ଅବସ୍ଥା ତାଙ୍କର ଜାଣି
ପକ୍ଷେ ଘୋଡାଇ ଦେଲା ଶିରକୁ ଆଣି ।

ନିଦ୍ରାଗତ ଅବସ୍ଥା ଦେଖି ହଂସର
କାୟକୁ ଖର୍ବ[୩୦] କରି ଗମି ସତ୍ୱର ।

---

୧ ଶୁକ୍ର ବୁଧ ଗ୍ରହ, ୨ କବି ଓ ପଣ୍ଡିତ, ୩ ଇନ୍ଦ୍ରାଦି ଦିକ୍‌ପାଳ ସମୂହର ଅଂଶ, ୪ ଉପମା, ୫ ମୋଟା, ୬ ଦର୍ଶନେ, ୭ ଅପ୍‌ସରାମାନେ, ୮ ଯୌବନ, ୯ ଉପବନ, ୧୦ ଛଳରେ, ୧୧ ଘୋଡାଶାଳରୁ, ୧୨ ସୁନ୍ଦର ଘୋଡ଼ା, ୧୩ ଶୀଘ୍ର, ୧୪ ସାରଥି ସମୂହ, ୧୫ ସମ୍ମାନ ସହକାରେ, ୧୬ ସମୂହ, ୧୭ ଆକାଶ, ୧୮ ପକ୍ଷୀଯୁକ୍ତ, ୧୯ ଗଛ, ୨୦ ଫୁଲ, ୨୧ ବେଲ, ୨୨ ଭ୍ରମର, ୨୩ ଘୋଡ଼ା ସମୂହ, ୨୪ ଶୁକ୍ଳ କୃଷ୍ଣ (ଧଳା କଳା), ୨୫ ପଦ୍ମଫୁଲରେ ପୁଷ୍କରିଣୀ ପୂର୍ଣ୍ଣ, ୨୬ ଆନନ୍ଦରେ, ୨୭ ପଦ୍ମନାଡ଼, ୨୮ ହଂସ ସମୂହ, ୨୯ ସୁନା ବର୍ଣ୍ଣ, ୩୦ ସାନ ।

ଧରିବାକୁ ତାହାକୁ ବଢ଼ାନ୍ତେ କର
ଦଂଶିଲା ତାଙ୍କୁ କରି ବିକୃତ ସ୍ୱର ।

ପରନ୍ତୁ[୧] ନୃପ ତାକୁ ଆଣନ୍ତେ ଧରି
ରହିଲା ମଉନେ ସେ କାତରେ ଥରି ।

ଖଗସଙ୍ଘ[୨] ସଙ୍କୁଳ ଉଡ଼ ଝଟତି
ଏସନ ଭଷିଥିଲେ ନୈଷଧ ପ୍ରତି ।

"ନିଦ୍ରାଣ[୩] ପତତ୍ରୀକି[୪] ଧରିବା ପାଇଁ
ଜାତରୂପ[୫] ଲୋଭରେ ଆସିଲ ଧାଇଁ ।

ପୟଃପାନ[୬] କରାଇ ପୋଷିଲେ ସାପ
କେବେହେଲେ ଅପଦେ ନାଶେକି ତାପ ?

ସହାଚର ଧରର ଯେହୁ ପାଳକ
ସେ ପୁଣି ହୋଇଅଛି ପକ୍ଷୀ ବାଧକ ।

ବିଧାତା ଇଚ୍ଛା ଧାଏଁ ଯେଉଁ ଦିଗରେ
ତାକୁ କେ ଲଂଘିପାରେ ମହୀ ମଧ୍ୟରେ ।"

ନୈଷଧ କରଗ୍ରସ୍ତ ହଂସ ନ ଡରି
ବିଧିରେ ଭଷୁଅଛି ପୁଣି ଏପରି ।

"ମୋ ହୈମ[୭] ପକ୍ଷ ଦେଖି ଆଶାରେ ବଶ
ତେଣୁ ଘଟିଲା ତବ ବିବେକ ଭ୍ରଂଶ ।

କେତେ ବା ହେବି ଛଦେ[୮] କମଳୋଦୟ[୯]
ଏତେ ଆଶାୟୀ କିମ୍ବା ନୃପ ହୃଦୟ ।

ରଣଉଦ୍ଭଟ[୧୦] ଭଟଙ୍କର[୧୧]ଏ ଭବେ
ଶକୁନିଠାରେ[୧୨] ହିଂସା ନଥାଏ ଲବେ ।

ବାରିରୁହ[୧୩] ଛୁଟୁହ[୧୪] ମୂଳେ ପରଣ
ଧରିଛି ଯେହୁ ତା'ର କେ ରେ କଲ୍ୟାଣ ।"

## ହଂସ ବିଳାପ

(ରାଗ-ବଙ୍ଗଶ୍ରୀ)

ବିଧାତାକୁ ନିନ୍ଦା କରି ବିଧିରେ ହଂସ ଏପରି
ଜନନୀକି ସ୍ମରି ସ୍ମରି କରେ କ୍ରନ୍ଦନ
"ଅଟଇ ସେ ଜରାତୁର ପୁଣି ଅତି ଅଚତୁର
ବିନାଶେ ହେବ ଆତୁର ତାର ନନ୍ଦନ
ବରଟା[୧୫] ମୋ ନବ ପ୍ରସୂତି,
କୃପାଳୁ ହୋଇ ଶ୍ରବଣ କର କାକୁତି ।

ନପାଇ ମୋର ଈକ୍ଷଣ[୧୬] ଚକ୍ରନିଭ[୧୭] ଚଂକ୍ରମଣ[୧୮]
କରି କରି ଅନୁକ୍ଷଣ ପ୍ରିୟା ବିକଳେ
ନ ଲଭି ଶୋକ ବିରତି ଗଡ଼ି ରଡ଼ି ପଡ଼ି ପଡ଼ି
ହେବ ଛଟପଟ ଅତି ଭାସି ପଲ୍ୱଳେ[୧୯]
ଅସ୍ଫୁଟିତେକ୍ଷଣ[୨୦] ଶାବକ,
ମରଇ ପାଇବ ନିନ୍ଦା ହୋଇ ପାଳକ ।

ମୃଣାଳ[୨୧] ଧରି ଥଣ୍ଟରେ ଆସି ମରାଳେ[୨୨] ସଞ୍ଜରେ
ମୋ ବାରତା ଦେଲେ ଖରେ ମୃତ୍ୟୁ ବରଣ
କରିବ ପ୍ରିୟା ତରସା[୨୩] ନରଖି ପ୍ରାଣ ଲାଳସା
ହେବ ତୁମେ ଲୋକହସା କିମ୍ବା କୃପଣ
ନିଅ ନାହିଁ ମୋର ପରାଣ,
ତୁମ ବିନା କିଏ ମୋତେ କରିବ ତ୍ରାଣ ?

ତାପରି ସତୀ ଭବରେ ନଥିବେ ପକ୍ଷୀ କୁଳରେ
ଅନାଇଁ ଥିବ ପଥରେ ମୋ ଆଗମନ
ଅଜାଣତେ କିଛି ଦୋଷ କରିଥିଲେ ତେଜି ରୋଷ
ମାନସେ ବହି ସନ୍ତୋଷ ରଖ ଜୀବନ
ଅତୁଟ ତା ପତି ଭକତି,
ତା ବିନା ଭବ ସାଗରେ ନାହିଁ ମୋ ଗତି ।

---

୧ କିନ୍ତୁ, ୨. ପକ୍ଷୀ ସମୂହ, ୩ ଶୋଇଥିବା, ୪ ପକ୍ଷୀ, ୫ ସୁନା, ୬ କ୍ଷୀର, ୭ ହେମ (ସୁନା ବିଶେଷଣରେ ହୈମ) ୮ ପକ୍ଷ, ୯ ଶ୍ରୀବୃଦ୍ଧି, ୧୦ ମୁକ୍ତୋଲକ, ୧୧ ବୀର, ଯୋଦ୍ଧା, ୧୨ ପକ୍ଷୀ, ୧୩ ପଦ୍ମ, ୧୪ ଗନ୍ଧ, ୧୫ ଭାର୍ଯ୍ୟା, ୧୬ ଦର୍ଶନ, ୧୭ ମଣ୍ଡଳ ସଦୃଶ, ୧୮ ଭ୍ରମଣ, ୧୯ କ୍ଷୁଦ୍ର ଜଳାଶୟେ, ୨୦ ଅସ୍ଫୁଟିତ + ଈକ୍ଷଣ = ଆଖି ଫିଟି ନଥିବା, ୨୧ ପଦ୍ମନାଡ଼, ୨୨ ହଂସ, ୨୩ ଶୀଘ୍ର ।

ଭବର ଅନିତ୍ୟ ଗତି ଜାଣି ମାନବ ବିତତି
ନିୟତ ସମ୍ପତ୍ତି ପ୍ରତି ପର ଦ୍ରବ୍ୟରେ
ମତି ବଳେ ନିରନ୍ତର ପୂରିଥାଉ ଗନ୍ତାଘର
ନଜାଣି ପର ଅନ୍ତର ପଡ଼ ଲୋଭରେ
ଛାଡ଼ ନାହିଁ କାଳ କାହାକୁ,
ମୋତେ ମାରି କି କହିବ ମୋର ମାଆକୁ ।

ମୋ ବିନାଶେ ଅମ୍ବା ଶୋକେ
ନ ଖାଇ ରହିବ ଭେକେ
କି ବୋଲିବେ ନଳ ଲୋକେ ହେବ କି ଯଶ
ଶୁଣିଲେ ପ୍ରିୟା ମୋ ଦଶା
ସହସା ହୋଇ ବିବଶା
ଯିବ ଶମନ ନିକଷା ନିପାତ ବଂଶ
ଜନନୀ ବିୟୋଗେ ପରସ୍ତୁ,
ହେବେ କ୍ଷୁଧାତୁରେ ଟା'ର ଶିଶୁଏ ଆଶୁ ।

କରି ମୁଖ ପ୍ରକମ୍ପନ ପୁନଶ୍ଚ ଚୁଂକୃତ[1] ସ୍ୱନ
କା ଆଗେ ଦୁଃଖ କଥନ କହିବେ ଆଉ
ମୋ ବିନାଶେ ସମାଚର କୁଳିଶ ତୁଲ୍ୟ ପ୍ରହାର
ଲଭିଛି କିଏ ନିସ୍ତାର ବିଧାତା ଦାଉ ।"
ମରାଳ କହନ୍ତେ ଏସନ
ଦୟାର୍ଦ୍ର ଝଜନ କଲେ ତାକୁ ମୋଚନ ।

## ନଳ-ଦମୟନ୍ତୀ କଥାବାର୍ତ୍ତା

(ରଗ—ହରି ଚଉତିଶା ବାଣୀ)

ଅନନ୍ତର ଭୈମୀ ନଳ କଥା ଶୁଣି
ପଚରନ୍ତ ତାଙ୍କୁ ଦୁଃଖେ
"ସାର୍ଥକ ଉତ୍ତର ନଦେଇ କିପରି
ଏକଥା ଧଇଲ ମୁଖେ, ହେ ସୁଧୀ ?
ଆଗୁଁ ଜାଣି ଜାଣି ମୋର ଶୁଦ୍ଧି[2] ହେ ସୁଧୀ
ଲୋଡୁନାହିଁ ଏ ଅବଳା ବୁଦ୍ଧି[3] ହେ ସୁଧୀ ।

ବାରିପାନେ ସିନା ଯିବ ପିପାସୁତା
ନୁହଇ ଦୁଗ୍ଧ ପାନରେ
କୁଳ ନାମ ଛାଡ଼ ଯା ଦେଲ ଉତ୍ତର
ବିଷ ହେଲା ମୋ ପକ୍ଷରେ ସେ ଉକ୍ତି
ଅନୀତିରେ କେ ପାଇଛି ମୁକ୍ତି, ସେ ଉକ୍ତି
ବେଳ ନାହିଁ ବାଢ଼ିବାକୁ ଯୁକ୍ତି, ସେ ଉକ୍ତି ।

ଶ୍ରବ ସୁଧା ତୁଲ୍ୟ ତବ କଥା ଶୁଣି
ନାମ ଶ୍ରବଣେ ତୁମ୍ଭର
ହୋଇ ଶ୍ରୁତିସ୍ପୃହେ ପଚରି ଥିଲି ଯା
ବିଲୋମ ହେଲା ଉତ୍ତର, ସେ ଛଳେ
ବଜ୍ର ପଡ଼ିଲା କି ବକ୍ଷସ୍ଥଳେ, ସେ ଛଳେ
ପତିବ୍ରତା କି ସନ୍ମାର୍ଗୁଁ ଟଳେ, ସେ ଛଳେ ।

ତୂଷ୍ଣୀମ୍ଭୂତା ହୋଇ ରହନ୍ତେ ବୈଦର୍ଭୀ[4]
କହନ୍ତ ନଳ ନୃପତି
ପ୍ରେଷ୍ୟ[5] ହୋଇ ଆସି ନାମ ପ୍ରକାଶିବା
ଆଣିବ ଶେଷେ ଦୁର୍ଗତି, ସେ କର୍ମ
କେବେ ନୁହଇ ସଂସାର ଧର୍ମ, ସେ କର୍ମ
ଗୁଣୀ ସିନା ଜାଣିବ ଯା ମର୍ମ, ସେ କର୍ମ ।

ପ୍ରୟୋଜନ ସିଦ୍ଧ ହେବ ନାହିଁ ତବ
ନାମ ଦେଲେ ପ୍ରକଟାଇ
ଅନିଚ୍ଛୁକ ହେତୁ ନ ଲେଉଟେ ଚିତ୍ତ
ନ କହ ଆଉ ବଳାଇ ସେ କଥା
ବିଚାରିଲେ ଘୂରୁଅଛି ମଥା, ସେ କଥା
ରଖିବାକୁ ହେବ ପୂର୍ବ ପ୍ରଥା, ସେ କଥା ।

ତଥାପି ତୁମ୍ଭର ସ୍ପୃହା ଦୂର ପାଇଁ
କହିବି ସ୍ୱଳ୍ପ ବଚନ
ହିମାଂଶୁ ବଂଶର କରୀର ଜାଣିଲେ
ସନ୍ତୁଷ୍ଟ ହେବ ତୋ ମନ, ରେ ସହି
ନିଜ ନାମ ଧରେ ସିନା ଅହି[6], ରେ ସହି ?
ଭଲ ଫଳିବ କି ନାମ କହି, ରେ ସହି ।

୧ ପକ୍ଷୀ ଶାବକର ଚଁ ଚଁ ଶବ୍ଦ, ୨ ନିର୍ମଳାତ୍ମା, ୩ ସମୃଦ୍ଧି, ୪ ଦମୟନ୍ତୀ (ବିଦର୍ଭ ଦେଶର ରାଜା ଭୀମଙ୍କ କନ୍ୟା), ୫ ଦୂତ, ୬ ଖଳ ।

ନ କହିବା ନାମ ପରମର ଆମ
ସାଧୁଏ ଚଳନ୍ତି ମାନି
ଆଉର ହୀନତା ପ୍ରକଟେ ସର୍ବତ୍ର
ସ୍ୱନାମ ଧଇଲେ ଜ୍ଞାନୀ, ରେ ବାଳା ?
ଯାମନେମିକି[୧] ଦେଉ ତୁ ମାଳା, ରେ ବାଳା
ହେଲେ ଅନ୍ୟଥା ଭେଟିବୁ ଜ୍ୱାଳା, ରେ ବାଳା ।

ଶ୍ରବଣେଚ୍ଛା ହେତୁ ଅନୁରାଗ ଯୁକ୍ତା
ଭୀମଜା[୨] କହେ ଏସନ
ବଞ୍ଚନା ଚାତୁରୀ ଶୁଣି ମୋର ମନେ
ଉପୁଜେ ନାନା ଭାବନ, ହେ ଧୀର ?
ଆଗୁଁ ଅରପିଛି ଏ ଶରୀର, ହେ ଧୀର ?
ଭଂଗି ପାରିବି କି ଏବେ ଗିର, ହେ ଧୀର ?

ନ ଜାଣିଲେ ନାମ ମୋର ପରିଚୟ
ଦେବି କି ତୁମ୍ଭଙ୍କୁ ଏବେ
କୁଳ ଅବଳାକି କହିଛି ସ୍ୱନାମ
ପର ପୁରୁଷକୁ କେବେ, ହେ ଜ୍ଞାନୀ ?
କିମ୍ବା ତୁଅ ଏଡେ ଅଭିମାନୀ, ହେ ଜ୍ଞାନୀ
ନାମ କହିବ ମୋ କଥା ମାନି, ହେ ଜ୍ଞାନୀ ।

ମାକ୍ଷିକ[୩] ସଦୃଶ ପ୍ରିୟ ଭାରତୀକି[୪]
ନ କରି ଶ୍ରବଣ ନଳ
"କହିଲେ ପୁନଶ୍ଚ ଦେବ ଆଲିଙ୍ଗନେ
ହୋଇବ କାର୍ଯ୍ୟ ମଙ୍ଗଳ, ରେ ବାଳି !
କର ଜୀବନର ଗଳାମାଳି, ରେ ବାଳି
କ୍ଷୀଣ ହେବ ସିନା ଅଙ୍ଗ ଭଳି, ରେ ବାଳି ।

ମୋର ଅଦକ୍ଷତା ପାଇବ ପ୍ରକାଶ
ମନ୍ତ୍ରର ଘଟିଲେ କର୍ମ
ପରପ୍ରେଷ୍ୟ[୫] ହୋଇ ସ୍ୱକାର୍ଯ୍ୟ ସାଧିଲେ
ଅବଶ୍ୟ ହେବ ଅଧର୍ମ, ହେ ସଖୀ ?
କାର୍ଯ୍ୟ ନକର କପଟ ରଖି, ହେ ସଖୀ
ପଥେ ଯିବି ବିଳମ୍ବେ ଅଟକି, ହେ ସଖୀ ।

ନୀତିବନ୍ତ ହୋଇ ଅନୀତି ଆଶ୍ରୟେ
କି ବୋଲିବେ ମୋତେ ଜନେ ?
ବିବୌକସ[୬] ପ୍ରତି କଲେ ଅନୁଗ୍ରହ
ଐଶ୍ୱର୍ଯ୍ୟ ଭୋଗ ଜୀବନେ, ହେ ଚଣ୍ଡୀ ?
କାଳ ନ ଯାପ ବୃଥାରେ ଭଣ୍ଡି, ହେ ଚଣ୍ଡୀ ?
ସୁଖ ପାଅ ସେମାନଙ୍କୁ ମଣ୍ଡି, ହେ ଚଣ୍ଡୀ ।"

ଉତ୍ତର ଦେବାକୁ ଯାଇ ଦମୟନ୍ତୀ
କହିଲେ ତାଙ୍କୁ ଏପରି ।
"ସୁରଙ୍ଗନା ଆଗେ ମାନବୀକି କେବେ
ହେବ କେତେବେଳେ ସରି, ଏ ଭବେ
କିମ୍ବା ଧାଇଁଛି ମନ ଲଘବେ ? ଏ ଭବେ
ଆଉ ଆସିବ ଦେବ ଗୌରବେ ଏ ଭବେ ।

ଚିତ୍ତ ବୃତ୍ତି ମୋର ନଳ ନୃପ ଭିନ୍ନ
ଇତର ପୁରୁଷ ଠାରେ
ରହିଛି କି କେବେ ସର୍ବ ଅନ୍ତର୍ଯ୍ୟାମୀ
ଶକ୍ର[୭] ବିଚାରନ୍ତୁ ବାରେ, ସେ ମନ
କିମ୍ବା କରୁଛି ଅବଗମନ, ସେ ମନ
ଦେବ ପକ୍ଷେ କି ଏହା ଶୋଭନ ସେ ମନ ?"

ମଣିଷକୁ କୃପା କରିବା ସୁପର୍ବା[୮]
ଦେଇ ବାର୍ତ୍ତା ଅନୁଚିତ
ଆପଣା ଚେଟକୁ ଗୋଡରେ ଆଡେଇ
ହେବେ ଭୂରିଶ[୯] ନିନ୍ଦିତ, ହେ ଛାର ?
ଏ ତ ନୁହଇ ସାଧୁ ଆଚାର, ହେ ଛାର
ଲାଜେ ସରୁଛି ଅବଳା ଛାର, ହେ ଛାର ।

ପର ପତ୍ନୀ ବୋଲି ଜାଣି ଜାଣି ମୋତେ
ନ ଦେଖାଇ ଅନୁଗ୍ରହ

୧ ଇନ୍ଦ୍ର, ୨ ଭୀମ ରାଜାଙ୍କ କନ୍ୟା ଦମୟନ୍ତୀ, ୩ ମଧୁ, ୪ କଥା, ୫ ପରର ଭୃତ୍ୟ, ୬ ଦେବତା, ୭ ଇନ୍ଦ୍ର, ୮ ଦେବତା, ୯ ଅଧିକ ।

ବଙ୍କିଳ[୧] ମାର୍ଗରେ ପ୍ରବେଶିଲେ ହେବ
ପରିଣାମ ଦୁଃଖାବହ, ହେ ସ୍ମର !
ସାହା ସତତ ମୋର ଉକାର[୨], ହେ ସ୍ମର
ପଣ ଜାଣନ୍ତୁ ଦେବେ ବାଳାର, ହେ ସ୍ମର ।

ଆଦିତେୟାବଳୀ[୩] କାହିଁକି ଆସକ୍ତ
ପ୍ରତିକୂଳ ବ୍ୟବହାରେ
ଜାତରୂପ[୪] ଛାଡ଼ ଆରକୂଟେ[୫] ସ୍ପୃହା
କରୁଛି କିଏ ସଂସାରେ, ହେ ଗୁଣୀ ?
ଲଗେ ଆଶ୍ଚର୍ଯ୍ୟ ଏ କଥା ଶୁଣି, ହେ ଗୁଣୀ
କିଏ ରହିବ ତୁନି ନ ଖୁଣି, ହେ ଗୁଣୀ ।

ଦିଗୀଶମାନଙ୍କ[୬] ଦୁର୍ବାଚିକ[୭] ଭଷା
ପଡ଼ଲା ଯାହା ଶ୍ରୁତିରେ[୮]
ମରଣ ବାଧାରୁ ବଳି ଏ ଯାତନା
ସହିବ କିଏ ମହୀରେ, ହେ ଦୂତ
କରିଥିଲି ବା କେବେ ଦୁଷ୍କୃତ, ହେ ଦୂତ
ପୋଡ଼ା କପାଳେ ସିନା ଯା ଶ୍ରୁତ, ହେ ଦୂତ ।

କୀଟ ଦଂଶନର ଉତ୍କଟ ପୀଡ଼ାକୁ
ଦେଉଛି ତୁମ ବଚନ
ଯାହା ମୁଁ କହିଲି ନ କରି ପ୍ରଶଂସା
ଅବାଚ୍ୟରେ ଦେଲ ମନ, ହେ ପ୍ରେଷ୍ୟ[୯]
କିଏ ବୁଝିବ ତୁମ ଉଦ୍ଦେଶ୍ୟ, ହେ ପ୍ରେଷ୍ୟ
ଆଉ ନଦିଅ ହୃଦୟେ ପ୍ରେଷ[୧୦], ହେ ପ୍ରେଷ୍ୟ ।

ପ୍ରାଣବାୟୁ ମୋର ଯାଉଅଛି ଉଡ଼
ହେବାରୁ କୃତାନ୍ତ[୧୧] ସ୍ମର
ମନ୍ତୁକୁ ନଜାଣି ସାପ ଗାତେ ହାତ
ଦେଉଅଛ ବାର ବାର, ହେ ସ୍ମର !
ଆଉ ନକର ଅନ୍ୟ ବିସ୍ମର, ହେ ସ୍ମର
ଶୁଣ ଉଷିତ ଏବେ ବାଳାର, ହେ ସ୍ମର ।

ଯାହା ଇଚ୍ଛା ତାହା କରନ୍ତୁ ଗୀର୍ବାଣେ[୧୨]"
ବୋଲି ଘଷିଣ ଶେଷରେ
"ମୋ ପାଣି ଗ୍ରହଣ ନକଲେ ନୈଷଧ
ତେଜିବି ପରାଣ କ୍ଷରେ, ସେ ଯାଇ
ଉଦ୍[୧୩]ବନ୍ଧନେ ଗଳା ଲଗାଇ, ସେ ଯାଇ
ହୁତାଶନରେ[୧୪] ଦେହ ମିଶାଇ, ସେ ଯାଇ
ଅବା ସଲିଳ ନେବ ଭସାଇ, ସେ ଯାଇ ।

ଆତ୍ମହତ୍ୟା ଦୋଷ ମହାପାପ ବୋଲି
କହନ୍ତି ସିନା ଲୋକରେ
ତେବେ ସାଧୁ କିମ୍ବା ଯାଉଛି ଅବାଟେ
ଜମ୍ବାଳ[୧୫] ଦେଖି ବାଟରେ, ହେ ଦୂତ !
କହ ପଛଥିବ ଯଦି ଶ୍ରୁତ[୧୬], ହେ ଦୂତ
ଶୁଣି ଶ୍ରବ ହେବ ମୋର ପୂତ[୧୭], ହେ ଦୂତ ।"

"ଆହେ ଚନ୍ଦ୍ରମୁଖି ! ବାସବାନୁଗ୍ରହେ
ପରାଙ୍ମୁଖୀ ହେଲ ସିନା
ମାନୁଷୀ ହୋଇ ବା କି ସୁଖ ପାଇବ
ଦେବ ଅନୁଗ୍ରହ ବିନା, ଏ ଭବେ
ମୋର ମନ ପାଉନାହିଁ ଲବେ, ଏ ଭବେ
ତୁମ ପିତାଙ୍କୁ ପଚ୍ଚର ଜବେ, ଏ ଭବେ ।

କ୍ଷତ୍ରିୟ କୁଳରେ ଜନ୍ମଲଭ କରି
ଜୀମୂତବାହନ ଛାଡ଼
ଅନ୍ୟ କାହାଠାରେ ନ ବଳାଇ ଇଚ୍ଛା
ସଂଶୟ ଦିଅ ଉପାଡ଼, ସେ ମନୁ
ବଡ଼ କମନୀୟ ତାଙ୍କ ଧନୁ, ସେ ମନୁ
ପୁଣି ଅନୁପମ ବଜ୍ର ହନୁ, ସେ ମନୁ ।

ନଳ ବିନା ଯଦି ଅନଳେ ପ୍ରବେଶ
କରିବ ନିଜ ଇଚ୍ଛାରେ,

---

୧ କଣ୍ଟକ, ୨ ଶିବ, ୩ ଦେବ ସମୂହ, ୪ ସୁନା, ୫ ପିତଳ, ୬ ଦିକ୍‌ପାଳମାନଙ୍କ, ୭ ମନ୍ଦ, ୮ କାନରେ, ୯ ସ୍ମର, ଦୂତ, ୧୦ କ୍ଲେଶ, ୧୧ ଯମ, ୧୨ ଦେବତାମାନେ, ୧୩ ବେକରେ ଦଉଡ଼ି ଉପରେ ବାନ୍ଧବା, ୧୪ ଅଗ୍ନି, ୧୫ ପଙ୍କ, ୧୬ ସ୍ମୃତିଶାସ୍ତ୍ର, ୧୭ ପବିତ୍ର ।

ତେବେ ଆଗ୍ରହରେ ତୁମକୁ ଗ୍ରହଣ
କରିବେ ବିନା ବିଚାରେ, ସେ ନିଆଁ
କଥା ସବୁ ହୁଅ ଛାନିଆଁ, ସେ ନିଆଁ
ନିନ୍ଦା କରିବ ତୋତେ ଦୁନିଆଁ, ସେ ନିଆଁ ।

ଚିତ୍ତର ଅତିଥି କରିଥିବ ଯେବେ
ପରେତରାଟଙ୍କୁ[1] ବର
ମରଣ ଆଶଙ୍କା ନ ରହିବ ହୃଦେ
ଦିଶିବତ ମନୋହର, ସେ ନିତି
ତୋର ବଢ଼ିବ ଅବଶ୍ୟ ସ୍ଥିତି[2], ସେ ନିତି
ପୂଜା କରିବ ଅବଶ୍ୟ କ୍ଷିତି[3], ସେ ନିତି ।

ପ୍ରାପ୍ତ ନିଧିକି କେ ନିଷେଧ କରିଛି
ଦେଖିଛ କି କେଉଁଠାରେ ?
ନିଃଶ୍ୱାସ ଧାରକୁ ନାସାରନ୍ଧ୍ରେ ଛାଡ଼
ନ ଛାଡ଼ ଆନନ ଦ୍ୱାରେ, ହେ ସଖି !
ଅବିଚାରିତ ବଚନ କହି, ହେ ସଖି
କର ସ୍ୱୀକାର ସନ୍ତୋଷ ବହି, ହେ ସଖି ।

ଇକ୍ଷୁରସ ଛାଡ଼ ସୁଖଦା[4] ସିତାଗ୍ର[5]
କରଭ[6] ଖାଏ ଯେସନ
ପରିତେଜି ମଣି କାଚରେ ଆଗ୍ରହ
କରୁଛ ତୁମ୍ଭେ ତେସନ, ରେ ମୂଢ଼ା
କେତେକାଳ ରହିବ ଅନୂଢ଼ା[7], ରେ ମୂଢ଼ା
ମ୍ଳାନ ଦିଶିବ କ୍ରମଶଃ ଚୂଡ଼ା[8], ରେ ମୂଢ଼ା ।

ବକ୍ରୋକ୍ତି ଚାତୁରୀ ଶୁଣି ମୋର ମନେ
ବିସ୍ମୟ ହେଉଛି ଜାତ
ମଘବାଙ୍କ[9] ପ୍ରତି ଆଗ୍ରହ ଜନ୍ମିଲେ
ଅବଶ୍ୟ ମଂଗିବେ ତାତ, ହେ ସତୀ ?
ହେବ ଖଣ୍ଡିତ ସବୁ ବିପତ୍ତି, ହେ ସତୀ
ପରେ ଲଭିବ ପରମ ଗତି, ହେ ସତୀ ।

ସରସ୍ୱତୀ[10] "ରସ[11] ପ୍ରବାହ[12]"ଚକ୍ରରେ
ପଡ଼ ମୁଁ ହୁଏ ବୁଲାଇ
କାହାକୁ ବରିବ ଲାଜ ଛାଡ଼ କହ
କିଛି ଏବେ ନ ଲୁଚାଇ, ସେ ଖରେ
ଲାଜ ନ କର ବ୍ୟବହାରରେ, ସେ ଖରେ
ସୁଖ ଯେପରି ଅନ୍ୟ ଜନ୍ମରେ, ସେ ଖରେ ।

ମାନବତା ଛାଡ଼ ଦେବତ୍ୱ ପାଇଲେ
ନୋହିବ କିଏ ଆନନ୍ଦ ?
ପୀୟୂଷ[13] ରସର ମାଧୁର୍ଯ୍ୟ ନଜାଣି
କହୁଛ ବଚନ ଛନ୍ଦ, ହେ ସଖି !
ମଣ ଅସାର ସଂସାର ମହୀ, ହେ ସଖି
ଥକି ଗଲିଣି ତୁମକୁ କହି, ହେ ସଖି ।

ଦୈବଲିପି ଜଣା ପଢ଼ିବା ସହଜ
ନୁହଇ ପ୍ରପଞ୍ଚେ କେବେ
ତେଣୁ ମୋତେ ଚାର କରି ପଠାଇଲେ
ମହେନ୍ଦ୍ରାଦି[14]ଦେବେ ଏବେ, ଏ ବାଣୀ
କର ଗ୍ରହଣ ଅମର୍ତ୍ତ୍ୟ ପାଣି, ଏ ବାଣୀ
କାର୍ଯ୍ୟ ନକର କିଛି ନଜାଣି, ଏ ବାଣୀ ।

ନୈଷଧ ବଚନ ସରନ୍ତେ ଭୀମଜା[15]
ତୁନି ହୋଇ କିଛିକ୍ଷଣ
ହଂସ ଦେଇଥିବା ରୂପ ଧରି ତାଙ୍କୁ
ତକ୍ଷଣେ କଲେ ଅର୍ପଣ, ସେ ସତୀ
ଭକ୍ଷେ, "ଆଗୁଁ ମୁଁ ବରିଛି ପତି, ସେ ସତୀ
ଅନ୍ୟଠାରେ ନାହିଁ ମୋର ମତି, ସେ ସତୀ ।

ଅସଂଭ୍ରମ[16]କଥା କହି ମୋ ହୃଦୟେ
ଦିଅନାହିଁ ଆଉ ପୀଡ଼ା
ଏଣୁ ତେଣୁ ଶୁଣି ବିତୁଛି ସମୟ
ଲାଗୁଅଛି ସିନା ବ୍ରୀଡ଼ା[17], ସେ ହଂସ

୧ ଯମ, ୨ ମର୍ଯ୍ୟାଦା, ୩ ପୃଥିବୀ, ୪ ସୁଖଦା-ଶମୀଗଛ, ୫ କଣ୍ଟା, ୬ ଓଷ୍ଠ, ୭ ଅବିବାହିତ, ୮ କେଶ, ବାଳ, ୯ ଇନ୍ଦ୍ର, ୧୦ ନଦୀ, ୧୧ ଜଳ, ୧୨ ଉର୍ଦ୍ଧ୍ୱରେ, ୧୩ ଅମୃତ, ସାରକଥା, ୧୪ ଇନ୍ଦ୍ର, ୧୫ ଦମୟନ୍ତୀ, ୧୬ ଅମର୍ଯ୍ୟାଦା, ୧୭ ଲଜ ।

ଆଗେ ଜଣାଇଛି ମୋ ମାନସ, ସେ ହଂସ
ଯୁଗେ ଯୁଗେ ରହିଥାଉ ଯଶ ସେ ହଂସ ।

ପରଇଚ୍ଛା ରୂପ ଫଳଭକ୍ଷଣ କି
କେତେବେଳେ ଶୋଭନୀୟ
ବିବେଚନା କରି ଯାହାକୁ ବରିଛି
ପୂର୍ବୁଁ ସେ ହୋଇଛି ପ୍ରିୟ, ସେ ମନ
ଯେତେ ଥୋଇଲେ ତା ଆଗେ ଧନ, ସେ ମନ
କିଏ କରିବ ପରିବର୍ତ୍ତନ, ସେ ମନ ।

ଈପ୍‌ସିତ ପ୍ରିୟକୁ ନ ପାଇଲେ ମୁହିଁ
ଶ୍ରେୟତ ହେବ ମରଣ
ଅନୁଗମ୍ୟା ମୋର ନୈଷଧଙ୍କ ଠାରେ
ପଶିଛି ଅଗ୍ରୁଁ ଶରଣ, ହେ ବିଧି !
ସେତ ଲୋଡୁ ନାହିଁ କେବେ ନିଧି, ହେ ବିଧି
କର ଦୁଃଖିନୀ କାମନା ସିଦ୍ଧି, ହେ ବିଧି ।"

ବିନ୍ଧିବାକୁ ମନ ଦୁହାଇ ଦୁହାଇ
ପୂଛନ୍ତେ ନଳ ଛଳରେ,
"ଉତ୍ତରିଲେ ଭୈମୀ ପାଳିବି ଯା ସତ୍ୟ
କରିଛି ହଂସ ଆଗରେ, ହେ ଖର
ମନ୍ଦ ମତିର ଛନ୍ଦ ବେଭାର, ହେ ଖର
କିମ୍ପା ପଖର ବାରକୁବାର, ହେ ଖର ।

ପତିବ୍ରତା ରୂପ ସଲିଳେ ଜୀବନ
ହୋଇଛି ଯାର ମଜ୍ଜିତ
ଦିକ୍‌ପାଳ ମାନଙ୍କୁ ବରଣ କରିବା
ତା ପକ୍ଷେ ଅସମ୍ଭାବିତ, ହେ ଖର ?
ଶୁଣି ପାରିବ କି କଥା କା'ର, ହେ ଖର
ଆଉ ନ ଠେକ ବିଷୟାସାର, ହେ ଖର ।

ଗୋଟିଏ କ୍ଷଣ ମୋ ଯୁଗ ତୁଲ୍ୟ ବୋଲି
ପ୍ରତୀତ ହୁଏ ମନରେ
ମୋ ତାପ ନାଶନେ ନଳ ବିନା ଆନ
ସମର୍ଥ କିଏ ଭବରେ ? ହେ ଖର !
ଅଗ୍ରୁଁ ବୁଝାଇଛି ବାର ବାର, ହେ ଖର
ଜାଣୁ ନାହିଁ ତୋ ଦୟା ଥିବାର, ହେ ଖର ।

ହୃତ ଧର୍ମୁଁ ନଳ ନ ହୋଇ ବିରତ
ପଖରିଲେ ଆଉଥରେ
କାର୍ଯ୍ୟ ବିଘାତକ ହେଲେ ଦେବତାଏ
କି କରିବୁ ସ୍ୱୟମ୍ବରେ, ରେ ବାଳି !
ପଛେ ଶୁଣିବ କେବଳ ଗାଳି, ରେ ବାଳି
ନିନ୍ଦା କରିବେ ତୋ ଆଳି ଆଳି[୧], ରେ ବାଳି ।"

ତବ ତୁଣ୍ଡୁ ଯାହା ଅପ୍ରିୟ ବଚନ
ଶୁଣିଲି ଏବେ ମୋ ଶ୍ରବ
କେଉଁ ବାଳା ଭବେ ସହିବ ଏ କଥା
ଲାଘବ କରି ଗୌରବ, ହେ ଖର
ନଳ ଅଟନ୍ତି ମୋ ଗଳାହାର, ହେ ଖର
ଆଉ ନ କହ ଅନ୍ୟ ବେଭାର, ହେ ଖର ।"

ଭିନ୍ନମର୍ମୀ[୨] ଭୈମୀ ଶୁଣି ଏ ବଚନ
ନଳ ମୁଖୁଁ ବାର ବାର,
ସମ୍ଭାଳି ନପାରି ନୟନ ଦ୍ୱୟରୁ
ଗଡାଇଲେ ଅଶ୍ରୁ ଧାର, ସେ କାଳେ
ବୁଡ ଗଲା କି ଦୁକୂଳ[୩] ଝାଳେ, ସେ କାଳେ
ଧାତା ଲେଖିଛି ଯାହା କପାଳେ, ସେ କାଳେ ।

"କାହିଁକିରେ ପ୍ରାଣ ନ ଯାଇ ରହିଛୁ
ବୃଥା ସୁଖାଶାକୁ ଲୋଡ଼ି
ଯେତେବେଳେ ତୋର ଆବାସ ସଦୃଶ
ହୃଦୟ ଯାଉଛି ପୋଡ଼ି, ସେ ମାୟା
ବିକା ହୋଇଛି ପୂର୍ବୁଁ ଏ କାୟା, ସେ ମାୟା
ଦ୍ରୋହ କରିବେ ଏଥିରୁ ଛାୟା[୪], ସେ ମାୟା ।

୧ ସଖୀ ସମୂହ, ୨ ବଦୀର୍ଣ୍ଣ ହୃଦୟା, ୩ ସୂକ୍ଷ୍ମ ବସ୍ତ୍ର, ଉତ୍ତରୀୟ ବସ୍ତ୍ର, ୪ ଦୁର୍ଗା ।

ଯେଉଁ ହଂସ ମୋତେ କଲା ନିବେଦନ
ସେ ନାହିଁ ଦୈବ ବଶରେ
ନହୋଇ ନିର୍ଦ୍ଦୟ ମୋ ଲାଗି ଅବଶ୍ୟ
ଦେଖାଦେବ ସ୍ୱୟମ୍ବରେ, ହେ ବୀର
ତବ ଚରଣେ ମାଗୁଛି ଶିର, ହେ ବୀର
ହେବ ଦର୍ଶନେ ମୋ ମନ ସ୍ଥିର, ହେ ବୀର ।

ଆହେ, ଦେବଗଣ ହେଲ କି ନିଦ୍ରାଣ
ନ ଶୁଭଇ ମୋ ବେଦନ,
କୃପା ଅକୁପାର କରିଦେଇ ପାନ
ନିଶ୍ଚିନ୍ତ ହେଲ କି ମନ, ହାମରେ[୧]
ତାକ ନଶୁଣ ଆର୍ତ୍ତକାଳରେ, ହାମରେ
ଭସି ଯାଉଛି ଦୁଃଖ ସାଗରେ, ହାମରେ ।

ପଦାଂଘ୍ରି ଶରଣ ମୋର ମନ ବୋଲି
ଜାଣ ଆହେ କୃପାନିଧି
ନ କରିବା ଦୟା ଛାର ଅବଳାକୁ
ଅଟଇ ସିନା ଅବିଧି, ତୋ କର୍ମ
ସଦା ଶିଖାଏ ଲୋକକୁ ଧର୍ମ, ତୋ କର୍ମ
ବୁଝିପାରେ କି ନାସ୍ତିକ ମର୍ମ, ତୋ କର୍ମ ।

ତବ ଶ୍ରୋତ୍ର ପଥେ ପଶିଲେ ମୋ ବାଣୀ
ଅବଶ୍ୟ ହେବ ମଙ୍ଗଳ
ଅଜ୍ଞାନେ ବା କିଛି କରିଥିଲେ ଦୋଷ
ମାର୍ଜନ କର ଚଞ୍ଚଳ, ହେ ହରି
ଦୟା ନକଲେ ଯିବିଟି ସରି, ହେ ହରି
ତୁମ୍ଭେ ଦୁସ୍ତର ସିନ୍ଧୁର ତରୀ, ହେ ହରି ।"

## ଅଙ୍ଗଦ ରାବଣ ନିକଟକୁ ଯିବା

ଅଙ୍ଗଦ ଦୂତ ଭାବରେ
ଯାଇ ପହଂଚିଲା ଲଙ୍କା ଗଡରେ
ଖଣ୍ଡରୀଟରେ, ରାବଣକୁ ଡାକେ ଖରେ ।

ଅଞ୍ଜନ ସ୍ୱନ ବାନରର
କମ୍ପାଇଲା ଅବା ଲଙ୍କା ନଗର
ଖଣ୍ଡରୀଟରେ, ଦୈତ୍ୟ ଶୁଣି ଥରହର ।
ଥିଲେ ନାହିଁ ତାର ଡର
କଲା ଆଉଥରେ ବିକୃତ ସ୍ୱର
ଖଣ୍ଡରୀଟରେ, କି ସାହସ ବାନରର ।

ଯାଉଅଛି ଏକୁଟିଆ
ଆଡମ୍ବର ଦେଖି ନୋହି ଛାନିଆଁ
ଖଣ୍ଡରୀଟରେ, ଦଶାସ୍ୟ ଆଗରେ ଠିଆ ।
ରାବଣ ତା ପରିଚୟ
ମାଗିବାରୁ କହେ ବାଳି ତନୟ
ଦଶାନନରେ, ନାହିଁକି ତୋ ମୃତ୍ୟୁ ଭୟ ।

ଦେଉଛୁ ଝାସ ନିଆଁରେ
କପିଦଳ ସହ ରାମ ଲଙ୍କାରେ
ଦଶାନନରେ, ପଶି ଉଗିଲେଣି ଦ୍ୱାରେ ।
ଅବଜ୍ଞାରେ ଦଶାନନ
ପଚାରିଲା କେଉଁ ବାଳି ନନ୍ଦନ
ଖଣ୍ଡରୀଟରେ, ଥରଇ ତା ଅପଘନ ।

ଅଙ୍ଗଦ କହେ ରାଗରେ
ଯେଉଁ ବାଳି ତୋତେ ଯାକି କାଖରେ
ଦଶାନନରେ, ଭ୍ରମୁଥିଲା ହରଷରେ ।
ରେ ରକ୍ଷବଂଶ ଘାତକ ?
ରାମ ବାଣେ ହେବୁ ଛିନ୍ନ ମସ୍ତକ
ଦଶାନନରେ, ନଥିବ କେ ତୋ ରକ୍ଷକ ।

ପରଦାର ହରଣରେ
ଉଠିଛି ତୋ ନାମ ଭୂମଣ୍ଡଳରେ
ଦଶାନନରେ, ଅଛି କି ଲାଜ ମୁହଁରେ ।
ତପସ୍ୱୀ କୁଳେ ଜନମ
ହୋଇ ନାରୀ ପ୍ରେମ କଲୁ ବିଭ୍ରମ
ଦଶାନନରେ, ଛାଡ଼ିଲୁ ତୋତେ ଧରମ ।

---

[୧] ହା ! + ଅମରେ ।

ରାବଣ ଅଟ୍ଟହାସରେ
ଘୋଷିଲା, ରେ କପି ମୋର ଆଗରେ
ବାଳି ସୁତରେ, ନ କହ କିଛି ଗର୍ବରେ ।

ଆରେ କଟୁଭାଷୀ କପି
ରାମ ଲଙ୍କାଗଡ ପଶେ ଯଦ୍ୟପି
ବାଳି ସୁତରେ, ମାରିବି ଆକାଶେ ଛପି ।

ଶକ୍ର ଯାର ମାଳାକାର
ମାୟାରେ ପାରଗ ଯା ପରିବାର
ବାଳି ସୁତରେ, ଭୟ ନାହିଁ କେବେ ତାର ।

କହିଗଲୁ ତୋ ବଡ଼ିମା
ଲିଭିନାହିଁ ଯେତେ ତୋର କାଳିମା
ଦଶାନନରେ, ନ ଜାଣୁ ରାମ ମହିମା ।

ରାମ ରମଣୀ ଫେରାଇ
ନ ଦେଇ ଦେଖାଉ ଏତେ ବଡାଇ
ଦଶାନନରେ, ତ୍ରିଲୋଚନ ବର ପାଇ ।

କହିଲି ଏତେ ବୁଝାଇ
ନ ଶୁଣିଲୁ ପରି ରହୁ କିପାଇଁ
ଦଶାନନରେ, ମରିବୁ ଚପଟ ଖାଇ ।

ଏତେ କହି ରାବଣକୁ
ଆନନ୍ଦେ ଫେରିଲା ରାମ ପାଶକୁ
ମନ୍ଦ ବିହିରେ, ଆସିଲେ ସର୍ବେ ରଣକୁ ।

## ରଣ ଭୂଇଁର ଦୃଶ୍ୟ

ମେଲି ତାର ବିଂଶକର ପଡ଼ଅଛି ଲଙ୍କେଶ୍ୱର
ଦେଖିଲେ ମାଡୁଚି ଡର ଆହା ! ଦଇବ
ହୋଇଥିଲା କୁହାଳିଆ ପୁଣି ଅତି ଅମାନିଆ
ଦିଶେ ଘୋର ନିଛାଟିଆ, କିଏ ସହିବ
ଉଗ୍ରରୁ ବଳକା ହୋଇଲେ
ଅବା କ୍ରୋଧ ଅହଂକାର ହୃଦ ମଂଥିଲେ ।

ଯାଉଥିଲା ଦିନ ଯା'ର କରି ସ୍ୱଚ୍ଛନ୍ଦ ବିହାର
ସବୁଠାରେ ବଢ଼ାଇଥିବା ଭୁଜବଳେ
ଯା ନାମ ଶୁଣିଲେ ସୁରେ ଲୁଚନ୍ତି ଭୟରେ ଦୂରେ
ଖଟନ୍ତି ଇନ୍ଦ୍ର ଯା ପୁରେ, ସେ ଗଡ଼େ ତଳେ
ପର ନାରୀ ଧର୍ଷଣ କରି
କେତେଦିନ ରହିବ କେ ଜୀବନ ଧରି ।

ଭାଗ୍ୟହୀନା ମନ୍ଦୋଦରୀ କାନ୍ଦୁଛି ଚରଣ ଧରି
ଉଦଲୀଳା ତ ଏପରି ଜାଣି ସକଳ
ଦୁଷ୍ଟାକୁ ବଣା ମୋହରେ କିଏ କାହାର ଉଦରେ
ଏକଥା ନାଚୁ ହୃଦରେ ନୁହ ବିକଳ
ବିହିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।

ଯା ମୁଣ୍ଡ ତୁଣ୍ଡ ମୁଣ୍ଡରେ ବହିଥିଲେ ଆନନ୍ଦରେ
ଆଜି ତା ଗୃଧ୍ର ପାଦରେ ହେଉଛି ଦଳା
ଦେବଙ୍କୁ ଯେ ଟାଣି ଟାଣି ଖଟାଇଲା ଘରେ ଆଣି
ଅକାମୀ ସେ ବିଂଶପାଣି ପଡ଼ିଛି ଗଲା
ବିହିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।

ହେଲଣି ଲଙ୍କା ଶ୍ମଶାନ ପଡ଼ଅଛି ଶବମାନ
ମନ୍ଦୋଦରୀ ହୀନିମାନ ହେଲା ଶେଷକୁ
ଦିନରେ ଶକୁନି କାକ ରାତିଯାକ ଶିବା ଡାକ
ସହୁ ନାହିଁ କା'ର ନାକ ଶବ ଗନ୍ଧକୁ
ବିହିର କେ ଛନ୍ଦ ବୁଝିବ
ପୂର୍ବକୃତ ଫଳ ନିଶ୍ଚେ ଭୋଗିବ ଜୀବ ।

## ସୃଷ୍ଟି

ଆମ୍ବପତ୍ର ରଖି ଟୋକେଇଟିରେ
ଛାଡ଼ବ କେତେକ 'ଏଣ୍ଡି' ତହିଁରେ ।

ଦୁଇ ଇଞ୍ଚ ଲମ୍ବ ଏହି ଜୀବର
ଖୋଷାଘର କରେ ରାତିରେ ଖରେ ।

ଏକୋଇଶ ଦିନେ କାଟି ଖୋଷାକୁ
ପ୍ରଜାପତି ହୋଇ ଆସେ ପଦାକୁ ।
ଅଣ୍ଡିଶ ମାଇର ଯୋଡ ଦି ଦିନ
ଦମ୍ଭ ଦେବା ସଙ୍ଗେ ସଙ୍ଗେ ବିଲୀନ ।
ପ୍ରଜାପତି ହୋଇ ହେଲା ଜନମ
ଏହି ତ ବିଧିଙ୍କ ସୃଷ୍ଟି ନିୟମ ।
ଲାଗିଅଛି ଧାଡ଼ ଜନ୍ମ ମରଣ
ଅଟଇ ଏହାହିଁ ତାର ପ୍ରମାଣ ।
ତେଣୁରେ ମଣିଷ ଦେଲି ବୁଝାଇ
ଯାଉ ଏ ଜୀବନ ପ୍ରଭୁଙ୍କୁ ଧ୍ୟାୟୀ ।

କରୁଥିବା କାର୍ଯ୍ୟ ଦେଖୁଛନ୍ତି ସଦା
ପାଖେ ପାଖେ ରହି ପରମେଶ୍ୱର
କରିଲେ କୁକର୍ମ ରଖନ୍ତି ସାଇତି
ମାପକାଠି ଖଣ୍ଡେ ଏ ଜୀବନର ।

ଦୋଷ ଦେଖି ଦଣ୍ଡ ଦିଅନ୍ତି ବିଚାରି
ନ୍ୟାୟ ନିକିତିକି ଧରି ହାତରେ
ଏ ଛାର ମଣିଷ ବୁଝିବ କିପରି
ଯାର ମନ ଲାଖି ରହେ ସ୍ୱାର୍ଥରେ ।

ଜଗଦୀଶ ଦଣ୍ଡ ନଥିଲେ ଏ ଭବେ
ଅନ୍ଧ, ଛୋଟା, କୁଷ୍ଠରୋଗୀ ଦାଣ୍ଡରେ
ଭିକ ମୁଠେ ପାଇଁ ଦ୍ୱାରେ ଦ୍ୱାରେ ଯାଇ
ଛାଡନ୍ତେ କି ରଡ଼ ବିକଳ ସ୍ୱରେ ?

ଏ ସବୁ ଦଣ୍ଡକୁ କଲେ ହେଁ ଦର୍ଶନ
ଏ ମର ମଣିଷ ତାର ଚରିତ୍ର
ବଦଳାଇବାକୁ ଶିଖୁଛି କି କେବେ
ଦେଖି ଦେଖି ଭବଲୀଳା ବିଚିତ୍ର ।

ଗଲାବେଳେ ବାଟେ ପଡୁଛି ଦୃଷ୍ଟିରେ
ଉଠାଣି ଗଡାଣି ନିରତ ପଥ
ଉଠିବା ପଡ଼ିବା ମଣିଷ ଜୀବନ
ଜୀଇଁଥିବା ଯାଏ ଅବଶ୍ୟ ତଥା ।

ବିଧିବଶେ ଆଜି ଗଲେ ଉପରକୁ
ଖସିବ ନାହିଁକି କାଲି ତଳକୁ
ଦେଖି ଭବେ ନିତ୍ୟ ଚିରନ୍ତନ ସତ୍ୟ
ପଶୁଛ ଅବାଟେ ଛାଡ଼ ନ୍ୟାୟକୁ ।

## ସ୍ତବ

ଅଟଇ ଜଗତ ଈଶ୍ୱରମୟ
ତାଙ୍କଠାରେ ରଖୁ ସଦା ହୃଦୟ ।
ପଡୁଛି ଦୃଷ୍ଟିରେ ଦାଣ୍ଡରେ ଘରେ
ସଢୁଛି ମଣିଷ ନାନା ରୋଗରେ ।
ଆଖି ଫୁଟି କା'ର ପାଉଛି କଷ୍ଟ
କୁଷ୍ଠରେ କା'ର ବା ଜୀବନ ନଷ୍ଟ ।
ଘୁଷୁରି ଘୁଷୁରି ଯାଉଛି ଛୋଟା
ହେଲେହେଁ ତାହାର ଶରୀର ମୋଟା ।
ପଡଛି ଶେଯରେ କିଏ ବା ଏଣେ
ଗଛରୁ ଖସୁଛି କିଏ ବା ତେଣେ ।
ଅନ୍ୟାୟ କାର୍ଯ୍ୟରୁ ଯାଅ ଓହରି
ତରିବାକୁ ଖୋଜ ଧରମ ତରୀ ।
ବିବେକକୁ ବୁଝି କରିବ କର୍ମ
ତାହାହିଁ ସଂସାରେ ଜୀବନ ଧର୍ମ ।
କ୍ଷଣିକ କ୍ଷମତା ଲଗାଇ ନାଟ
ଜାଣୁ ନାହିଁ ଚିନେ ବାଟ ଅବାଟ ।
ପାପ ଲାଗି ଥୁଆ ଦଣ୍ଡ ସତତ
ଏ କଥା ନ ଚିନ୍ତ କି ହନ୍ତସନ୍ତ ।
ଏ ଭବେ ମଣିଷ ଛାଡ଼ ମହତ
ଧାଇଁଛି ସ୍ୱାର୍ଥରେ ଅନବରତ ।
ଜନମ ମରଣ ସୃଷ୍ଟିର ନୀତି
ପାପ ପ୍ରତି ରଖୁ ହୃଦୟେ ଭୀତି ।
ସାଇତା ହେଉଛି ପାପ କରମ
ତା ଦଣ୍ଡ ଭୋଗିବ ପର ଜନମ ।
ଦୁର୍ଦ୍ଦଶା ଦର୍ଶନେ ଅନ୍ଧ ଛୋଟାର
ପୂର୍ବଜନ୍ମ ପାପ ଫଳ ବିଚାର ।

୦୦୦

# ତୃତୀୟ-ସ୍ତବକ

ପୁରୁଷେ ଛାଡ଼ିଲେ କିଏ କାହାର,
ଶୁଦ୍ଧ ଚିତ୍ତେ ଲୋକ କରୁ ବିଚାର ।

## ବିଚିତ୍ର ବିଶ୍ୱର

ବିଚିତ୍ର ବିଶ୍ୱର ବିଚିତ୍ର ସୃଜନ
ଚଉଦିଗେ ଲୋକ କରୁ ତା ଦର୍ଶନ ।
ଆମ୍ବରକ୍ଷା ଲାଗି ଦର୍ଶନ କାହାର
କେ ପାଇଛି ନଖ ଦେଖୁ ନିରନ୍ତର ।
ଲାଂଗୁଳେ କାହାର ରହିଅଛି ବିଷ
ପାରୁଛି କି ସହି ତା ଜ୍ୱାଳା ମଣିଷ ।
ଗୋରୁ ଜାତି ଶିଙ୍ଘ ନଦେଖିଛି କିଏ
ତା ଶତ୍ରୁକୁ ସେହି ନିଜେ ତଡ଼ିଦିଏ ।
ହାତୀର ହାବୁଡ଼େ ପଡ଼ଲେ ଶୁଣ୍ଢରେ
କରେ ଆକ୍ରମଣ ଆସି ସେ ରଗରେ ।
କେତେ ବୃକ୍ଷଲତା ହୋଇଅଛି ସୃଷ୍ଟି
ପଡ଼ୁଅଛି ନିତି ମଣିଷର ଦୃଷ୍ଟି ।
ବିବିଧ ବର୍ଣ୍ଣର ଫୁଟି ଫୁଲ ନିତି
ନିର୍ଗନ୍ଧ ସୁଗନ୍ଧ କାର ଶୋଭ ଅତି ।
ନାଗଚମ୍ପା ଫୁଲ ଦେଖିଥିବ ଯିଏ
ଶିବସମ ବୋଲି ଭବି ମୁଗ୍ଧ ସିଏ ।
କଙ୍କଡ଼ା ବିଛା ଦଂଶନରେ ପିଲାମାନେ
ବେଳେ ମରିଥାନ୍ତି ମଧ୍ୟ ଅଜ୍ଞାନେ ।

ଯଥା ଦିନ ଗତି ସଞ୍ଜ ସକାଳ
ଶିଶିର ବସନ୍ତ ନିଦାଘ କାଳ ।
ଯାଉଛି ଆସୁଛି ବିଧି ଇଚ୍ଛାରେ
ତଥା ଜନ୍ମ ମୃତ୍ୟୁ ଏହି ସଂସାରେ ।

୦ ୦ ୦

## ଜନ୍ମ ମରଣ

ବିଶ୍ୱର ଶକତି ଥାଇ ମଣିଷ
କରି ଅନୀତିକି ପିଉଛି ବିଷ ।
କି ହେବ ତା ଗତି ପର ଜନ୍ମରେ
ଭବୁନାହିଁ କେବେ ଜୀବନେ ଥରେ ।

ଧନ୍ୟ ଧନ୍ୟ ମଣିଷରେ ଧନ୍ୟ ତୋର ବୁଦ୍ଧି
ମଲାପାଏଁ ନ କରିଲୁ ଚିତ୍ତ ତୋର ଶୁଦ୍ଧି ।
ଜନମି ଖାଲି ହାତରେ ଗଲେ ଖାଲି ପାଣି (ହାତ)
କାହିଁକି କୁକର୍ମେ ରତ ସବୁ ଜାଣି ଜାଣି ।

ଜନମ ତ କେତେ ଥର ମୃତ୍ୟୁ କେତେ ଥର
ସେ ହିସାବ ଦେବେ ସିନା ପ୍ରଭୁ ଚକ୍ରଧର ।
ଶଗଡ଼ର ଚକ ପରି ଜନମ ମରଣ
ଘୂରୁଅଛି ଅବିରତ ଜାଣ୍ଣ କି କାରଣ ।

ସଂଚିବୁ ଜୀବନେ ଯେତେ ସହି ନାନା କ୍ଲେଶ
ଲାଗିବ କି କେତେବେଳେ ତୋର ହିତେ ଲେଶ ।
ଦିନେ ହେଲେ ନ ଭବିଲୁ ସଂସାରର ରୀତି
କେବଳ ଧନ ବଢାଇ ଲଭୁଅଛୁ ପ୍ରୀତି ।

କାହାଲାଗି ଜମା କଲୁ ନଚିନ୍ତିଲୁ ଥରେ
ଠକିଛୁ ଭଇକୁ ସିନା ଘାର୍ଣ୍ଣି ହେବୁ ପରେ ।
ଧନ ଦେଖି ହସୁ ଏବେ କାନ୍ଦବୁ ଅବଶ୍ୟ
ନ ଶିଖିଲୁ ପଦେ କିଛି ଦୁନିଆଁ ରହସ୍ୟ ।

ସଂସାରର ଗତି ଦେଖି ନ ଶିଖିଲେ ଜନ
କି ହେବ ପର ଜନ୍ମରେ କର ତ ଚିନ୍ତନ ।
ଦେଖୁଅଛୁ ନିତି ବାଟେ ଉଠାଣି ଗଡ଼ାଣି
ଏହି ଚିହ୍ନ ରଖିଛନ୍ତି ପ୍ରଭୁ ଚକ୍ରପାଣି ।

ଦେଖିଥିବୁ କେତେଥର ଭେଉ ସମୁଦ୍ରର
ଉଠିବା ପଡ଼ିବା ଲାଗିଅଛି ନିରନ୍ତର ।
ଅନ୍ୟାୟକୁ ଧରି
ଉର୍ଦ୍ଧକୁ କେଉଁ କେତ୍ରେ ସୁଖେ ଉଡ଼ୁ ଯିବୁ ତରି ।
ଜାଣୁଛନ୍ତି ଅନ୍ତର୍ଯାମୀ ରହି ତୋ ଚିତ୍ତରେ
ତା'ର ଦଣ୍ଡ ରହିଥିବ ଗଲେ ଅବାଟରେ ।

୦ ୦ ୦

## ଏଣ୍ଡି ପୋକର ଜନ୍ମ ମରଣ

ମାଟ୍ରିକ୍ ପରୀକ୍ଷା ଦେଇ ଆସିଲି ଘରକୁ
ଆଣିଥିଲି ସଙ୍ଗେ କେତେ ଏଣ୍ଡିର ଡ଼ିମ୍ବକୁ ।
ଅତେଇଶି ସାଲ୍ କଥା ପଡୁଅଛି ମନେ
ଗୋଟିଏ ଡାଟରେ ସବୁ ରଖିଲି ଯତନେ ।
ପିଚ୍ଚ୍ ଭ ନ ନେଲା ପରି ରଖିଲି ସାଇତି
କଅଁଳ ଜଡ଼ା ପତର ଖୋଜୁଥିଲି ନିତି ।
ଜାଣିଥିଲି ଫାଟିବ ତା କୋଉଏ ଦିନରେ
ଡ଼ିମ୍ବତକ ଘୋଡ଼ାଇଲି ଜଡ଼ାର ପତରେ ।
ଜଡ଼ା ଅବା କୋବି ପତ୍ର ତାର ଖାଦ୍ୟ ନିତି
ଦେଖିବାକୁ ଏ ବୃତାନ୍ତ ବଢ଼ିଲା ମୋ ପ୍ରୀତି ।
କୋଡ଼ଏ ଦିନରେ ଫାଟି ଖାଇଲେ ପତର
ପିପୀଲିକ[1] ଠାରୁ ସାନ ଦେଖିଲି ଆକାର ।
ତଗ ତଗ ଚଳୁଥିଲେ କୋଡ଼ଏ ଗୋଡ଼ରେ
ଦୁଇ ଇଞ୍ଚ ଲମ୍ବ ହେଲା ବିଂଶତି ଦିନରେ ।
ଏହି ଦିନ କିଛି ଖାଦ୍ୟ ନଖାଇ ସେମାନେ
ଡାଟ ଉପରକୁ ଆସି ବୁଲିଲେ ସନ୍ଧାନେ ।
ଜାଣିଥିଲି ଆଗୁଁ ଲୋଡ଼ା ହେବ ଆମ୍ବଡାଳ
ତରବରେ ଉଠି ଦେଖେ ହେଲାଣି ସକାଳ ।
ଟୋକେଇରେ ଉକ୍ତ ଡାଳ ପୂର୍ବୁଁ ରଖିଥିଲି
ଗୋଟିଏ ଗୋଟିଏ ନେଇ ତହିଁରେ ଛାଡ଼ିଲି ।

ରହିଥିଲା କେତେ ଲାଳ ତାର ଶରୀରରେ
ଖୋଷା କରି ଲୋଷ୍ଟ ହୋଇ ରହିଲେ ଭିତରେ ।
କୋଡ଼ଏ ଦିନ ହେବାରୁ ହୋଇ ପ୍ରଜାପତି
ବାହାରିଲେ ଖୋଷା କାଟି ତହିଁରୁ ସଂପ୍ରତି[2] ।
ଅଣ୍ଡିରେ ମାଈର ଯୋଡ଼ ସଙ୍ଗେ ସଙ୍ଗେ ହୋଇ
ଦି ଦିନେ ଦୁହିଁଙ୍କ ପ୍ରାଣ ଗଲା ଡ଼ିମ୍ବ ଦେଇ ।
ଶହେରୁ ଅଧିକ ହେବ ଡ଼ିମ୍ବ ପରିମାଣ
କହେ ଲୋକନାଥ ଜାଣ ଏହାର ପ୍ରମାଣ ।
ଦୟାମୟ ହରିଙ୍କର ଲୀଳା ଚମତ୍କାର
ବୁଝିବାକୁ ସମର୍ଥ କି ଏ ମଣିଷ ଛାର ।
କ୍ଷମତା ଲାଳସା ପୁଣି ଆଶା ଧନ ପାଇଁ
ଜୀବନଟି ଯାଉଅଛି ଅନୀତିରେ ଧାଇଁ ।
ଠକାମି ଭଣ୍ଡାମି ମିଛ ଏବର ଜୀବିକା
ତା ପଛେ ରହିଛି ଛପି ହୃଦେ ଅହମିକା ।
କୁକର୍ମ ଗର୍ବ ହେତୁରୁ ଦଶାନନ ବଂଶ
ପଢ଼ିଛ ପୁରାଣେ ପରା ପାଇଥିଲା ଧ୍ୱଂସ ।
ସଦ୍ଦାମ ହୁସେନ ଗର୍ବ ଘଟଣା କାଲିର
ଧନଜନ ସରିଗଲା ଫଳ ଅନୀତିର ।
ଯେଉଁ ମଂଜି ଲଗାଉଛ ଫଳୁଛି ସେ ଫଳ
ପାଇବ ପର ଜନ୍ମରେ କୁକର୍ମର ଫଳ ।
ନ୍ୟାୟ ଅନ୍ୟାୟ ବିଚାର ନକଲେ ଜୀବନେ
ପାଇବ କି ଲୋକ ସୁଖ କେବେ ଏ ଭୁବନେ ।



(ରାଗ-ରାମକେରୀ)

ସ୍ୱାର୍ଥର ଜୀବିକା ଚଳିଛି ଏବେ ଚଉଦିଗରେ
ନ୍ୟାୟନୁସରଣ ନିମନ୍ତ୍ରଣ ନାହିଁ କାହା ଚିତ୍ତରେ ।୧।
କ୍ଷମତା ମୋହରେ କେ ଅନ୍ଧ କେହି ଅର୍ଥରେ ବଶ
ପରମେଶ ଚିନ୍ତା କରିବା ନାହିଁ କାହା ମାନସ ।୨।

[1] ପିମ୍ପୁଡ଼ି, [2] ବର୍ତ୍ତମାନ ।

କୃତଘ୍ନତା ବ୍ୟାପି ଗଲଣି
କ୍ରମେ କ୍ରମେ ଦେଶରେ
ଉପାୟ ବିହୀନ ହୋଇ
କେ ସଢୁଅଛି ସେକରେ ।୩।
ଗରିବର ଦୁଃଖ ଯିବନି
ମୂଲ ଦେଲେ ବଢାଇ
ଜିନିଷ ଦର ଯା ବଢୁଛି
ଏଥିଲାଗି କେ ଦାୟୀ ।୪।
ପୂର୍ବର ଏକତା ଅଛିକି
ଏବେ ଗାଆଁ ଭିତରେ
ହଣାହଣି କ୍ରମେ ବଢୁଛି
ପରସ୍ପର ମଧ୍ୟରେ ।୫।
ପିତାମାତାଠାରେ ଭକତି
ନାହିଁ ସମାଜେ ଆଜି
ନ୍ୟାୟ କରିବାକୁ ଡାକିଲେ
କେହି ନୁହଁନ୍ତ ରାଜି ।୬।
ମାଆର କଷଣ ପିଲାଏ
ଜାଣୁଛନ୍ତ କି ଲବେ
ବୁଝାଇବ ଯାହା ଧରିଯା
କରୁଛନ୍ତ ସରବେ ।୭।
ମଣିଷ ଜନମ ପାଇଲୁ
ଏବେ ଯାହା ଯୋଗରୁ
ଅବିରମ ଧ୍ୟାନ କରିବା
ନ ପାସୋରି ମନରୁ ।୮।
କେତେ ଅନ୍ଧ ଛୋଟା ବୁଲନ୍ତ
ଦାଣ୍ଡେ ଦେଖୁଛୁ ନିତି
ତା ଦର୍ଶନେ କାହା ମାନସେ
ଉପୁଜଇ କି ଭୀତି ।୯।
ଜନମ ମରଣ ରହସ୍ୟ
ଦେଖି ଦେଖି ସରବେ
ଧରମ ବାଟରେ ଚାଲିବା
ବୋଲି ଏବେ କେ ଲବେ ।୧୦।

ନ୍ୟାୟ ଅନ୍ୟାୟକୁ ତୁଳନା
ନ କରିଲେ ଜୀବନେ
କି ସୁଖ ମିଳିବ କାହିଁରୁ
ଥରେ ଏବନ୍ତୁ ଜନେ ।୧୧।
ଅସାର କଳ୍ପନା ମାନସ
ଧାଉଁଅଛି ଯେପରି
ଅନ୍ୟ ବିଷୟକୁ ମଣିଷ
ନ ଦେଖୁଛି କିପରି ।୧୨।
ହିଂସା ଜର୍ଜରିତ କେ ହୋଇ
କରୁଅଛି କରମ
ପ୍ରିୟାପ୍ରୀତି କିଏ ଦେଖାଇ
ଛାଡୁଅଛି ଧରମ ।୧୩।
କ୍ଷମତା ନିମିତ୍ତ କିଏ ବା
ଖୋଜି ନାନା ଉପାୟ
କରି ଯାଉଅଛି ନ ଭାବି
ଠିକେ ନ୍ୟାୟ ଅନ୍ୟାୟ ।୧୪।
ଲୋକ ଉପକାରେ ଭୂଗର୍ଭେ
ଲୁହା କୋଇଲା ଚୂନା
ଯୁଗ ଯୁଗ ଧରି ଥିବରେ
କେବେ ନ ହୋଇ ଚୂନା ।୧୫।
ଚଉପାଶେ ଘେରି ଅଛନ୍ତ
ଘଟୁଣାର ନିକର
ଆପଣା ସୁବିଧା ପାଆନ୍ତ
ହୁଅନ୍ତୁ ବା ତତ୍ପର ।୧୬।
ଜଗଦୀଶ ଦଣ୍ଡ ନଥିଲେ
ସଢ ସଢ ରୋଗରେ
ଯାଆନ୍ତାକି ପ୍ରାଣ ଲୋକର
ନିତି ଦେଖୁ ଭବରେ ।୧୭।
କୋଟି କୋଟି ଜୀବ ସୃଜନ
ପୁଣି ବୃକ୍ଷ ଲତାର
କରି ପାରିବକି ମଣିଷ
କରୁ ବାରେ ବିଚାର ।୧୮।

ତା ମଧ୍ୟେ ଜନମ ପାଇଛି
ଲୋକ ଏହି ସଂସାରେ
କଥା ବା ବିଷର ଶକତି
ନାହିଁ ଅନ୍ୟ କା'ଠାରେ ।୧୯।

ସେ ଶକ୍ତି ଦୁଇଟି ମଣିଷ
ପାଇ ଥିବାରୁ ଉବେ
ଆପଣାକୁ ବଡ ବୋଲଇ
ମାଟି ଉଠେ ଗରବେ ।୨୦।

ପଢ଼ଣା ଘରର କୋଢ଼ଣା
ନପଡେ ଯା କାନରେ
ପଶୁତୁଲ୍ୟ ସେହି ନୁହଁକି
ସଦା ରସାତଳରେ ।୨୧।

ଜୀବ ମଧ୍ୟେ ଶକ୍ତି ପାଇଛି
ସବୁ ଜାଣିବା ପାଇଁ
ଖଂଜିଲେ ବିଷର ଶକତି
ପୁଣି ଲୋକଙ୍କୁ ସାଇଁ ।୨୨।

ସେ ଶକ୍ତିକି ଛାଡ଼ ସ୍ୱାର୍ଥରେ
ଲୋକ ଖେଳୁଛି ଖେଳ
ବିଷର ଅବଶ୍ୟ ହେବରେ
ତାର ଆସିଲେ ବେଳ ।୨୩।

କେତେଦିନ ଖେଳ ଖେଳିବା
ରହି ଏହି ମର୍ତ୍ତ୍ୟରେ
କିଏସେ ଏକଥା ଧବେକି
କେବେ ଶୁଦ୍ଧ ଚିତ୍ତରେ ।୨୪।

ଅନୀତିରେ ମନ ରହିଲେ
ଦଣ୍ଡ ମିଳେ ଅବଶ୍ୟ
ହେତୁ ରଖିଥାନ୍ତୁ ସରବେ
ଏହା ଉବ ରହସ୍ୟ ।୨୫।

କିରସିନି, ପାଣି, ପେଟ୍ରୋଲ
ଅସରନ୍ତ ଭଣ୍ଡାରେ
ବାର ବାର କରି ହେଜିବୁ
ଏହା କା ଉପକାରେ ।୨୬।

ଲାଗିଅଛି ଯିବା ଆସିବା
ସର୍ବେ ଦେଖନ୍ତ ନିତି
ବୁଝିଲେ ସେ କଥା କିଏସେ
ରହନ୍ତା କି ଅନୀତି ।୨୭।

ଆସିଅଛୁ ଖାଲି ହାତରେ
ଫେରୁ ଖାଲି ହାତରେ
ଏ ରହସ୍ୟ କିଏ ଚିନ୍ତେକି
କେବେ ଜୀବନେ ଥରେ ।୨୮।

ଆସିବା ସମୟ ଆନନ୍ଦ
ଗଲାବେଳେ କ୍ରନ୍ଦନ
ଲାଗିଅଛି ଧାଡ଼ ଏପରି
କରୁ ନିତି ଦର୍ଶନ ।୨୯।

ସୃଷ୍ଟିର ରହସ୍ୟ ବିଷରି
ଲୋକ କରୁ କରମ
ବୃଥା ସ୍ୱାର୍ଥ ପଛେ ଧାଇଁଲେ
ଛାଡ଼ଯିବ ଧରମ ।୩୦।

ଏ ଭବନା କାହା ମନରେ
ପଶୁନାହିଁ କିଂଚିତ
ଅବାସ୍ତବ ଚିନ୍ତା ପ୍ରବେଶି
ଘାଣ୍ଟେ ମଣିଷ ଚିତ୍ତ ।୩୧।

କିଏ ସୁଖୀ କହୁ ମଣିଷ
ଏହି ମର୍ତ୍ତ୍ୟ ସଂସାରେ
ଅବା ଅଛି କାର ମାନସ
ଭଗବତ ଚିନ୍ତାରେ ।୩୨।

ପୁଅଟିଏ ନାହିଁ ଯାହାର
ଘାଣ୍ଟି ହୁଏ ତା ମନ
ଉପାୟ ବିହୀନ ହୋଇ କେ
ଦିନ କରେ ଯାପନ ।୩୩।

ଗାଣ୍ଡେ ପିଲା ଥାଇ ଏପଟେ
ନାହିଁ ବଳ ତାହାର
ଭରଣ ପୋଷଣ ଚିନ୍ତାରେ
କରେ କେତେ ବିଷର ।୩୪।

ମାଇପ ବୋଲରେ କିଏବା
ବାପା ଠାରୁ ଅଲଗା
ହେଉଛି ଦେଖନ୍ତୁ ସମସ୍ତେ
ହୋଇଥିବାରୁ ଅଗା (ବୋକା) ।୩୫।
ରେଟରେ ଚଢୁଛି କିଏସେ
ଏଣେ ଅର୍ଥାଭବରୁ
ହେଉନାହିଁ କିରେ ବଂଚିତ
ଉପଯୁକ୍ତ ସେବାରୁ ।୩୬।
ସ୍ୱାର୍ଥେ କବଳିତ ମଣିଷ
ହଟହଟା ଜନ୍ତତ
ତା'ଠାରୁ ବଳିଛି କ୍ଷମତା
ଦେଖୁଅଛି ଜଗତ ।୩୭।
ଧନ ଧନ ବୋଲି ପଲକ
ପଡୁନାହିଁ କାହାର
ମିଳିଲେ କ୍ଷମତା କାହାକୁ
ଆଖି ଉପରେ ତାର ।୩୮।
ପ୍ରବୃତ୍ତି ନିବୃତ୍ତି ମନରେ
ରହି ସାରା ଜୀବନ
ଘାଣ୍ଟୁଅଛି ଲୋକମାନଙ୍କୁ
ଦେଖୁଅଛି ନୟନ ।୩୯।
ବିଷର୍ ଶକତି ଯାଇଛି
ଅଛି ସ୍ୱାର୍ଥ କେବଳ
ପରସ୍ପର ମଧ୍ୟେ ନିରତ
ଲାଗିଅଛି କନ୍ଦଳ ।୪୦।
ଉଠାଣି ଗଡାଣି ବାଟରେ
ପୁଣି ସିଂଧୁମି ନିତି
ଶିଖିଲାକି କିଛି ତହିଁରୁ
ଜାଣି ଦୁନିଆଁ ରୀତି ।୪୧।
ଥାଆନ୍ତା ଯଦିବା ଭବନା
କେହି ଉପାସେ ଖେଳେ
ସଦନ୍ତାକି କିଏ ଦେଶରେ
ଆଜି ନପାଇ ଭୋକେ ।୪୨।

ପୁଣି ବିପତ୍ନୀକ କେତେକ
କିଏ ପତି ହରଇ
ହୀନିମାନ ହୋଇ ଜୀବନ
କେବେ ଯାଏ ପଳାଇ ।୪୩।
ମୁଣ୍ଡ ଗୁଂଜିବାକୁ କାହାର
ନାହିଁ କୁଡ଼ଆ ଖଣ୍ଡେ
ଆସିଲେ ବରଷା କିଏବା
ଚଳି ପାରେକି ଦଣ୍ଡେ ।୪୪।
ଅଭିଆଡ଼ ଝିଅ ଦେଖନ୍ତୁ
ଚାଆଁ ଗାଆଁକୁ ଯାଉ
ବିଧାୟକ ଭତ୍ତା ନ୍ୟାୟକି
କହୁ ଖେଟର ଭଉ ।୪୫।
ଶତ ଶତ ଟଙ୍କା ମାସକୁ
ଆମ ମନ୍ତ୍ରୀ ବେତନ
ତେବେ ଗସ୍ତ ଖର୍ଚ୍ଚେ କାହିଁକି
ଲାଗି ରହିଛି ମନ ।୪୬।
ଗରିବ ଟିକସ ଦେଉଛି
ବୋଲି ଭବିଲେ ଥରେ
ଖରଚ୍ଚ ନଦେଇ ଫେରସ୍ତ
ହୋଇ ଫେରିବା ଘରେ ।୪୭।
ଆପଣା ଲାଭକୁ ଧାଉଁଛି
କଳିଯୁଗେ ମଣିଷ
ନଶିଖି ପ୍ରଭେଦ କେଉଁଟି
ଭବେ ଅମୃତ ବିଷ ।୪୮।
ଅହମିକା ହୃଦେ ପ୍ରବେଶି
ଘାଣ୍ଟେ ଅନବରତ
ବିଷର ଶକତି ଥିଲେ ହେଁ
ଡହୁନାହିଁ ମହତ ।୪୯।
କରୁଥାନ୍ତା ଯଦି କରମ
ଭଲ ମନ୍ଦ ବିଷରି
ଦୁଃଖୀ ବା କଷଣ ସଂସାରେ
ନ ରହନ୍ତା କାହାରି ।୫୦।

ଗାନ୍ଧିଜୀଙ୍କ କଥା ପଢ଼ଲେ
କିଏ ଟେକୁଛି ନାକ
ମାତ୍ର ତାଙ୍କ ଲେଖା ଅମୃତ
ପଢ଼ ଜୀବନ ଯାକ ।୪୧।

କରିଥାନ୍ତା ଯଦି ଭରତ
ତାଙ୍କ କଥା ପ୍ରକାରେ
ଶୁଣୁଥାନ୍ତା କେତେ ପ୍ରଶଂସା
ଆଜି ଦେଶ ବାହାରେ ।୪୨।

ଦୀନପରି କଷାଘାତରେ
ସନ୍ତୁ ନଥାନ୍ତା କିଏ
ନିଶ୍ଚିନ୍ତରେ ସୁଖେ ଦେଶରେ
ଚଳୁଥାନ୍ତେ ସଭିଏଁ ।୪୩।

ଖାଇ ଖାଇ ମାଡ ଭୋଗିଲେ
ବହୁବର୍ଷ ଜେଲରେ
ହେତୁ ପକାଇଲେ ସେ କଥା
ଆଜି ଲୋତକ ଝରେ ।୪୪।

ଅହିଂସା ସତ୍ୟ ଏ ଦୁଇଟି
ମନ୍ତ୍ର ପକାଇ ଗଣ୍ଠି
ଲଗି ଲଗି ଗୋରା ଜାତିର
ଗାନ୍ଧୀ ଧଇଲେ ତଣ୍ଟି ।୪୫।

ଅପସରି ଗଲେ ଦେଶରୁ
ମାନି ଅହିଂସା ମନ୍ତ୍ର
କାହିଁକିରେ ଏବେ ଲଗିଛି
ଅନବରତ ତନ୍ତ୍ର ।୪୬।

ପୃଥିବୀର ଶ୍ରେଷ୍ଠ ମାନବ
ଲୋକ ମତାନୁଯାୟୀ
ନକରି ଶାସନ ଅଚଳ
କରୁଅଛ କିପାଇଁ ।୪୭।

ଯାହା ହେତୁ ଦେଶ ଆସିଲା
ତାଙ୍କ କଥା ନମାନି
ଇଚ୍ଛାମତେ କରି ଶାସନ
କେତେ କରୁଛ ହାନି ।୪୮।

ସୃଷ୍ଟି କର୍ତ୍ତାଙ୍କର ବିଚାର
କିଏ ଜାଣୁଛି ଲବେ
ଘଟୁଛି ସଂସାରେ ଯାହାକି
ମାତ୍ର ଆସୁଛି ଭବେ ।୪୯।

ଅତୀତ ଘଟଣାବଳୀରୁ
ନ ଶିଖିଲେ ମଣିଷ
ପ୍ରବେଶିଲେ କର୍ମକ୍ଷେତ୍ରରେ
ହଟହଟା ଅନିଶ ।୬୦।

ଜାଲରେ ପଡ଼ଲେ ବିସାରି
ଛଟ ପଟ ଯେସନ (ମାଛ)
ସ୍ୱାର୍ଥ ଜାଲେ କେହି ପଡ଼ଲେ
ସଦା ହୁଏ ତେସନ ।୬୧।

ଅସାଧୁ ଉଟାଯ୍ୱେ ଅରଜି
କିଏ କଲଣି କୋଠା
କିଏ ଯାପୁଅଛି ଦିନଟି
ଉପବାସରେ ଠୋଠା ।୬୨।

ଗରିବ ବାପୁଡ଼ା ସହୁଛି
ଯେତେ କଷଣ ଭବେ
ତା ଦୁଃଖ ହରଣ ନିମିତ୍ତ
ଚିନ୍ତା କରେ କେ ଲବେ ।୬୩।

ଅଭିଆଢ଼ କନ୍ୟା ଯେତେକ
ରହିଲେଣି ଗାଁଆରେ
ସେଥିପ୍ରତି ଦୃଷ୍ଟି କାହାର
କେବେ ପଡ଼େକି ବାରେ ।୬୪।

କେ ଶୀତ କାଳରେ ସହୁଛି
କିଏ ଖର ବରଷା
କାନିରେ ଯେ ଲୁହ ପୋଛଇ
ଯାର ନାହିଁ ଭରସା ।୬୫।

ବିଜୁଳି ପଙ୍ଖାକୁ ପାଇଲେ
ମନ ଉପରେ ତା'ର
କ୍ଷମତା ଆଶାରେ ଲୋକର
ନାହିଁ ଆନ ବିଚାର ।୬୬।

ଦୟାବାନ ନ୍ୟାୟ ସଦ୍‌ଗୁଣ
ହୟ ପାଇଛି ଲୋପ
ଏ ଯୁଗ ଅନୀତି ଦର୍ଶନେ
ତହୁଁ ଉପୁଜେ କୋପ ।୬୭।

ଭୂଇଁତଳେ ଯେତେ ସମ୍ପଦ
ରହିଅଛି ଗୋପନେ
ଯୁଗ ଯୁଗ ବିତି ଗଲଣି
ଜାଣି ନାହାନ୍ତ ଜନେ ।୬୮।

ଅନୁଗ୍ରହ ବିନା ବିଧିର
ନାହିଁ ଲୋକର ଗତି
ସଂପଦେ ପାସୋରି ବିପଦେ
ଡାକେ କର ମୁକତି ।୬୯।

ଗାନ୍ଧିଜୀ ବଚନ ନମାନି
ଦେଶବାସୀ କୃତଘ୍ନ
ଅନୀତି ଏଡ଼ିବା ନିମିତ୍ତ
ନାହିଁ କାହାର ଯତ୍ନ ।୭୦।

କୋଟି କୋଟି ଋଣ ଦେଶକୁ
ଦିନେ ଦେବ ବୁଡ଼ାଇ
ଲୋଢ଼ ଗୁଡ଼ ଗଲେ କହୁଣି
ଶେଷେ କି ହେବ ଭାଇ ।୭୧।

ସ୍ୱାଧୀନତା ଲୋପ ପାଇବା
ହେବା ପରାନୁଗତ
ନିନ୍ଦା ସାଗରରେ ବୁଡ଼ିବା
ଯିବ ଆମ ମହତ ।୭୨।

ଜୈଲ ଭୋଗି ଭୋଗି ଜୀବନ
ସାର ଯାଇଛି ଯାର
ତାଙ୍କ ଉପଦେଶ ନମାନି
ଦେଶ କି ଛାରଖାର ।୭୩।

ବଡ ବୋଲି ନିଜେ ନଭାବି
ସତ୍ୟ ଅହିଂସା ବଳେ
ଆଣିଲେ ଦେଶକୁ ଛଡ଼ାଇ
ଗୋରା ହାତୁ କୌଶଳେ ।୭୪।

ଗାଁଆ ଗାଁଆ ବୁଲି ଅରଟ
ଧରି ନିଜ ହାତରେ
ସୂତା କାଟିବାର ଶିଖାଇ
ଥିଲେ ଏହି ଦେଶରେ ।୭୫।

ନିଜ ହାତକଟା ଖଦଡ
ଅଣ୍ଟା ପିଠିରେ ଦେଇ
ଯାଉଥିଲେ ଚାଲି ପାଦରେ
କେବେ ଗାଡ଼ି ନ ନେଇ ।୭୬।

ନଥିଲା ସଡକ ଗାଁଆକୁ
ଯାଉଥିଲେ ହିତରେ
ଏବେ ଯିବାପାଇଁ କାହିଁକି
ମନ ସଦା କାର୍‌ରେ ।୭୭।

(ରାଗ–ବଙ୍ଗଳାଶ୍ରୀ)

କିଏ ସେ ଜାଣୁଛି କେଉଁ ମୁହୂର୍ତ୍ତରେ
ଯିବଏ ପରାଣ ଛାଡ଼
ପଶିଲେ ଅବାଟେ ଗଡାଇବ ଲୁହ
ବାର୍ଦ୍ଧକ୍ୟ ଆସିଲେ ମାଡ଼ ।

ଭାବି ଭାବି ସବୁ କରୁଥିଲେ କର୍ମ
ବିବେକ ନିର୍ଦ୍ଦେଶ ମାନି,
ମଣିଷ ଜୀବନ ସାର୍ଥକ ହେବରେ
ଦେଶର ନକଲେ ହାନି ।୨।

କ୍ଷଣିକ ସୁଖରେ ସ୍ୱାର୍ଥ ପଛେ ଧାଇଁ
କେ ପାଉଛି ସୁଖ ଭବେ,
ଉତ୍‌ଥାନ ପତନ ସୃଷ୍ଟିର ରହସ୍ୟ
ଭାବୁଛି କିଏ କି ଲବେ ।୩।

ଯେତିକି ପାହୁଣ୍ଡ ଯାଉଛି ଆଗକୁ
ସେତିକି ମରଣ ଦ୍ୱାର,
ପାଖେଇ ଆସୁଛି ବୋଲି ନ ଭାବିଲେ
ସେ କି ମଣିଷର ଗାର ।୪।

ଅଗଣିତ ଜୀବ ଜଳେ ଅବା ସ୍ଥଳେ
ଦେଖନ୍ତ ନିତି ସରବେ,
ମଣିଷକୁ ଛାଡ଼ କଥା ବା ବିଚାର
ଶକ୍ତି ପାଇଛି କି ଲବେ ? ।୫।

ଏ ଦୁର୍ଲଭ ଶକ୍ତି ପୂର୍ବ ସୁକୃତରୁ
ଦେଇଛନ୍ତି ଭଗବାନ,
ଏଣୁରେ ମଣିଷ କର୍ତ୍ତବ୍ୟ କର୍ମରେ
ହେବୁ ସଦା ସାବଧାନ ।୬।

ବିବେକ ପ୍ରହରୀ ଜଗିଅଛି ତୋତେ
ଅବିରମ ତୋ ଅନ୍ତରେ,
ଏତିକି ନ ଶିଖି ହେଉଅଛୁ ଘାଣ୍ଟି
ଗୋଡାଇ ସ୍ୱାର୍ଥ ପଛରେ ।୭।

ତୁଚ୍ଛ ଧନ ଲାଗି ହେଉ ବିଚଳିତ
ନେବୁକି କିଛି ସଙ୍ଗରେ,
ନିଃସ୍ୱାର୍ଥ ସେବାରେ ମନ ବଳାଇଲେ
ପରମ ଗତି ଶେଷରେ ।୮।

ନିତି ଦେଖୁ ଦାଣ୍ଡେ କେତେ କୁଷ୍ଠ ରୋଗୀ
ଅବିରମ କ୍ଳେଶ ପାଇଁ
ପୂର୍ବ ପାପ କର୍ମ ଦେଖାଇ ଦିଅନ୍ତି
କୋଟି ବ୍ରହ୍ମାଣ୍ଡର ସ୍ୱାଇଁ ।୯।

ଆଲୁଅ ଅନ୍ଧାର ଦିବସ ରଜନୀ
ପୁଣି ବର୍ଷା ଶୀତ ଖର,
ସଞ୍ଜ ବା ସକାଳ ଯାଉଛି ଆସୁଛି
ଦେଖୁଅଛୁ ନିତି ପର ।୧୦।

ଅସଂଖ୍ୟ ଜୀବର ସୃଷ୍ଟିକର୍ତ୍ତା ଯିଏ
ରଖିଲୁକି ଦିନେ ଲୟ,
ସ୍ୱାର୍ଥ ପଛେ ଧାଇଁ ମିଛ ଗାଇ ଗାଇ
କା'ଠାରେ ନରଖି ଭୟ ।୧୧।

ଶଗଡର ଚକ ଘୂରିଲା ପରାଏ
ଘୂରୁଛି ଜନ୍ମ ମରଣ,
ନ ଫେରାଇ ଆଖି ସୃଷ୍ଟିର ରୀତିକି
ଦେଖୁଛି ଲୋକ କଷଣ ।୧୨।

କ୍ଷମତା ମୋହରେ ମିଛ କହିବାକୁ
ନ ଡରୁଛି କିଏ ଲବେ,
ପାପ ଅବା ପୁଣ୍ୟ ନବାଛି ଜୀବନେ
ଉଠନ୍ତି ମାତି ଗରବେ ।୧୩।

ଅଦୃଶ୍ୟ ଶକତି ନ୍ୟାୟ ନିକିତିକି
ଧରିଅଛି ନିରନ୍ତର
ନଜାଣି ମଣିଷ ହେଉଛି ବାଉଳି
ରଖି କପଟ ଅନ୍ତର ।୧୪।

ନୋହୁଥିଲେ ଝିପା କଷିବା କରମ
ବୁଲନ୍ତେ କି ପଙ୍ଗୁ ଭବେ,
ଅବା ନାନା ରୋଗେ ନ ସଢନ୍ତା କିଏ
ନିଶ୍ଚିନ୍ତ ଥାନ୍ତେ ସରବେ ।୧୫।

ପୁଅ ବା ଭରିଯା ମରଣ ଦୁଃଖରେ
ନ ସହେ କେଉଁ ମଣିଷ,
ଏଣୁରେ ସନ୍ତତ ସନ୍ମାର୍ଗକୁ ଖୋଜି
ଧ୍ୟାୟିବୁ ଈଶ ଅନିଷ ।୧୬।

କୃତଘ୍ନତା ଭରୁଁ ଯାଉଛି ଉଭେଇ
ସ୍ୱାର୍ଥଟି ଆଜି ଜୀବିକା,
ତମ ଘଷା ତୁଣ୍ଡୁ ବାହାରେ ସର୍ବଦ୍ର
ଛପି ହୃଦେ ଅଧମିକା ।୧୭।

ଦେଖୁଅଛୁ ସଦା ଅଳେଡା ବରଷା
କରୁଅଛି କ୍ଷତି ଖଦ,
ଲୋଡାହେବା ବେଳେ ପାଣି ମଟେ ନାହିଁ
ତେଣୁ ବାଢ ଉଲମଦ ।୧୮।

ପଶୁ ଆଚରଣ ନକରୁ ମଣିଷ
ନପଶୁ କେବେ ଅବାଟେ,
ନ୍ୟାୟ ଅନ୍ୟାୟକୁ ନ ଡରିଲେ ସଦା
ବସିବ ପିଠିରେ ଛାଟେ ।୧୯।

ମରଣ ଡୋରିଟି ଗଳାରେ ପିନ୍ଧାଇ
କରୁଅଛି ଯେ ସୃଜନ,
ସେ ସୃଷ୍ଟିକର୍ତ୍ତାଙ୍କୁ ପାସୋରି ମନରୁ
ନକରି ବୃଥା ଚିନ୍ତନ ।୨୦।

ଦେଇଛନ୍ତି ପାଦ ଚଳିବା ନିମନ୍ତେ
କାର୍ଯ୍ୟ କରିବାକୁ କର,
କଥା କହିବାକୁ ଦେଇଛନ୍ତି ଜିଭ
ଅବଜ୍ଞା ତାଙ୍କୁ ନକର ।୨୧।

ଦେଖୁଛୁ ଦୁନିଆଁ ରୀତିରେ ମଣିଷ
ଦେଖୁଛୁ ଦୁନିଆଁ ରୀତି,
ତଥାପି ଚେତନା ନପଶେ ମନରେ
ରଖିଲୁ ସ୍ୱାର୍ଥରେ ପ୍ରୀତି ।୨୨।

ଆଜୀବନ କିଏ ପାଉଅଛି ସୁଖ
ଅନିଶ୍ଚିତ ଜୀବନରେ,
କହାଇ ପରକୁ ହିଂସା ପୋଡି ହୃଦେ
ବୁଡୁଛୁ ନିନ୍ଦା ସାଗରେ ।୨୩।

ଚିତ୍ତେ ହଳାହଳ ମୁହଁରେ ସରଳ
ଦେଖାଇ ହେଲେହେଁ ଭବେ,
ନ ଜାଣିଲେ କେହି ଜାଣୁଛନ୍ତି ଜଣେ
ଚିହ୍ନିଲା କି କିଏ ଲବେ ।୨୪।

ପଣି କୃତଘ୍ନତା ପୁଣି କପଟତା
ଘାଟୁଛି ମଣିଷ ମନ
କି ଯିବ ସଙ୍ଗରେ ଅନ୍ତିମ କାଳରେ
କଳ୍କି କିଏ ଭବନ ।୨୫।

ଅଟେଇ ଦିନକୁ ଯଉବନ ଶିରୀ
ପଳେ ପଳେ ତାର ଜଗ,
ଛାପି ଅବୟବ କରୁଛି ଶ୍ରୀହୀନ
ବାଧୁଛି ଶିଶିର ଖରା ।୨୬।

ଶ୍ରବଣ ଦର୍ଶନ . ବିଲୋପ ସାଧନେ
ମଣିଷ ହୁଏ ଅଚଳ,
ଛାଡ଼ନାହିଁ ଲୋଭ ରହିଅଛି ମର୍ଜି
ପ୍ରାଣହିନା ଟଳମଳ ।୨୭।

କି ଯିବ ସଙ୍ଗରେ କରୁଥିଲେ ଚିନ୍ତା
ଯାଇଥାନ୍ତା ଛାଡ଼ ଲୋଭ,
ସତ୍ତନ୍ତାକି କିଏ କ୍ଷମତା ଆଶାରେ
ନ ଆସନ୍ତା ମନେ କ୍ଷୋଭ ।୨୮।

ଗାଆଁ ଗାଆଁ କଳି ଆପଣା ଭିତରେ
ଟଣାଟଣି ଶାସନରେ,
କ୍ଷମତା ନିମିତ୍ତ ଲଗାଇ କନ୍ଦଳ
ଲୁଚିଲା ସ୍ୱାର୍ଥ ପଛରେ ।୨୯।

ଯେ ଦେଶେ ଜନମ ଗାନ୍ଧିଜୀ ଶଙ୍କର
ବିବେକାନନ୍ଦ ପ୍ରବର,
ସେ ଦେଶରେ ଆଜି ଅନୀତି ଅନ୍ୟାୟ
ବଢ଼ୁଅଛି ନିରନ୍ତର ।୩୦।

ନାନା କଥା କହି ଲୋକଙ୍କୁ ଭୁଲାଇ
ବସିଲେ ଶାସନେ ଦଳେ,
ଦିଅନ୍ତୁ ପାସୋରି କହୁଥାନ୍ତି ଯାହା
ପଡ଼ ସ୍ୱାର୍ଥର କବଳେ ।୩୧।

ଯେ ଦେଶେ ଜନମ ଶିବି ହରିଶ୍ଚନ୍ଦ୍ର
ଅକ୍ଷୟ କୀରତି ରଖି,
ଯାଇଛନ୍ତି ଚାଲି ଭବଧାମ ଛାଡ଼
ପୁରାଣ ତାହାର ସାକ୍ଷୀ ।୩୨।

କେତେ କାରଦଣ୍ଡ ଭୋଗି ଗାନ୍ଧୀ ବୁଢ଼ା
କେତେ ଲାଠି ମାଡ ଖାଇ,
ବିନା ରକ୍ତପାତେ ବିନା ଅସ୍ତ୍ର ହାତେ
ଗୋରାଙ୍କୁ ଦେଲେ ହଟାଇ ।୩୩।

ତାଙ୍କ ସତ୍ୟ ମନ୍ତ୍ର ଅହିଂସାର ମନ୍ତ୍ର
ଅବା ତାଙ୍କ ଉପଦେଶ,
ପାଳିଛିକି କିଏ କହୁତ ଜନତା
କାହିଁକି ରଣୀ ଏ ଦେଶ ।୩୪।

ନ୍ୟାୟ ଅନ୍ୟାୟକୁ ଆପେ ନ ବୁଝିଲେ
ରହିଛି ଭବିଷ୍ୟ ଦଣ୍ଡ,
ବିପ୍ଲବର ଶକତି ଚାହିଁଲେ ମଣିଷ
ବୋଲନ୍ତ ତାକୁ ପାଷଣ୍ଡ ।୩୫।

ହେଉଛି ବରଷା ଫଗୁଣ ମାସରୁ
କାର୍ତ୍ତିକ ହେଲାଣି ଶେଷ,
ଅକଳନ କ୍ଷତି ହେଲେହେଁ ଚଷାର
କରୁଛି କେ ଚିନ୍ତା ଲେଶ ।୩୬।

ଖରା ବରଷାରେ ଶୀତ କାକରରେ
କମଣି କରି ବିଲକୁ,
ପାଉଛି ଯାହାକି କୁଟୁମ୍ବ ବଞ୍ଚାଇ
ବଳକା ଦିଏ ଲୋକଙ୍କୁ ।୩୭।

ପାଏକି ପାଉଣା ଶ୍ରମ ଅନୁସାରେ
କହେକି କାହାକୁ ଦିନେ,
ଜୀବନେ କଷଣ ଯାହା ସେ ଭୋଗଇ
ତାପାଇଁ ଭବେ କେ ମନେ ।୩୮।

ନାନା ଖାଦ କଥା ଶିଖିଛି ପିଲାରୁ
ଶିଖାଇବ କିଏ ତାକୁ,
ଚୁକ୍ତାକୁ ବାଇଦ ବଢାନ୍ତ ହାକିମେ
ସାରି ଅଯଥା ଟଙ୍କାକୁ ।୩୯।

ବଣ ଜଙ୍ଗଲରେ ଯେଉଁ ଦେଶଭର
ସେ ହୋଇଛି ଆଜି ଋଣୀ,
ଊଣିଷି ହଜାର କୋଟି କଳନ୍ତର
ହିସାବ କଲେକି ଗୁଣୀ ।୪୦।

ତିନି ଲକ୍ଷ କୋଟି ଚତ୍ୱାରିଂଶ ସହସ୍ର
ହେଲଣି ଦେଶର ଋଣ,
ସେ କଥା କାହାର ପଶୁନାହିଁ ମୁଣ୍ଡେ
"ଝୁଣରେ ଚଷାକୁ ଝୁଣ" ।୪୧।

ଦିପଦ ଗାଉଛ ଫେରିଲେ ଘରକୁ
ଚଳିବ ନାହିଁ ଶାସନ,
ଫାଇଲ ଗୁଡ଼ାକ ରହିଥିବ ପଡ଼
କରୁ କେହି ଅନୁଧ୍ୟାନ ।୪୨।

ଗଲାବେଳେ ଗୋରା ଦେଶ ଋଣ ଥିଲା
ସାଢ଼େ ଦୁଇ ସହସ୍ର କୋଟି,
କଳନ୍ତର ଅର୍ଥ ନଦେଇ ପାରିଲେ
ଦେଖାଇବା କିରେ ତୋଟି ।୪୩।

ଜାପାନ ରୁଷିଆ ଇଟାଲୀ ଅଷ୍ଟ୍ରିଆ
ପଶି ଯୁଦ୍ଧେ ହେଲେ ଧ୍ୱଂସ,
ନିଜ ଦେଶ ଗଢ଼ି ଏ ଦେଶକୁ ଦେଲେ
ଋଣ ଦେଖାଇ ସାହସ ।୪୪।

ଯୁଦ୍ଧରେ ଭାରତ ପ୍ରବେଶ ନକରି
କରିଛି ବର୍ଦ୍ଧିତ ଋଣ,
ପୃଥିବୀ ସମ୍ମୁଖେ ହେଲା ଲୋକହସା
ଧିକ ଧିକ ଆମ ଗୁଣ ।୪୫।

ନୁହଁକି ଅଯୋଗ୍ୟ ଏ ଦେଶ ଶାସକେ
ପୁଣି ଅଲଜୁକ ଅତି,
ଲୋକଙ୍କ ଆଗରେ କି ବୋଲି କହିବେ
କିହେବ ତା ପରିଣତି ? ।୪୬।

ବିଷ୍ଣୁର ଶକତି ଦେଇଛନ୍ତି ଈଶ
ବିଷ୍ଣୁର କରୁଛି କିଏ ?
ଯେଉଁଆଡେ ମନ ଟାଣୁଅଛି ତେଣେ
ଯାଆନ୍ତି ଲୋକ ସଭିଏଁ ।୪୭।

ସେଥି ଲାଗି ଆଜି ପଥଭ୍ରଷ୍ଟ ହୋଇ
ମାନବ କୁକର୍ମେ ରତ,
ସ୍ୱାର୍ଥ ଚିନ୍ତା ଛଡା ଅନ୍ୟ ଚିନ୍ତା ନାହିଁ
ଦେଖୁଛୁ ପୁଣି ସତତ ।୪୮।

ଅହମିକା ଦୋଷ ପଛେ ପଛେ ରହି
ମନକୁ କରେ ବିବ୍ରତ,
ତେଣୁ-ନ୍ୟାୟାନ୍ୟାୟ ଅବିଷ୍ଣୁରେ କାର୍ଯ୍ୟ
ଚାଲିଛି ଅନବରତ ।୪୯।

ଯୁଧିଷ୍ଠିର ଭଳି ରାଜ୍ୟ ଲୋଭେ ପଡ
କପଟ ପଶାରେ ହାରି
ଘରଦ୍ୱାର ଛାଡ଼ କଲେ ବନବାସ
ମନକୁ କେତେ ଧିକାରି ।୫୦।

ବିଷ୍ଣୁର ଶକତି ଛାଡଲେ ମଣିଷ
ସହନ୍ତି କ୍ଲେଶ ଏପରି,
ଚିନ୍ତା କରି ସଦା କଲେ କାର୍ଯ୍ୟମାନ
କରନ୍ତି ସାହାଯ୍ୟ ହରି ।୫୧।

ସେଥିଲାଗି ଆଜି ପଥଭ୍ରଷ୍ଟ ହୋଇ
କୁକର୍ମେ ମଣିଷ ରତ,
ସ୍ୱାର୍ଥ ଚିନ୍ତା ଛଡା ନାହିଁ ଅନ୍ୟ ଚିନ୍ତା
ଦେଖୁ ଭବେ ଅବିରତ ।୫୨।

ଅହମିକା ଦୋଷ ହୃଦୟରେ ଥାଇ
ମଣିଷ ହେଲା ବିବ୍ରତ,
ତେଣୁ ନ୍ୟାୟ ନିଷ୍ଠା ପଛରେ ରହୁଛି
ନୟନେ ପଡେ ନିରତ ।୫୩।

ନିବୃତ୍ତି ମାର୍ଗକୁ     ଆସି ଯେ ଚଳୁଛି
ସୁଖରେ କଟେ ଜୀବନ
କାହା ଦୁଃଖେ କିଏ     ହେଉଅଛି ଖୁସି
ଜାଣୁଛି ସିନା ସଜ୍ଜନ ।୫୪।

ଲୋଭକୁ ବରଜି     କରୁଥିଲେ କର୍ମ
ଶୁଣିବୁ ସଦା ପ୍ରଶଂସା,
ଅବାଟରେ ପଶି     କରିଲେ ଅନ୍ୟାୟ
ହେବୁ ସିନା ଲୋକହସା ।୫୫।

ଖାଲି ହାତେ ଆସି     ଖାଲି ହାତେ ଯିବା
ଏହି ଚିରନ୍ତନ  ନୀତି,
ନଶିଖି ମଣିଷ     ଭ୍ରମୁଛି ତୁଚ୍ଛାକୁ
ପଶି  ଅବାଟରେ ନିତି ।୫୬।

ଭବ ଭୂଇଁ ଛାଡ଼     ଗଲବେଳେ କେହି
ରହିଥିବ  ହାତ ଶୂନ୍ୟ
ନ୍ୟାୟ ନିକିତିରେ     ତଉଲିଲ ବେଳେ
ସଙ୍ଗେ ଥିବ ପାପ ପୁଣ୍ୟ ।୫୭।

ସର୍ବ ଶକ୍ତିମାନ     ପରମେଶ୍ୱରଙ୍କୁ
ଠକି ପାରିବକି ଭବେ,
ଚିକିନିଖି ବୁଝି     ଦେଉଛନ୍ତି ଦଣ୍ଡ
ଭୁଲାଇ ଦେବକେ ଲବେ ।୫୮।

କ୍ଷମତା ଲାଳସା     ଗ୍ରାସିଛି ଯାହାକୁ
ଲମ୍ବ ଭଣ୍ଡ  କଥା କହି
ଭୋଟ ନେବା ଲାଗି     ଭୁଲାନ୍ତି ଯାହାକୁ
ନିନ୍ଦା ଅପମାନ ସହି ।୫୯।

ପେଟକୁ ନିଅଣ୍ଟ     ହେବାରୁ ଅର୍ଜନ
ଝିଅ ପାଇଁ ବର କରି ନପାରି
ମୁଣ୍ଡ ପୋତି ପୋତି     ଯାଉଅଛି  ବାପା
ଶୁଝୁଛି କିଏସେ ତାର ଗୁହାରି ।୬୦।

ସଂଖ୍ୟାଧିକ ବୋଲି     କହନ୍ତି ଯାହାକୁ
ଖାଉଛିକି ପେଟ ପୁରାଇ ଅନ୍ନ,
ଗାନ୍ଧିଜୀ ବଚନ     ନମାନି ଶାସକେ
ଆପଣାର ଲାଭେ ରଖିଲେ ମନ ।୬୧।

ଅଭିଆଡୀ ଝିଅ     ରହିଲେଣି କେତେ
ଗାଆଁ ଗାଆଁ ଗଲେ ପାରିବ ଜାଣି,
ତୁଚ୍ଛାକୁ ଗରବ     କରନ୍ତି ଶାସକେ
ସଭ ମଣ୍ଡପରେ ମିଛି ବଖାଣି ।୬୨।

କାହାକୁରେ ଲୋଡ଼ା     ହେତୁ ଶୁଭଦିଆ
ଅଭିଆଡୀ ଝିଅ ମାଆର ଦୁଃଖ,
ବୁଝୁଛିକି କେହି     ଏଣେ ତେଣେ ଯାଇ
ଚଉକିରେ ବସି ଲଭେ ଯେ ସୁଖ ।୬୩।

ଅନୁଭବୀ ବିନା     ଜାଣିପାରିବ କେ
ଅଭିଆଡୀ ଝିଅ ମନ ବେଦନା,
ପ୍ରସବ ବେଦନା     କେମନ୍ତ କଠିନ
କଳି ପାରିବକି ବନ୍ଧ୍ୟା ଲଳନା ।୬୪।

ଆମରନ କୋଷ     କରିଦେଲେ ଖାଲି
ନାନାମେଳା କରି ରାଜ୍ୟ ଭିତରେ,
କୋଟି କୋଟି ଟଙ୍କା     ଇଚ୍ଛାମତେ ଖର୍ଚ୍ଚ
କରି ଭସାଇଲେ ତୁଚ୍ଛା ଜଳରେ ।୬୫।

ଯେତିକି ମଣିଷ     କରୁଛି ଅନ୍ୟାୟ
ସେତିକି ପିଠିରେ ବାଜୁଛି ମାଡ଼,
ଆଲୁଅ ନଧରି     ଅନ୍ଧାରରେ ଗଲେ
ଦିଶିବ କି କେବେ ଆଗର ଗାଡ଼ ।୬୬।

ଅସରେ ଅସରେ     ବରଷି ଫାଲ୍‌ଗୁନେ
କରିଥିବା ଖାଦ ହେଲା ପୋଡ଼ିଆ,
ଦଇବ ବିଷର     ନବୁଝି କିଂଚିତ
ଅନ୍ୟାୟ ପ୍ରବେଶେ ସବୁ ଉଟିଆ ।୬୭।

ଆପଣା ପିଠିକି     କେ ଦେଖି ପାରୁଛି
କରୁଥାଉ ଲୋକ କେତେ ଯତନ,
ଏଣୁରେ ମଣିଷ     ବିଧିର ବିଧାନ
ଜାଣିବାକୁ କିଏ କେବେ ସଜନ ।୬୮।

⊙ ⊙ ⊙

ଉପକାର ପାଇ ଲୋକ କରେ ଅପକାର
ଚାଲିଅଛି ଏହିପରି ଦୁନିଆଁ ବେଭାର ।୧।

ରେ ମଣିଷ, ବୁଝୁନାହୁଁ ତୋ କରିବା କର୍ମ
ସବୁବେଳେ ଜାଣୁଛନ୍ତି ହୃଦେ ରହି ଧର୍ମ ।୨।

ମାଟେ ତଳେ ହୋଇଅଛି ଯେତେ ନଷ୍ଟ ଖାଦ
ନ ଖଟୁଛ ଟିକେ ମନେ ଭଲ ଅବା ମନ୍ଦ ।୩।

କାହାର ତୁ ହାନି କଲେ ଖବିବୁ ଶେଷରେ
ଅବଶ୍ୟ ଚଳୁଛି ଭବ ସଦା ବିଶ୍ୱାସରେ ।୪।

ସୁନାରୀକି ଦେଇଅଛ ସୁନା ବହୁବାର
ଫେରଇଛି ମୂଲ କେହି କରି ଅଳଙ୍କାର ।୫।

ଦେଇନାହିଁ ବୋଲି କେବେ ଶୁଣକି କାଠାରୁ
ନଶିଖି ପାଉଛ ନିନ୍ଦା କେବଳ ଆଶାରୁ ।୬।

କେହି ନୁହଁ ଦାୟୀ ତୁମ ଅପକର୍ମ ପାଇଁ
ଜାଣୁଛନ୍ତି ସବୁ କଥା ବ୍ରହ୍ମାଣ୍ଡର ସାଇଁ ।୭।

ଉଭେଇ ଯାଉଛି କ୍ରମେ ବିଶ୍ୱର ଶକତି
ଖଟୁନାହିଁ କିପରି କେ ପାଇବ ମୁକତି ।୮।

ଚରିତାର୍ଥ କରିବାକୁ ଆପଣା ନୟନ
ଧାଉଁଅଛି ଖର୍ଚ୍ଚ କରି ଲୋକ ତୀର୍ଥାଟନ ।୯।

ପାପ ପୁଣ୍ୟର ପ୍ରଭେଦ ନଜାଣି ମଣିଷ
ନାନା ରୋଗ ଭୋଗୁଅଛି ଜୀବନେ ଅନିଶ ।୧୦।

ସ୍ୱାର୍ଥ ଚିନ୍ତା ଛଡା କିଛି ନ ରଖୁଛି ମନେ
ତେଣୁ ସେ ଭୋଗୁଛି କଷ୍ଟ ନିରତ ଜୀବନେ ।୧୧।

ପାଖେ ଥାଇ ପବନକୁ ନଦେଖୁ ଯେପରି
ପାପ ନେତ୍ରେ ଦେଖିବ କେ ଶ୍ରୀହରି ସେପରି ।୧୧।

ନାହିଁରେ ବିଶ୍ୱାସ ଆଉ ନାହିଁରେ ବଚନ
ଅତୀତର ପରମ୍ପରା ନ ଦେଖେ ଲୋଚନ ।୧୩।

କୋଟି କୋଟି ଖାଦ କ୍ଷତି ଏବର ଘଟଣା
କିଏସେ ବା ଫେରଉଛି ନେଲେରେ ବଞ୍ଚଣା ।୧୪।

ଭୁଲଇ କହିବ ଯେତେ କ୍ଷତି ହେବ କାର
ରାତିରେ ଶୋଇବା ବେଳେ କରିବୁ ବିଚାର ।୧୫।

ଧିକରେ ମଣିଷ ତୋର ଚତୁର ପଣିଆଁ
ଦେଖି ଅପକର୍ମ କିଏ ନହେବ ଛାନିଆଁ ।୧୬।

ବିଶ୍ୱାସ ଘାତକ କେବେ ବିଶ୍ୱାସ ଭଜନ
ହେବକିରେ ତୋଷି ତାକୁ ମଣିଷର ମନ ।୧୭।

ହୃଦୟେ କପଟ ଭରି ତୁଣ୍ଡେ ଚାଟୁଭାଷା
ଖବିଥାଏ ନିବାରଣେ ସ୍ୱାର୍ଥର ପିପାସା ।୧୮।

ଜୀବନେ ଯେ କରୁଅଛି ଆଶା ଉପାସନା
ସେ କାହୁଁ କରିବ କେବେ ଈଶ୍ୱର ଖବନା ।୧୯।

ପାଇଅଛି ଲୋପ ତାର ବିଶ୍ୱର ଶକତି
ନୋହିଲେ କି ରହିଥାନ୍ତା ଦୁଷ୍କର୍ମରେ ମତି ।୨୦।

ପାପ ଛଡା ପୁଣ୍ୟ କେବେ ଛୁଇଁନାହିଁ ମନ
ଅନୀତି ଆଶ୍ରୟେ ତାର ଯାଇଛି ଜୀବନ ।୨୧।

ମୁଗୁରରେ ପଡ଼ ମୀନ ଛଟପଟ ଯଥା
ବିଶ୍ୱାସଘାତକ ଆଶା ପାଶେ ପଡ଼ ତଥା ।୨୨।

ବିଶ୍ୱାସ ଜନ୍ମାଇ କେବେ ଦେଉଅଛି ବିଷ
ତା ସ୍ୱଭବ ଲୋକ ନେତ୍ରେ ପଡୁଛି ଅନିଶ ।୨୩।

କୃତଘ୍ନତା ଘରେ ଘରେ ଯାଇଅଛି ବ୍ୟାପି
ତା'ର ପରିଣାମ ଲୋକ ନଶିଖେ ତଥାପି ।୨୪।

ସଂସାରର ଖେଳ ସାରି ଦିନେ ଯିବ ଚାଲି
ଦେଖୁଥିବେ ଲୋକମାନେ ହାତ ଥିବ ଖାଲି ।୨୫।

ଜନନୀ ଗରଭୁ ଖସି ପଡନ୍ତେ ମାଟିରେ
ଚହାଁନ୍ତ ସରବେ କିଛି ନଥାଏ ହାତରେ ।୨୬।

ହୁଅନ୍ତ ଉଦୟ ଅସ୍ତ ଗ୍ରହ ଉପଗ୍ରହ
ନିର୍ବୋଧ ମଣିଷ ଏହା ଦେଖେ ଅହରହ ।୨୭।

ଦିନରେ ଆଲୁଅ ସିନା ରାତିରେ ଅନ୍ଧାର
କିଏସେ ବୁଝୁଛି ଭବେ ବିଧାତା ବିଚାର ।୨୮।

ଆସୁଛି ଯାଉଛି ପୁଣି ଖରା ବର୍ଷା ଶୀତ
ପକ୍ଷେ ବଢ଼େ ପକ୍ଷେ ଛିଡେ ବିହାୟସେ ଚନ୍ଦ୍ର ।୨୯।

ଯୌବନର ପରେ ପରେ ଆସୁଅଛି ଜରା
ନାହିଁ କିଛି ବ୍ୟତିକ୍ରମ ନିତି ଦେଖୁ ପରା ।୩୦।

ଉଆଁସ ପୂର୍ଣ୍ଣମୀ ରାତି ଅନ୍ଧାର ଉଜ୍ଜଳ
ବିଧାତା ନିୟମ ସଦା ସବୁ ଶୃଙ୍ଖଳ ।୩୧।

ରାଜନୀତି କରି କେବେ ନଅର୍ଜ କଳଙ୍କ
ଭଗବତ ଚିନ୍ତା କର ମନେ ଅହରହ ।୩୨।

ଅନ୍ୟାୟକୁ କେତେବେଳେ ନଦିଅ ପ୍ରଶ୍ରୟ
ଦେଖୁଛନ୍ତି କର ଯାହା ପ୍ରଭୁ ଦୟାମୟ ।୩୩।

ଆପଣା ହୃଦୟେ ପ୍ରଭୁ ରହିଛନ୍ତି ଜାଣ
ରହିଛିକି କେବେ ଭବେ କାହାର ବା ତ୍ରାଣ ।୩୪।

କାଲି କଥା ଆଜି ନାହିଁ ଦେଖି ନିରନ୍ତର
ପୋଷୁଛୁ କିପରି ସ୍ୱାର୍ଥ ମନରେ ତୁମର ।୩୫।

ଶରତର ପଛେ ପଛେ ଆସଇ ହେମନ୍ତ
ରାଜନୀତି ବଦଳିବା ଦେଖୁଛ ତେମନ୍ତ ।୩୬।

ଆପଣା ଜାତିକି ଧରି ଚଳିବ ଶାସନ
ଜାଣିଲେ କି ଓଡ଼ିଶାର ଅନ୍ୟ ମନ୍ତ୍ରିଗଣ ।୩୭।

ତ୍ରିଂଶ ଆଉ ଏକ ଲୋଡ଼ା ବୁଝିବାକୁ କ'ଣ
ତନ୍ମଧ୍ୟରୁ ଅନ୍ୟ ଜାତି ଅଠରଟି ଜଣ ।୩୮।

ଚଳିଛି ଏପରି ଦେଶେ ଶାସନ ଅନ୍ୟାୟ
ଘରିଆଡ଼େ ଏବେ ଶୁଭେ ଫମ୍ପା ସମବାୟ ।୩୯।

ଦେଉଛନ୍ତି ଯେତେ ଋଣ ବାବୁମାନେ ବସି
ବାହାର କର ପ୍ରଥମେ ହିସାବକୁ କଷି ।୪୦।

ଦେଶଯାକ ଜାଲ ଋଣ ନିଶ୍ଚୟ ନିଶ୍ଚୟ
ଏଥିପାଇଁ ଲୋକେ ଆଜି ହୁଅନ୍ତି ଅଥୟ ।୪୧।

ଋଣ ବହି ଧରି ଦେଖ ଗାଆଁ ଗାଆଁ ଯାଇ
ଅସାଧୁ ତନଖି କଲେ ଦେବରେ ଘୋଡ଼ାଇ ।୪୨।

⊙ ⊙ ⊙

ପାଶେ ଥାଇ ପବନ ଅଦୃଶ୍ୟ ଯଥା
ଦିଶିବେ ନାହିଁ ପ୍ରଭୁ ଲୋକଙ୍କୁ ତଥା ।୧।

ଜାଣନ୍ତି ଅନ୍ତର୍ଯାମୀ ମଣିଷ ମନ
ତାଙ୍କୁ ଠକିବା ଲାଗି କିଏ ଭବନ ।୨।

ସର୍ବତ୍ର ରହି ସବୁ ଦେଖନ୍ତି ନିତି
ଚଳାଉଛନ୍ତି ଏହି ବିଶାଳ କ୍ଷିତି ।୩।

ପରମ ବନ୍ଧୁ ସେହି ଆପଦ କାଳେ
ଭଜିବା ତେଣୁ ତାଙ୍କୁ ସନ୍ଧେ ସକାଳେ ।୪।

ସେହିପରି ଜୀବର ଜୀବନ ତରୀ
ଭଜିଲେ ସେ ତରୀକି ପିବାରେ ତରି ।୫।

ଅବାଟେ ଗଲେ ବାଟ ଦେବେ ଦେଖାଇ
ହୃଦେ ରଖିଲେ ଯିବ ଦୁଃଖ ପଳାଇ ।୬।

କରମ ଅନୁଯାୟୀ ମିଳୁଛି ଫଳ
ବୁଝନ୍ତି କି ଏକଥା ଲୋକ ସକଳ ।୭।

ଜାଣୁଥିଲେ କିଏ ସେ ତାଙ୍କର ସ୍ଥିତି
ରହନ୍ତା କି ସଂସାରେ ଏତେ ଅନୀତି ।୮।

ଲୋକର ଭଲ ମନ୍ଦ ନାହିଁ ବିଚାର
ତେଣୁରେ ଶୁଭୁଅଛି ହୁଳା ମୂର୍ଖାର ।୯।

ଭବିଷ୍ୟ ଦଣ୍ଡ ଅଛି ବୋଲି ନ ଜାଣି
ଦେଖାଉଅଛି ଲୋକ ଆପଣା ଠାଣି ।୧୦।

ସ୍ୱାର୍ଥରେ ମଜ୍ଜିଅଛି ଯାହାର ମନ
ପଡ଼ିବ କି କାନରେ ସାଧୁ ବଚନ ।୧୧।

ଘୋଡ଼ାଇ ଦେଇଅଛି ମନକୁ ଆଶା
ତେଣୁ ନାହିଁ କାହାର କୋମଳ ଭଷା ।୧୨।

ଏ ଦେହ ସଢ଼ୁଅଛି ନାନା ରୋଗରେ
କାରଣ ତାର କିଏ ଭବେକି ଥରେ ।୧୩।

ଜନ୍ମ ମରଣ ଜରା ଦେଖୁଛ ନିତି
ନଭାବ ତେବେ କିମ୍ବା ଦୁନିଆଁ ରୀତି ।୧୪।

ଲୁଚାଇ ହିଂସା ଚିତ୍ତେ କରିଲେ କର୍ମ
ଜବାବ ତାର ଦେବ କେବଳ ଧର୍ମ ।୧୫।

ପରର ନେଇ କିଏ ହୋଇଛି ବଡ଼
ସ୍ଥିର ଚିତ୍ତରେ ଭବୁଁ ହେଲେହେଁ ଜଡ଼ ।୧୬।

ଉଠିବା ପଡ଼ିବାଟା ଦେଖି ନିରତ
ଷଡ଼ରିପୁ ଦମନରେ ହୁଅ ଜାଗ୍ରତ ।୧୭।

ଅନ୍ୟାୟକୁ ଯାହାର ନାହିଁ ଖାତର
ତେବେ ଶବ ଦର୍ଶନେ କିମ୍ବା କାତର ।୧୮।

ଏ ବର୍ଷର ବରଷା କଲେ ଭବନା
ଆସିବ ପର ମନେ କାର ଚେତନା ।୧୯।

ବିପ୍ଳବକ ନିକର କଲେ ଅନ୍ୟାୟ
ଅଛିକି ରୋକିବାକୁ ତାର ଉପାୟ ।୨୦।

ସିଇଲେ ଥିବୁ କାହିଁ ମୁହୂର୍ତ୍ତେ ପରେ
ଶୁଭିବ ତୋ ମରଣ ଚଉଦିଗରେ ।୨୧।

ନିତି ଦେଖୁଛୁ ଏହା ଦୁନିଆଁ ରୀତି
ତେଣୁ ସ୍ୱାର୍ଥକୁ ସଦା କରିବୁ ଭୀତି ।୨୨।

ଦେଖିବ ଜଗତକୁ କୁଟୁମ୍ବ ପରି
ସ୍ୱର୍ଗରେ ଭବଧାମ୍ନ ଯିବୁରେ ତରି ।୨୩।

ଘଡ଼ିକ ପାଇଁ ସିନା ଲୁହ ଆଖିରେ
ତାପରେ ଯାହା ଘଟେ ଦେଖୁ ମହୀରେ ।୨୪।

କୁଟୁମ୍ବ ବୋଲି ଯାକୁ ମଣୁ ମୋହର
ଆଖିଟି ବୁଜିଦେଲେ ସେକି ତୋହର ।୨୫।

ତୋ ପଛେ ନାହିଁ କେହି ଯିବୁ ତୁ ଏକା
କରିଥିଲେ କୁକର୍ମ ଫିଙ୍ଗିବେ ଟେକା ।୨୬।

ସ୍ୱାର୍ଥ ପଛରେ ଧାଇଁ କେ ପାଏ ସୁଖି
ଧର୍ମରେ ଥିଲେ ମତି ହରଷ ମୁଖ ।୨୭।

x x x x x

ଧିକରେ ମଣିଷ ତୋ ଧିକ ଜୀବନ
ଭବ ଲୀଳା ଦିନେ ନକଲୁ ଚିନ୍ତନ ।୧।

ମୋର ମୋର ବୋଲି କଟାଉ ସମୟ
ନ ସୁମରିଲୁ ଦିନେ ପ୍ରଭୁ ଦୟାମୟ ।୨।

ଆସି ଖାଲିହାତେ ଯାଉ ଖାଲିହାତେ
ଅବାଟରେ ଗଲେ ପଡୁଅଛୁ ଖାତେ ।୩।

ଜନମିଲୁ ସିନା ଆଣିନାହୁଁ କିଛି
କହିବାକୁ 'ମୋର' ଖୁଣୁଅଛୁ ଛି ଛି ।୪।

'ତୋର' ବୋଲି ଯାହା ଅର୍ଜିବୁ ଜୀବନେ
ତୋର ଅବାକାର ଜାଣିବୁ ଭବନେ ।୫।

ଯେତେଦିନ ଯାଏଁ ରହିବୁ ଅନ୍ଧାରେ
ନ ଦିଶିବ ବାଟ ପଡ଼ବୁ ଖାତରେ ।୬।

ଧରିଛି ଆଲୁଅ ବିପ୍ଳବ ଶକତି
ଦେଖାଉଛି ବାଟ ଦେବାକୁ ମୁକତି ।୭।

କହିବ ସେ ଶକ୍ତି ନ୍ୟାୟ ବା ଅନ୍ୟାୟ
ତେବେ ବୁଝି ତାକୁ କରିବ ଉପାୟ ।୮।

ନାନା ଦଣ୍ଡ ଭୋଗ କରୁଛି ମଣିଷ
ନଭବେ କିପରି ପାଇବ ଆଶିଷ ।୯।

ରହିଛନ୍ତି ବ୍ୟାପି ପ୍ରଭୁ ଭଗବାନ୍
ଜାଣୁଛନ୍ତି ନିତି ତୋର କାର୍ଯ୍ୟମାନ ।୧୦।

ପକାଇଲୁ ଗଣ୍ଡି ସ୍ୱାର୍ଥକୁ ଜୀବନେ
ନକରି ଭାବନା ଆପଣା ମୋଚନେ ।୧୧।

ଜନମି ମରିବୁ କେତେଥର ଭବେ
ଏ ରହସ୍ୟ କେବେ ଜାଣିଛୁକି ଲବେ ।୧୨।

ଅନୀତି ପଛରେ ରହିଅଛି ଦଣ୍ଡ
ବୁଝି ପାରିବକି କେହେହେଁ ପାଷଣ୍ଡ ।୧୩।

ପ୍ରଭୁ ଭଗବାନ ଦିଅନ୍ତୁ ସଦ୍‌ବୁଦ୍ଧି
ଜୀବନେ ମଣିଷ କରୁ ଚିତ୍ତ ଶୁଦ୍ଧି ।୧୪।

ଆମୋଦ ପ୍ରମୋଦେ ସମୟ ବିତାଇ
ନଯାଉ କାହାର ଜୀବନ ପଳାଇ ।୧୫।

ଦୁଷ୍ଟ କଳ୍ପନାରେ ବଳାଉଛୁ ମନ
ବାସ୍ତବ ବିଷୟେ ନକରି ଚିନ୍ତନ ।୧୬।

ନିତି ଶୁଣୁଅଛ ମରଣର ରଡ଼
ଦୁଆର ମୁହଁରେ ଶବ ଘଡ଼ଘଡ଼ ।୧୭।

ଗଲାବେଳେ ଦେଖ ହାତ ଥିବା ଶୂନ୍ୟ
ନ ବିଚ୍ଛର ତିଳେ ଦିନେ ପାପ ପୁଣ୍ୟ ।୧୮।

କାହିଁକି ପାଉଛୁ ବିପ୍ଳବ ଶକତି
ନଭବୁ କିପରି ପାଇବୁ ମୁକତି ।୧୯।

ଅବା କେତେ ଦିନ ଭବେ ତାର ସ୍ଥିତି
ଦେଖୁଅଛୁ ସଦା ଦୁନିଆଁର ରୀତି ।୨୦।

ଟାହାପାଇଁ ଏତେ ହେଉଅଛୁ ଘାଣ୍ଟି
 ଛଡ଼ାଇ ନେବେ ସେ ହାତେ ଥିବା ପାଣ୍ଠି ।୨୧।
ଭୁଂଗିଥିବ ବଳ ନ ପାରିବୁ ଉଠି
 ନଇଁଥିବ ଅଣ୍ଟା ବଙ୍କା ଥିବ ପିଠି ।୨୨।
ଠକିବା ଭଣ୍ଡିବା ଆଜିର ଜୀବିକା
 କରେ ସର୍ବନାଶ ବ୍ୟାପି ଅଧର୍ମିକା ।୨୩।
ନ୍ୟାୟ ଅନ୍ୟାୟକୁ ଡର ନାହିଁ କାର
 କ୍ଷମତା ପଇସା କେବଳ ବିଚାର ।୨୪।
ଭବୁଥାନ୍ତେ ଯଦି ଲୋକ ଏ ଦେଶର
 ହୋଇଥାନ୍ତା କିରେ ଦୁର୍ନୀତିରେ ଭର ।୨୫।
ପଶୁଛନ୍ତି ଲୋକେ ନାନା ଅନୀତିରେ
 ଅଢ଼େଇ ଦିନକୁ ରହି ଏ ମହୀରେ ।୨୬।
କେତେ ମହାଜନ କେତେ ତ୍ୟାଗ କରି
 ଆଦର୍ଶ ଦେଖାଇ ଭବୁଁ ଗଲେ ତରି ।୨୭।
କାଳିର ବିଷୟ ଗାନ୍ଧିଜୀ ଆଦର୍ଶ
 ପାସୋରିଲେ ସର୍ବେ ନଚିନ୍ତ ଆମର୍ଶ ।୨୮।
କ୍ଷମତା ଧନରେ ହେଉଛନ୍ତି ବାଇ
 କହୁଛନ୍ତି ମିଛ ଦୁହାଇ ଦୁହାଇ ।୨୯।
ସବୁ ଦେଖି ଦେଖି ଦୁନିଆଁ ବେଭାର
 ପଡୁଛି ମଣିଷ ବନ୍ଧନେ ଆଶାର ।୩୦।
ନ ପାଉଛି କିଏ ଜୀବନେ କଷଣ
 ବିଚାରକ ଯହିଁ ସ୍ୱୟଂ ନାରାୟଣ ।୩୧।
ଲାଗିଛି ଧରାରେ କେତେ ଧରାଧରି
 ଫିଟିଯାଏ ଦୋଷୀ ମିଛକୁ ଆଚରି ।୩୨।
ସ୍ୱାର୍ଥ ମଣିଷର ମୋଡ଼ଦିଏ ତଣ୍ଟି
 ଦେଉଳରେ ଯେତେ ବାଜୁଥାଉ ଘଣ୍ଟି ।୩୩।

⊙ ⊙ ⊙

ଉପର ହାକିମ କଲେ ଅନ୍ୟାୟ
ତଳର ହାକିମ ଦେବକି ନ୍ୟାୟ
 ଧନ୍ୟ ବିଚାର
ସତେକି ଓଲଟି ଗଲା ସଂସାର ।୧।

ଶୁଣିଲେ ସନ୍ତତ ବିବେକ ଡାକ
ସୁଖରେ କଟିବ ଜୀବନ ଯାକ
 ଧାନୁଁ ଅଗାଡ
କାଢ଼ଦେଇ ସବୁ ଦିଅ ସଜାଡ ।୨।
ଅଗାଡ଼କି ରଖି ବିକିଲେ ଧାନ
କି ହେବ ପଛରେ କର ସନ୍ଧାନ
 ସଂସାର ରୀତି
ଦେଖିଲେହେଁ ସଦା ଚଳେ ଅନୀତି ।୩।
ଅନ୍ତର୍ଯାମୀ ରହି ସଦା ଚିତ୍ତରେ
କହନ୍ତି ଯାହାକି ପଡ଼ୁ କାନରେ
 ଗଲେ ଅବାଟେ
ବାଜିବ ଅବଶ୍ୟ ପିଠିରେ ଛାଟେ ।୪।
କେତେଦିନ ପାଇଁ ଜୀବନ ଖେଳ
ବିଚାରି ବିଚାରି ସରିବ ବେଳ
 ମନ ଇଚ୍ଛାରେ
ନକର କରମ ଜନ୍ମି ସଂସାରେ ।୫।
କେତେ ଖାଲ ଢିପ ଅଛି ବାଟରେ
ନ ଜାଣିଲେ ଚାଲି ହଇରଣରେ
 ପଡ଼ି ମଣିଷ
ପାଉଛି କଷଣ ଦିଶେ ଅନିଶ ।୬।
କାହା ବଡ ପଣ ରହିଛି ଭବେ
କଳକି କେ ଚିନ୍ତା ଜୀବନେ ଲଭେ
 ଆଖି ଆଗରେ
ଓଲେମ ବିଲେମ ସଦା ମର୍ତ୍ତ୍ୟରେ ।୭।
ସ୍ୱାର୍ଥକୁ ଜୀବିକା କେତେକ କରି
ଅଧର୍ମିକା ଡୋରି ଭିତରେ ଧରି
 କି ହେବ ଟାଣି
ପଡ଼ଲେ ଛିଣ୍ଡୁଛି ବାଟ ନ ଜାଣି ।୮।
ଆସିଅଛୁ ଏକା ଯିବାରେ ଏକା
ସୁକର୍ମ ନକଲେ ଫିଙ୍ଗନ୍ତି ଟେକା
 ଦୁନିଆଁ ରୀତି
ଭବିଲେ ମନରେ ଲାଗଇ ଭୀତି ।୯।

ସୁଖ ବା ଦୁଃଖରେ ଯାଉଛି ଦିନ
ଦେଇଛନ୍ତି ଲେଖି ଆଗରୁ ଇନ
ଭବିଷ୍ୟ କଥା
ବୃଥା ଭବନାରେ ନ ଘୂରୁ ମଥା ।୧୦।

କିଏ ଜାଣିଥିଲା ଆସିବ ବଢ଼
କେତେ ଜୀବ ଜନ୍ତୁ ପାଣିରେ ପଡ଼
ମଣିଷ ସହ
ଭସିଯିବା କ୍ଲେଶ ହେଲା ଦୁଃସହ ।୧୧।

ଯେତେ ଘରଦ୍ୱାର ଗଲା ଭୁଷୁଡ଼
ଆସିବ ନାହିଁରେ ଆଉ ବାହୁଡ଼
କେଉଁ ପାଂଡିରେ
ଅଛିକିରେ ଯାହା ଗଲା ଧୋଇରେ ।୧୨।

ଲାଗିଲା ଇରକେ ଭୀଷଣ ଯୁଦ୍ଧ
ଜାଣିଲେ କି କିଏ ଜ୍ୟୋତିଷ ବୁଧ
ତେଣୁ ଭବିଷ୍ୟ
ଅଜଣା ରହିବ ଭବେ ଅବଶ୍ୟ ।୧୩।

ବିଚିତ୍ର ସଂସାର ବିଚିତ୍ର ସୃଷ୍ଟି
ଅଜଣା ଆଗରୁ ଏଭଳି ବୃଷ୍ଟି
ଧାତା ବିଚାର
ପାରିବକି ବୁଝି ମଣିଷ ଛାର ।୧୪।

ଦେଖୁଛି ମଣିଷ ଯୋଗ ଅଯୋଗ
ଧାତା ଲେଖିବାଟା କରିବ ଭୋଗ
ଏହା ଅବଶ୍ୟ
ଜାଣିକେ ପାରିବ ସୃଷ୍ଟି ରହସ୍ୟ ।୧୫।

ଅଳେଡାରେ ମେଘ ଦିଏ ଅଡାଢ଼
ବସିଅଛି ଗଛେ ପକ୍ଷକୁ ଝାଡ଼
କେତେକ କୁଆ
ବରଷାକୁ ତାଙ୍କ ନାହିଁ ପରୁଆ ।୧୬।

ବାୟା ଚଢେଇଟି ବସା ଭିତରେ
ରହିଅଛି ଏଣେ ମହା ସତରେ
ଖଟିଖିଆର
କହିଲେ ନସରେ ଦୁଃଖ ତାହାର ।୧୭।

ମାସ ମାସ ଧରି ବିଲରେ ଚଷା
ଲାଗିଥିଲା ସହି ଖରା ବରଷା
କପାଳ ମନ୍ଦ
ପାଣିରେ ସଢ଼ିଲା ସବୁ ତା ଖନ୍ଦ ।୧୮।

ବର୍ଷା କାଳ ହେଲା ଛେଳିକି କାଳ
ଗଡ଼ୁଛି ମହିଷ ଦେଖି ଜମ୍ବାଳ
ପ୍ରମୋଦ ଭରେ
ଓଲେମ ବିଲେମ ସଦା ଭବରେ ।୧୯।

ପୁଚ୍ଛ ଟେକି ଟେକି ଘଡ଼କି ଘଡ଼
ଶୁଭୁଛି କେକାର ବଣରେ ରଡ଼
ଶୁଣି ଆକୁଳ
ପଶିଲେ ବିଳରେ ଉରଗକୁଳ ।୨୦।

ବିଶ୍ୱାସ ଜନ୍ମାଇ କେ ଦିଏ ବିଷ
କେହି ନ ଜାଣିଲେ ଜାଣନ୍ତି ଈଶ
ଲାଭ ଆଶାରେ
ଚାଲିଛି ଏପରି ଖେଳ ସଂସାରେ ।୨୧।

ବିଲରେ ହେଲାଣି ଆଂଠୁଏ ଜଳ
ଆନନ୍ଦେ ରବନ୍ତି ଦର୍ଦ୍ଦୁର ଦଳ
ନାଦ ବିକଟ
ଆସିବାରୁ ଧଣ୍ଡ ସର୍ବେ ଚମ୍ପଟ ।୨୨।

ସ୍ୱର୍ଣ୍ଣପ୍ରସୂ ଦେଶ କି ହେଲା ଆଜି
ଏଥିଲାଗି ଦାୟୀ ଶାସକରାଜି
ଗାନ୍ଧିଜୀ ପରେ
କି ହେଲା ଏ ଦେଶ ଭବନ୍ତୁ ଥରେ ।୨୩।

କ୍ଷମତା ନିମିତ୍ତ ଟଣା ଓଟରା
ଲାଗିଅଛି ନିତି ଦେଖୁଛି ଧରା
ଲାଗିଛି ମନ
ଉଚ୍ଚାସନେ ଗଲେ ଅର୍ଜିବେ ଧନ ।୨୪।

ଉଭେଇ ଯାଇଛି ଲାଜ ମହତ
କଲମ ଧଇଲେ ମିଛକୁ ସତ
କରି କେତେକ
ଦେଖାଇ ହୁଅନ୍ତି ଆପଣା ଟେକ ।୨୫।

ଶୋଷୀ ବାଢୋଇଛି ଧାଇଁଲା ପରି
ମରୀଚିକା ପଛେ ଲୋକ ସେପରି
ଅର୍ଥ ଲୋଭରେ
ପାଉଛି କଷଣ ପଡ଼ ଖାଲରେ ।୨୬।

ଶାସନ କାଳଟି ଦୁର୍ନୀତି ଭର
ଦୂଧାରିବାକୁ ତା ହେଲେ ତତ୍ପର
ଜନ ମଙ୍ଗଳ
ଗାନ୍ଧିଜୀ ସ୍ୱପନ ହେବ ସଫଳ ।୨୭।

ଏ ଦେଶ ସ୍ୱାଧୀନ ଯାହା ଯୋଗରୁ
କିପରି ପାସୋରି ଗଲା ମନରୁ
ଧିକ ଏ ଦେଶ
ଅଛିକି ବିଚାର ଶକତି ଲେଶ ।୨୮।

ନ ଭାବଇ କେହି କି ହେବ ପରେ
ନିତି ଦେଖିଲେ ହେଁ ସର୍ବେ ଦାଣ୍ଡରେ
ଲୀଳା ଭବର
କରନ୍ତୁ ବିଚାରି ଶୁଦ୍ଧି ଚିତ୍ତର ।୨୯।

ନଭେମ୍ବର ଚାରି ନବେ ସାଲକୁ
ହେତୁ ରଖିଥିବ ଯୁଗ ଯୁଗକୁ
ଅସୀମ କ୍ଷତି
କେ ବୁଝିପାରିବ ବିଧାତା ମତି ।୩୦।

ବନ୍ୟେ ରହୁଥିବା ପ୍ରାଣୀ ନିବହ
ଗୋରୁ ଛେଳି ମେଣ୍ଢା ମଣିଷ ସହ
ପାଣି ସୁଅରେ
ପଶିଗଲେ ଯାଇ ସିନ୍ଧୁ ଗର୍ଭରେ ।୩୧।

ଆସିଗଲା କିବେ ପ୍ରଳୟ କାଳ
ଜଳାର୍ଣ୍ଣବ ହେଲା କେଦାର ମାଳ
ବାଲି ଅଡାଢ଼
ଫୁଟେ ବହଳରେ ଯାଇଛି ମାଡ଼ ।୩୨।

କେତେ ଘରଦ୍ୱାର ହୋଇଛି ଚୂନା
କେ କଳିପାରିବ ଯା ଗଲା ସୁନା
ଦେଖି ଅନୀତି
ଦେଉଛନ୍ତି ଦଣ୍ଡ ବିଧାତା ନିତି ।୩୩।

ଯମ ଦୂତମାନେ ବାଟ ଓଗାଳି
କରନ୍ତି ହିନସ୍ତା ଦିଅନ୍ତି ଗାଳି
ପାପୁଁ ଓହରି
ଫେରିଯାଅ ଭବୁଁ ନ୍ୟାୟାନୁସରି ।୩୪।

କିଏ ସେ ସଂସାରେ ନୁହଁଇ ଚିର
ଆଜି ଉଚ୍ଚାସନେ କାଲି ଫକୀର
ଦୁନିଆଁ ରୀତି
ଜାଣି ଶୁଣି କିମ୍ପା ବଢେ ଅନୀତି ।୩୫।

କିଏ କହିବ ବା ଆଙ୍ଗୁଠି ଧରି
ଲେଖାଇ ନ ଦେବ କଲମ ଧରି
ଯୁକ୍ତି ବିବେକ
କଟୁଥିଲେ କର୍ମ ରହିବ ଟେକ ।୩୬।

ପ୍ରବୃତ୍ତି ଜୀବନେ ନିରତ କେଉଁ
ନିବୃତ୍ତିକି ସଦା ରଖିବ ହେତୁ
କିଏ କାହାର
କରିବ ବିଚାର ଥରକୁ ଥର ।୩୭।

ବିଲିଫ୍ ବଣ୍ଟନ ଚାଲିଲା କ୍ରମେ
ଧଳାକୁ କଳାରେ କଲେ ବିଭ୍ରମେ
ହେଲା ଗହଳି
ଗାଆଁରେ ଗାଆଁରେ ବଢିଲା କଳି ।୩୮।

ପାତର ଅନ୍ତର ହେଲା ଏ ବଣ୍ଟା
କାହୁଁଏ ପ୍ରବେଶି କୁଦିଲେ କଣ୍ଟା
କେତେକ ଲୋକ
ଏଣେ ମୂର୍ଚ୍ଛିଆଣୀ କରୁଛି ଶୋକ ।୩୯।

୦ ୦ ୦

(ରାଗ-ଚୋଖି)

ନ୍ୟାୟକୁ କରି ଆଶ୍ରୟ ଚଳନ୍ତୁ ମାନବଚୟ
ଗୁରୁଜନ ଠାରେ ଭୟ ରଖି ଜୀବନେ
ରହିଛି ନ୍ୟାୟ ନିକିତି ତୁଳାତୁଳି ହୁଏ ନିତି
ନାହିଁ ତହିଁ ପ୍ରିୟାପ୍ରୀତି ଚିନ୍ତ ଶୟନେ
ନ ପଡ ଆପଣା ଲୋଭରେ
ରହିଅଛି ଜଗୁଆଳ ସଦା ଦେହରେ ।୧।

ଉପକାରେ ଅପକାର     କଲେ ଜୀବନେ କାହାର
ନ ଭାବିଲେ ବାରବାର ତା ପରିଣାମ
ଧରୁଛି ବିଷମ ଗତି     କିପରି ନ ଜାଣେ ମତି
ଢବନ୍ତୁ ମଣିଷ ତତି ତା ଅବିରାମ
ମରଣର ଡୋରିକି ଧରି
କେତେ ଦିନ ଠକିବରେ ପାପ ଆଚରି ।୨।

କପଟ ରଖି ହୃଦରେ     ଧାଉଁଛୁ ନିଜ ଲାଭରେ
ଦେଖିଲେହେଁ ନିଜ ଘରେ ଅନୀତିମାନ
କିଏ ଜାଣୁନାହିଁ ବୋଲି     ଭାବୁଛ ଚିତ୍ତ ନ ଖୋଲି
ଭରି କଲେ ନିଜ ଡୋଲି ଅସାବଧାନ
ହେଉଅଛ ପ୍ରତି ଦଣ୍ଡରେ
ପରିଣତ ହେବ ନିଶ୍ଚେ ଦିନେ ପଣ୍ଡରେ ।୩।

କାର୍ଯ୍ୟାବଳୀ ପ୍ରଭୁଙ୍କର     ଅନୁଭବି ନିରନ୍ତର
ଦୋଷୀକୁ କ୍ଷମା ଆଚର ମଣିଷ ଧର୍ମ
ଅନ୍ୟାୟ କରି ବର୍ଜନ     ମନକୁ କରି ଦମନ
ନିରଳସ ହୋଇ ଜନ କରୁ ସୁକର୍ମ
ଲୋଡ ସଦା ମୁକ୍ତି ସରଣୀ
ଚଳିଲେ ଅନବରତ ଖୁସି ଧରଣୀ ।୪।

ଦୁର୍ନୀତି ହେଲା ପ୍ରବଳ     କା'ର ନାହିଁ ମନୋବଳ
ଶାସନର କଉଶଳ ପଡେ ଲୋଚନେ
ସ୍ୱାର୍ଥଟି ହେଲା ଜୀବିକା     ଚାକିରୀରେ କିଣା ବିକା
ଧାଉଁଅଛି ଅହମିକା ମାନସ ଧନେ
ଗାନ୍ଧିଜୀକି ମାରି କେତେକ
ବୁଡାଇଲେ ହରିଜନ ଗଢିବ ଭେକ ।୫।

ତାଙ୍କର ଆଦର୍ଶାବଳୀ     ନ ପଢ଼ ଶାସକ ଆଜି
କରନ୍ତ ପୂଜା ଗୁରଳି ନିଜ ବଡାଇ
ଦେଖାଇ ହୁଅନ୍ତ ଥୋକେ     ବସି ବିଜୁଳି ଆଲୋକେ
ମରୁଛେ ଉପାସେ ଭେକେ ଅନ୍ନ ନ ପାଇ
କଲବଲ ନିଶି ଦିବସ
ତିନି ମାସ ପଢ଼ଆରେ କଟେ ବରଷ ।୬।

ଗୁଣ୍ଡାମିର ଅତ୍ୟାଚାର     ଡକାୟତି କାରବାର
ଅଛିକି ଆଶା କାହାର ଧନ ଜୀବନେ
ଧନୀର ବଢିଲା ଧନ     ଗରିବ ହେଲା ଉଚ୍ଛନ୍ନ
ନ ମିଳେ ମୁଠାଏ ଅନ୍ନ ଏବ ଶାସନେ
ଅନ୍ୟାୟକୁ କଲେଣି ଗଣ୍ଠି
ଏଣେ ପାଣି ମଢେ ପାଇଁ ଶୁଖୁଛି ତଣ୍ଟି ।୭।

ନ ମାନି ଗାନ୍ଧୀ ବଚନ     ଚଳିଛି ଦେଶ ଶାସନ
ଦୀନ ହେଲେ ହୀନିମାନ ବଢ଼େ ଲୁଣ୍ଠନ
ଆସୁଛି ଅନ୍ଧାର ଘୋଟି     ଋଣ ଦୁଇଲକ୍ଷ କୋଟି
ସାଉକାର ଧରେ ଚୋଟି କର ଖଦନ
ହେଲାଣି ଠିକଣା ସମୟ
ଦେଖନ୍ତୁ ଚୌଦିଗେ ଲୋକେ ଈଶ୍ୱର ମୟ ।୮।

ଅନ୍ୟାୟ କାର୍ଯ୍ୟକ୍ରମରେ     ଦେଖାନ୍ତି ବିକ୍ରମ ନରେ
ବିଶାଳ ଭବ ଭୂମିରେ ଶେଷେ ନିଧନ
ଶୁଣନ୍ତି ସିନା କେବଳ     ନରହେ ତ ଧନ ବଳ
ଅଥବା ବାହୁର ବଳ ଦେଖେ ନୟନ
ରହିଛିକି କାର ଗରବ
ପୁରାଣ ପୃଷ୍ଠା ଆରମ୍ଭି କହୁ ମାନବ ।୯।

କହୁଛି କଥା ଗୋଟିଏ     ଶୁଣନ୍ତୁ ନର ନାରୀଏ
ନିଗଳର ବୋହୁଟିଏ ବଡ ନଦୀକି
ତେଇଁଗଲା ଖସି ଭସି     ଋଷିକୁଲ୍ୟା ଜଳରାଶି
କଳ କଳ ନାଦେ ଆସି ଠେଲି ମାଇକି
ବିପରୀତ ପଟେ ଛାଡିଲା
ଯାଉଁ ଯାଉଁ ଜଳେ ରବି ବିମ୍ବ ଦେଖିଲା ।୧୦।

ପିନ୍ଧିବା ଲୁଗା ଅଣ୍ଟାର     ରହିଛି ହାତରେ ତାର
କରି ରବି ନମସ୍କାର ଧୀବର ଗଣ
ପୁରସ୍ତମପୁରବାସୀ     ଧରିବା ଲାଗି ପ୍ରୟାସୀ
ହୋଇ ନଦୀରେ ପ୍ରବେଶି ଜଣକୁ ଜଣ
ଡଙ୍ଗାଟିଏ ନେଇ ନିକଷା
ଧରିଥିଲେ କଉଶଳେ ତାକୁ ସହସା ।୧୧।

ତାଆଁକୁ ଗଲା ବାରତା ଜିପ୍ ଧରି ତା ଭରତା
ଯିବାରୁ ତା ବନିତା ଫେରିଲା ଧାମେ
ପଡ଼ିଲା ଏବେ ଚହଳ ଖେଳିଗଲା କୋଳାହଳ
ଆନନ୍ଦେ ହେଲେ ବିହ୍ୱଳ ହାଲିଆ ଶ୍ରମେ
ସ୍ତମ୍ଭୀଭୂତ ଲୋକ ନିଚୟ
ଚୌଦିଗେ ଦେଖନ୍ତି ସର୍ବେ ଈଶ୍ୱରମୟ ।୧୨।

ନୁହଁଇ କେ ଭବେ ଚିର ନିଖୁଣ ଥିଲା ଶରୀର
କାହିଁକି ମନ ଅସ୍ଥିର ହୁଏ ଲୋକର
କି ଘଟିବ କାଲି ଭବେ ଜାଣେ କେ ତହିଁରୁ ଲବେ
ସ୍ୱାର୍ଥରେ ବଶ ସରବେ ଲୀଳା ଭବର
ଶିଖିଲାକି କିଏ ତହିଁରୁ
କି ନେବ ସଙ୍ଗରେ ଗଲେ ମର୍ତ୍ତ୍ୟ ଭୂଇଁରୁ ।୧୩।

ଜୀବରେ ବଡ ବୋଲାଇ ମଣିଷ ଜନମ ପାଇ
ବିଚାର ଶକତି ଥାଇ କରେ ଅନୀତି
ସ୍ୱାର୍ଥରେ ସନ୍ତତ ମନ ନ କରି ଅନ୍ୟ ଭାବନ
କଲେହେଁ ସବୁ ଦର୍ଶନ ଦୁନିଆଁ ରୀତି
ଜଡ଼ଅଛି ମାୟା ମୋହରେ
ପାପ ପୁଣ୍ୟର ବିଚାର ନାହିଁ ହୃଦରେ ।୧୪।

ଜଗ ମାଦବସେ ଆସି ଯଉବନ କାନ୍ତ ନାଶି
ଅବୁଝା ମାନବ ରଶି ଝୁଲୁଛି ବଳ
ବିଧିର ଯେତେ ନିୟମ ଦେଖିଛି କେ ବ୍ୟତିକ୍ରମ
ଦିବସ ରଜନୀ ସମ ସଦା ନିର୍ମଳ
ଆଖି ଆଗେ ଦିଶୁଛି ନିତି
ଧିକରେ ମଣିଷ ରଖୁ ସ୍ୱାର୍ଥରେ ପ୍ରୀତି ।୧୫।

ଅସଂଯତ ଲୋକମନ ଆଶାର କ୍ରମ ବର୍ଦ୍ଧନ
କରୁଛି ଅବଲୋକନ ଆଜି ସଂସାରେ
ତୋଷାମଦ ପ୍ରିୟାପ୍ରୀତି ଚଳିଛି ଦେଶେ ସଂପ୍ରତି
ପୂର୍ବର ଆଦର୍ଶ ନୀତି ନାହିଁ କା'ଠାରେ
ଅହଂଭାବ ବ୍ୟାପି ସର୍ବତ୍ର
ବିନଷ୍ଟ ହେଉଛି କ୍ରମେ ଲୋକ ଚରିତ୍ର ।୧୬।

ପାଇଥିଲେ କେବେ ଯୋଗ
ରଖୁଥିଲେ ଦେବ ଭୋଗ
ନକରେ କେ ଅଭିଯୋଗ ତାର ଗନ୍ଧଣା
ମସଲା ମସଲି ନାହିଁ ତର୍କାରିକି ପାଣି ରହି
ଦେଉଛି ଗନ୍ଧବା ଭଇ ଅତି ଠିକଣା
ଦେବତାଙ୍କୁ ଦିଏ ଦେଖାଇ
ସେ ରନ୍ଧା ଖାଇଲେ ଯାଏ ରୋଗ ପଳାଇ ।୧୭।

x x x x x

ଓଲୋମ ବିଲୋମ ଦୁନିଆଁ ନୀତି
ମଣିଷ ଦୃଷ୍ଟିରେ ପଡୁଛି ନିତି
ନ ଭାବଇ କେହି ଆପେ ସେ କଥା
ପାସୋରି ଯାଇଛି ପୂର୍ବର ପ୍ରଥା
ସ୍ୱାର୍ଥରେ କେବଳ ମତି ଯେ
ଧନ ଅରଜିବା ଧନ ସାଇତିବା
ଜୀବିକା ହେଲା ସଂପ୍ରତି ।୧।

ସମୁଦ୍ର ଢେଉକୁ ଚାହଁ କିପରି
ଉଠୁଛି ପଡୁଛି ଗର୍ଜନ କରି
ଉଠାଣି ଗଡ଼ାଣି ବାଟେ ସେପରି
ବିଧାତା ଭିଆଣ ସଦା ଏପରି
କୋଟିପତି ଆଜି ଯାଏ
ଦାଣ୍ଡର ଭିକାରି ହେଉନାହିଁ କିରେ
କେତେ ଦିନ ପରେ ସିଏ ।୨।

ଧନ୍ୟ କଳିଯୁଗ ଧନ୍ୟ ମଣିଷ
ଅମୃତକୁ ଛାଡ଼ ପିଅନ୍ତି ବିଷ
ଚଳିଛି ଶାସନ ଧଗଧଗିରେ
ନ୍ୟାୟ ସତ୍ୟ ଯେତେ ଦଳି ପାଦରେ
ଧନ୍ୟ ଧନ୍ୟ ବୁଝାମଣା
ଅବାଟରେ ପଶି ଦୁନିଆଁ ରୀତିକି
କିଂଚିତ ନ ଭାବି ବଣା ।୩।

ନ୍ୟାୟ୍ ନିକିତିକି ହେବାରୁ ଘଡି
ପଡୁଅଛି ଖସି ହାତୁଁ କାହାରି

ଅନ୍ୟାୟ ନିକିତି ଉଶ୍ୱାସ ଅତି
ଜନ୍ମାଇ ବିଶ୍ୱାସ ମଂଥୁଛି ମତି
କି ହେଲା ଦୁନିଆଁ ରୀତି
ଧର୍ମ ଅଧର୍ମକୁ ନ କରି ଭାବନା
ଯାଇଛି ପାସୋରି ନୀତି ।୪।

ବସା କରେ ଆଶା ହୃଦେ ଯାହାର
ନ ପଶେ କାନରେ କଥା କାହାର
ବାଟ ବା ଅବାଟ ନପଡେ ଜଣା
ପଡୁଅଛି ଡେଇଁ ଦେଖିଲେ ଖଣା
ବାଟୋଇ ଧାଇଁଲା ପରି
ତୃଷାତୁର ହୋଇ ମୃଗତୃଷ୍ଣା ପଛେ
ହିଂସ୍ର ଜନ୍ତୁଙ୍କୁ ନ ଡରି ।୫।

ଅଛନ୍ତ ଏ ଭବେ କେତେ ଚତୁର
ଧନ ଲାଗି ଦିନ ରାତି ଆତୁର
ବିଧାତା ଭିଆଣ ନିରତ ଦେଖି
ନିଜ ମହତକୁ ସଦା ଉପେକ୍ଷି
ମନୁଁ ଛାଡ଼ ସଦାଚାର
ଦୁନିଆଁର ରୀତି ସବୁ ଦେଖି ନିତି
ନଆସେ ମନେ ବିଚାର ।୬।

ଆସିବା ଯିବାଟା ଲାଗିଛି ନିତି
ହସ ପଛେ କାନ୍ଦ ଦୁନିଆଁ ରୀତି
ଯେ ଯାହା ସ୍ୱାର୍ଥରେ ଜଡ଼ ସରବେ
ନ ଭାବଇ ଦିନେ କିଏ ସେ ଲଭେ
ଜଞ୍ଜାଳ ଭିତରେ ରହି
ଦୁର୍ଲ୍ଲଭ ଜୀବନ ଯାଉଅଛି ସରି
ବିବିଧ କଷଣ ସହି ।୭।

ହେବାରୁ ଅଦିନେ ମେଘ ବରଷା
ମୁଣ୍ଡେ ହାତ ଦେଇ ବସିଛି ଚଷା
ଏଣେ ଗଡ଼ା ହେଲା ଖଳାରେ ଧାନ
ଏଭଳି ସଂସାରେ ବିଧି ବିଧାନ
ଯେତେକ ଖଟ ଚଷାର
ଅଲୋଡ଼ା ବରଷା କଲା ସିନା କ୍ଷତି
ନାହିଁ କିଛି ଦୋଷ କାର ।୮।

ଲୋକେ କରୁଥିବା ଅନୀତି ମାନ
ଭେଟିବେ କି ନାହିଁ କର ସନ୍ଧାନ
ଦେଖୁଛ ଦାଣ୍ଡରେ ବୁଲେ ଭିକାରି
କହିବ କି କିଏ ମନେ ବିଚାରି
ଏ ଦଣ୍ଡ ଦେଉଛି କିଏ
ଦୁର୍ଲ୍ଲଭ ଶକତି ବିଚାରକୁ ପାଇ
ନ ଭବ କିମ୍ବା ଟିକିଏ ।୯।

ଅଲୋଡ଼ା ବରଷା ଲୁଣକୁ ଖାଇ
ନିର୍ଶ୍ଚିନ୍ତେ ବସିଲା ଆକାଶେ ଯାଇ
ଶାସକ ଉପରେ ପଡେ ଚଡକ
ପୁଣି ଶୁଭୁଅଛି ଲୋକ ଧମକ
କ୍ଷଣସ୍ଥାୟୀ ସବୁ ପର
ପାଇଗଲେ ଗତି ଯେପରି ଆକାଶେ
ନ ଦିଶେ ଗୋଟିଏ ତାରା ।୧୦।

ଗଛରୁ କୁସୁମ ପଡ଼ଲେ ଝଡ଼
ମିଳିଗଲା ସବୁ ମୂଳରେ ପଡ଼
ତଥା ଜନ୍ମ ମୃତ୍ୟୁ ଯିବା ଆସିବା
ତେଣୁ ମହରଗ ପନିପରିବା
ଲାଗିଛି ସଂସାରେ ନିତି
ସବୁ ଚିନ୍ତା କରି କହିଲେ କଥାଟି
ଆସଇ ମାନସେ ପ୍ରୀତି ।୧୧।

ନାନା ମସଲାରେ ଭରିତ ମୁଣ୍ଡ
କର ନାହିଁ କେବେ ଅଯଥା ତୁଣ୍ଡ
ଦେଇଛନ୍ତ ପ୍ରଭୁ ବୁଦ୍ଧି ବିଚାର
ଆପେ ଆପେ ଲୋକ ଶିଖୁ ଆଚାର
କେତେ ଦିନ ପାଇଁ ଭବେ
ନଚିନ୍ତଲେ କେହି ବେଳ ଥାଉଁ ଥାଉଁ
ନ ମିଳିବ ସୁଖ ଲବେ ।୧୨।

କାହିଁ ରାମାୟଣ ମହାଭାରତ
ହେଉଥିଲା ବୋଲା ଅନବରତ
ଶୁଣି ଭାଗବତ ମଝି ଦାଣ୍ଡରେ
ଚାଲିଥିଲା ଚର୍ଚ୍ଚା କି ଆନନ୍ଦରେ
ସେ ଦିନ ଯାଇଛି ଆଜି
ଏକତା ଅଭାବ ପୁଣି ଧର୍ମାଭାବ
ଦେଶକୁ କରିଛି ପାଜି ।୧୩।

ମଦ ଠାରୁ ବଳି ନିଶା ସ୍ୱାର୍ଥର
ସେ ନିଶା ପିଇଲେ ଆପଣା ପର
ବୁଝିବ ଶକତି ଥିବା ଲୋକର
ପାଉଛି କଷଣ ଥରକୁ ଥର
ଭାବନା ଶକ୍ତି ଅଭାବ
ଅହଂଭାବ ଆଜି ଘୋଡାଇ ଦେଇଛି
ଚିତ୍ତ ଉତ୍ତମ ସ୍ୱଭାବ ।୧୪।

ଦିନକୁ ଦିଅଣା ମଜୁରୀ ପାଇ
ଚଳୁଥିଲା ସୁଖେ ମୂଲିଆ ଭାଇ
ନଥିଲା କନ୍ଦଳ ନଥିଲା ଗୋଳ
ଅସାର ଚିନ୍ତାରେ ନହୋଇ ଭୋଳ
ଯାଉଥିଲା ସୁଖେ କାଳ
ପରସ୍ପର ମଧ୍ୟେ ରହିଥିଲା ସ୍ନେହ
ନଥିଲା ଏତେ ଜଞ୍ଜାଳ ।୧୫।

ଯେତିକି ପାଠୁଆ ହେଲା ମଣିଷ
ପୂରାଇଲା ସେତେ ଠକାମି ବିଷ
ଦେଲେ ପୋଡ଼ ଜାଳି ପୁରାଣମାନ
ପାଶ୍ଚାତ୍ୟ ଢାଞ୍ଚାକୁ ଦେଲେ ସମ୍ମାନ
ନ ରହିଲା ସରଳତା
ନୂଆଁ ଯୁଗ ବୋଲି ହେଉଛନ୍ତି ଢେକି
ହୃଦେ ପୋଷି କପଟତା ।୧୬।

ବିଦେଶୀ ପାଠକୁ ଶାଠ ବିଦେଶୀ
ମଣ୍ଡାକୁ ତୁଣ୍ଡରେ ଦେଲେଣି ଲେଷି
ପାନ ସିଗାରରେ ବଡ ଆଦର
ଛାଡୁଛନ୍ତି ଧୂଆଁ ଥରକୁ ଥର
କୁକୁଡା ପକ୍ଷୀରେ ମନ
ଲାଗିଗଲା ପର ନୂଆଁ ସଭ୍ୟତାରେ
ନ୍ୟାୟକୁ କରି ବର୍ଜନ ।୧୭।

ସ୍ୱାର୍ଥକୁ ଜୀବିକା କରି କେତେକ
ବୁଡାଇ ଦେଲେଣି ଗରିବ ଭେକ
ଧର୍ମକୁ ଆଡେଇ ଧନ ଅର୍ଜନେ
ପେଷିଲେ ଅନିଶ ପାପାଶାମାନେ
ଏହିପର କଳିଯୁଗ
ଦାନ, ଧର୍ମ, ନ୍ୟାୟ ସତ୍ୟ ଅହିଂସାକୁ
ବର୍ଜନ୍ତି ମାନବ ପୂଗ (ସମୂହ) ।୧୮।

ଶାସନେ ଅନ୍ୟାୟ ଆମୂଳଚୂଳ
ପାଇବକି କେହି ଥଳ ବା କୂଳ
ଯା କାନେ ନପଶେ ମରଣ ରଡ
ନିତି ଦାଣ୍ଡେ ଶୁଣି ଘଡକି ଘଡ
ସେ କାହୁଁ ଜାଣିବ ନ୍ୟାୟ
ଇଚ୍ଛା ରଖି ଏଣେ ଟାଣିଲେ ମନକୁ
ଦିଶିବ ଆପେ ଉପାୟ ।୧୯।

ବିଧାତା ବିଧାନ ରହସ୍ୟମୟ
ଏଥିପ୍ରତି କା'ର ଅଛିକି ଲୟ
ନ ବିଚାରି କିଏ ନୀତି ଅନୀତି
ଧନ ଧନ ବୋଲି ସନ୍ତତ ପ୍ରୀତି
ଭାବିବାକୁ ନାହିଁ ବେଳ
ପ୍ରବୃତ୍ତି ନିବୃତ୍ତି ପ୍ରଭେଦ ଜାଣିଲେ
ବୁଝିବ ସଂସାର ଖେଳ ।୨୦।

ଲାଗିଅଛି ଧାଡ ଜନ୍ମ ମରଣ
ଦେଖୁଛି ମଣିଷ କ୍ଷଣକୁ କ୍ଷଣ
ବୁଝିଲାକି ପଦେ କେବେ ତହିଁରୁ
ଛାଡ ପଳେଇଲେ ଭବ ଭୂଇଁରୁ

କିଏ ସେ ଥିବ ସଙ୍ଗରେ
ବେଳ ଥାଉଁ ଥାଉଁ ନଖବି ଏତିକି
ହେଉଛି ଧନ ମୋହରେ ।୨୧।

ଦେଖୁଛୁ ଫଳୁଛି ସେହି ଫଳଟି
ଲଗାଇବା ଫଳ ଉଠି ଗଛଟି
ତେଣୁରେ ମଣିଷ ତୋ କର୍ମ ଯେତେ
ଫଳିବ ଅବଶ୍ୟ ସେ ଫଳ ସେତେ
ବିଚାର ପାପ ପୁଣ୍ୟର
ନକଲେ ଭୋଗିବୁ ଅନ୍ୟ ଜନ୍ମ ପରେ
ବୁଝୁଛିକି ତୋ ଅନ୍ତର ।୨୨।

ଯେ ପଶୁଛି ଖାଇ ଅଣବାଟରେ
ପଡୁଛି ଅବଶ୍ୟ ସେହି ଖାଲରେ
ତୋର ଅନ୍ତରାତ୍ମା ତୋହର ସାକ୍ଷୀ
ଥାଉ ତୋ ମନଟି ତହିଁରେ ଲାଖି
ପାଇବୁ ଜୀବନେ ସୁଖ
ପର ବୋଲେ ପଡ କରିଲେ କରମ
ଭୋଗିବୁ ଜୀବନେ ଦୁଃଖ ।୨୩।

ନିର୍ମଳ ନଥିଲେ ନିଜ ଅନ୍ତର
ଖାଇବୁ କଚଡା ଥରକୁ ଥର
ତୋର ଅସମୟେ କେ ତୋର ସାହା
ବିଚାରିବୁ ଅନବରତ ତାହା
ଶ୍ରେଷ୍ଠ ଜୀବନକୁ ପାଇ
ପଶୁପରି ଆଚ- ରଣ କରୁଥିଲେ
ଲଭିବୁକି କେବେ ତ୍ରାହି ।୨୪।

ଧିକରେ ମଣିଷ ବୁଦ୍ଧି ତୋହର
କରିବୁ କି କେବେ ଶୁଦ୍ଧି ଅନ୍ତର
ଅସତ୍ୟ ଅନିତ୍ୟ ବିଷୟେ ମାତି
ରହିଅଛୁ ମର୍ତ୍ତ୍ୟ ଦିବସ ରାତି
ଅବିରତ ସୃଷ୍ଟି ରୀତି
ଦେଖି ଦେଖି ଆହା ପଶି ଅଣ ବାଟେ
ଗଲା ତୋ ଜୀବନ ବିତି ।୨୫।

ଭସିଯିବୁ ନାହିଁ ସ୍ୱାର୍ଥ ଜଳରେ
ଡୁବାଇ ଦେବ ସେ ଅଧା ବାଟରେ
କେତେ ଦିନ ପାଇଁ ଆସିଛୁ ଭବେ
କରିଛୁକି ଚିନ୍ତା ଜୀବନେ ଲବେ ?
ଆସିଛୁ ଖାଲି ହାତରେ
ପିନ୍ଧିବା ଖଣ୍ଡକ ଯିବକି ସଙ୍ଗରେ
ରଖିଥା ହେତୁ ମନରେ ।୨୬।

ଦେଖାଇ ଅଛନ୍ତି ପରମେଶ୍ୱର
ଉଠାଣି ଗଡାଣି ସ୍ଥଳ ଭାଗର
ପୁଣି ଜଳ ଭରେ ସିଂଧୁ ମଧ୍ୟରେ
ପଡେ ଉଠେ ଢେଉ କେତେ ବେଗରେ
ଅବିରାମ ଏ ନୟନ
ଦେଖିଲେ ହେଁ ପୁଣି ନ ବିଚାରି କିଛି
ସ୍ୱାର୍ଥକୁ ଯାଉଛି ମନ ।୨୭।

x x x x x

ସଦା ଦେଶ ପ୍ରୀତି ରଖି ମନରେ
କରିଯାଅ କର୍ମ ନିରଳସରେ ।୧।
ସ୍ୱାର୍ଥ ଆଶା କେବେ ନ ରଖ ଚିତ୍ତେ
ଚିନ୍ତା କର କେହି ଅଛିକି ବିତ୍ତେ ।୨।
ପାତର ଅନ୍ତର କଲେ ବେଧର
କଟାଇବ ଦିନ ଶେଷେ ଦୁଃଖରେ ।୩।
ବିବେକ ଡାକକୁ ଶୁଣ ସନ୍ତତ
କରିବ କରମ ଜଗି ମହତ ।୪।
ଓଲେମ ବିଲେମ ସଂସାର ରୀତି
ଶୁଣ ନାହିଁ ନିନ୍ଦା କରି ଅନୀତି ।୫।
ଅଢେଇ ଦିନକୁ ଏ ବସାଘର
ରଖ ନାହିଁ ଭେଦ ଆପଣା ପର ।୬।
ନୂଆଁ ସଭ୍ୟତାକୁ ନୂଆଁ ସମାଜ
ଦେଖାନ୍ତୁ ସରବେ ନ ବହି ଲାଜ ।୭।
କିଏ ସେ ଶିକାର ନ ହେବ ଭବେ
ନ ପାଉଛି କିଏ ଜୀବନେ ଲବେ ।୮।

ଛାଡ଼ୁ ନାହିଁ ଲୋଭ ମରିବା ଯାଏଁ
ଧନ ପ୍ରାପ୍ତି ପାଇଁ ନିରତ ଧାଏଁ ।୯।

କିଏ ନ ଜାଣୁଛି ଯିବା ଆସିବା
କାହାର ହାତରେ କିଛି ନଥିବା ।୧୦।

ଚଳୁଥିବା ନିତି ନ୍ୟାୟ ଅୟନେ
ଦୀନ ସେବା କରି ସାର ଜୀବନେ ।୧୧।

ପରମେଶ ଲୀଳା ବିଚିତ୍ର ଅତି
ବୁଝି ପାରିବେ କି ମାନବ ତତି ।୧୨।

ଲାଗି ରହୁଅଛି ଯେତେ ବିପତ୍ତି
ଭବିଲ କି ଦିନେ କାହାର ମତି ।୧୩।

କ୍ଷମତା ସ୍ୱାର୍ଥର ଫାନ୍ଦରେ ପଡ଼
ଚଳିଛି ବିଶ୍ୱର ଘଡ଼କି ଘଡ଼ ।୧୪।

ବଢ଼ୁଛି ଅକର୍ମ ଚଉଦିଗରେ
ଜାଣି ଜାଣି ତୁନି ହୁଅନ୍ତ ନରେ ।୧୫।

ଅବାସ୍ତବେ ନାନା ଯୁକତି କରି
କେ ଲଭେ ଆନନ୍ଦ ପାପ ଆଚରି ।୧୬।

ରଖିବାକୁ ସଦା ଆପଣା ଟେକ
ହରାଇ ବସନ୍ତ ନିଜ ବିବେକ ।୧୭।

ବିଶ୍ୱର ଶକତି ଦଳି ପାଦରେ
ଲଭ ଛାଡ଼ିବାକୁ କୁଣ୍ଠା ମନରେ ।୧୮।

ଏ ଅପୂର୍ବ ଶକ୍ତି ମଣିଷ ଛଡ଼ା
ଅଛି କି କାହାର ଯେ ହୁଏ ଗଢ଼ା ।୧୯।

କ୍ଷମତା ପଛରେ ଧାଉଁଛି ସ୍ୱାର୍ଥ
ନେବା ଲାଗି ଇଚ୍ଛା ପର ପଦାର୍ଥ ।୨୦।

ଯେତେ ମିଳିଲେ ହେଁ ବଢ଼ୁଛି ଆଶା
ବର୍ଣ୍ଣିବାକୁ ଏଣେ ନ ଦିଶେ ଭଷା ।୨୧।

⊙ ⊙ ⊙

କଂଟ୍ରୋଲକୁ କରି ଜାରି
ଖାଉଛନ୍ତ ଲଭ କଳା ବେପାରୀ
କଳା ପିକରେ,
ଶୁଣିବ କେ ତୋ ଗୁହାରି ।୧।

କେତେ ହେଲା ଘୃଣା ଦର
ଅଛିକି ନାକରେ ଦଣ୍ଡି ତୋହର
କଳା ପିକରେ,
ମହତ୍ତ୍ୱକୁ ଲାଗେ ଡର ।୨।

ନପାଇ ଟିକିଏ ତେଲ
କରୁଥାଆ ବସି ପିଲାକୁ ଗେଲ
କଳା ପିକରେ,
କହିଲେ ଭେଟିବୁ ଜେଲ ।୩।

ଆମେ ଜୀଉଁ ଅଟା ମରୁ
ହଜାର ହଜାର ଗଳାଣି ଘରୁ
କଳା ପିକରେ,
କାହିଁକି ତୁ ଏତେ ଡରୁ ।୪।

ପଡ଼ କ୍ଷମତା ମୋହରେ
ଚଳିଛି ଶାସନ ଗୁଳି ମୁନରେ
କଳା ପିକରେ,
କି ହେଲା ହିଂଦୁ ଦେଶରେ ।୫।

ଅହିଂସା ଯାହାର ମନ୍ତ୍ର
ଲିଭଇ ଦେଲା କି ଏ ଗଣତନ୍ତ୍ର
କଳା ପିକରେ,
ଚଳିଅଛି ସଦା ତନ୍ତ୍ର ।୬।

ଚଉଳ ଡାଲି ପିଢ଼ଆ
ତା ସଙ୍ଗେ ମିଶିଲା କାଠ ନଡ଼ଆ
କଳା ପିକରେ,
କଳା ବେପାରୀ ବଢ଼ଆ ।୭।

ପୂରୁଣା ସଭ୍ୟଙ୍କ ଭତ୍ତା
ଯଥାର୍ଥକି ଦେବା କହୁ ଜନତା
କଳା ପିକରେ,
ଖଂପିଲା ଆମର ଅଣ୍ଟା ।୮।

ଆମ ଠିକାଦାର ଧଇ
ଗୋଟିକୁ କୋଡ଼ିଏ ବାଲି ମିଶାଇ
କଳା ପିକରେ,
କରନ୍ତ କାମ ସଜାଇ ।୯।

ପଇସା ଧରି ହାତରେ
ଓଲଟ ନକଲେ ଭୋଟ ବେଳରେ
କଳା ପିକରେ,
ଭୋଗିବୁ ଦୁଃଖ ଶେଷରେ ।୧୦।

ଲକ୍ଷ ଲକ୍ଷ ଯାଏ ସରି
ଗରିବ ଟିକସ ଦେଉଛି ମରି
କଳା ପିକରେ,
ରହିବାକି ଆଉ ଡରି ।୧୧।

ବ୍ୟବହାର୍ଯ୍ୟ ଦ୍ରବ୍ୟ ଯାହା
ଗୁଣକୁ ଚଉଗୁଣ ହେଲଣି ତାହା
କଳା ପିକରେ,
ଭୋଟ ହେବ ତୋର ସାହା ।୧୨।

ବନ୍ଧୁ ବାନ୍ଧବ ଭିତରେ
ଚଳିଛି ଶାସନ ଗୁଳି ମୁନରେ
କଳା ପିକରେ,
କହିଲେ ଠେଙ୍ଗା ମୁଣ୍ଡରେ ।୧୩।

ଗଣତନ୍ତ୍ର ବୋଲି ଭୁରି
ଟଙ୍କା ଡ଼ନ୍ତ ମାରି ପଛରୁ ଚୁରୀ
କଳା ପିକରେ,
ଦେଖାଉଛି ବାହାଦୁରୀ ।୧୪।

ଲାଞ୍ଚ ମିଛ କାରବାର
ବଢ଼ିଛିକି ନାହିଁ କର ବିଚାର
କଳା ପିକରେ,
ଗୁଣ୍ଡାମିରେ ନାରଖାର ।୧୫।

ଅଛିକି ଗାନ୍ଧୀ କଂଗ୍ରେସ
ଯହିଁରେ ନଥିଲା କାଳିମା ଲେଶ
କଳା ପିକରେ,
କି ହେଲା ସୁନାର ଦେଶ ।୧୬।

ଖଇକି ମାରୁଛି ଖଇ
ରହିବାକୁ ଆଇ ରହୁଡ଼ା ଖାଇ
କଳା ପିକରେ,
ଆମ ହାତେ ଭୋଟ ଥାଇ ।୧୭।

ପାଠୁଆଙ୍କ ବୁଝାମଣା
ଶୁଣି ଶୁଣି ଆମେ ହେଲୁଣି ବଣା
କଳା ପିକରେ,
ଦେବା ଜବାବ ଠିକଣା ।୧୮।

କେତେ ଛାତ୍ର ଗଲେ ମରି
କେ ଦେଲା ରିପୋର୍ଟ ତଦନ୍ତ କରି
କଳା ପିକରେ,
ଚାଲିଅଛି ଧରଧରି ।୧୯।

ପଦ କ୍ଷମତା ମୋହରେ
ଯେତେ ପାପ ପୁଣ୍ୟ କର ଦିନରେ
କଳା ପିକରେ,
ଲେଖିବ ବସି ଘରରେ ।୨୦।

ଗ୍ରାମେ ଗ୍ରାମେ ଧୂମପାନ
ବଢ଼ିଛିକି ନାହିଁ କର ସନ୍ଧାନ
କଳା ପିକରେ,
ଲୋକ ଆଜି ହୀନିମାନ ।୨୧।

ହେବାକୁ ସୁନା ବାରଣ
ଚଳିଲା ପ୍ରଚାର ନିଶି ଦିବସ
କଳା ପିକରେ,
ବଢ଼ାରେ ଆଜି କେତେଶ ।୨୨।

ସାଧୁଏ ଦେଖି ଏ କଥା
ଲାଜେ ନୁଆଁଇଲେ ତଳକୁ ମଥା
କଳା ପିକରେ,
ଅଛିକି ଦେଶେ ଏକତା ।୨୩।

ପଇସାର ବଡ଼ପଣ
ଦେଖାଇ ଦୁଅନ୍ତ ମାଲିକ ଗଣ
କଳା ପିକରେ,
ଏକତା ଭଂଗିବ ଟାଣ ।୨୪।

ଶାସନକୁ ଗଲେ ପୁଣି
ସଭ ସୁବିଧାରେ ଦେବେରେ ଝୁଣି
କଳା ପିକରେ,
ଚଳିବୁ ମୋ କଥା ଶୁଣି ।୨୫।

ନାରୀ ଧର୍ଷଣ ସାଙ୍ଗକୁ
ଛାତ୍ର ହତ୍ୟା ଥିବ ଯୁଗ ଯୁଗକୁ
କଳା ପିକରେ,
କଳଙ୍କ ଇତିହାସକୁ ।୨୬।

ଲାଞ୍ଚ ଦେଲେ ଢିଟା ପଟ
ପଇସାକୁ ଧରି କର ଓଲଟ
କଳା ପିକରେ,
ମହରଗେ ଛଟପଟ ।୨୭।

ବିଚିତ୍ର ଭୋଟ ବେଉର
ମାରିବୁ ମୋହର କରି ବିଚାର
କଳା ପିକରେ,
ନ ପଡ ବୋଲେ କାହାର ।୨୮।

ଦେଖିବୁ ଗାଆଁ ଭିତରେ
ପାଣି ମଦେ ପାଇଁ ଲୋତକ ଝରେ
କଳା ପିକରେ,
ଲେଖା ଯାହା କପାଳରେ ।୨୯।

ଫୁଲଣିଆ କଥାମାନ
ଶୁଣିବୁ ଦାଣ୍ଡରେ ଡେରିଲେ କାନ
କଳା ପିକରେ,
ହେଲୁଣିକି ହୀନିମାନ ।୩୦।

ମାମୁଁ ଭଣଜା ବେଧର
ଶୁଣିବୁ ଯୁଗଣେ ବାରକୁ ବାର
କଳା ପିକରେ,
ଅନ୍ୟାୟ ଲାଗି ସଂହାର ।୩୧।

ବଣ ସବୁ ପଦା କରି
ବୋହୁଛନ୍ତ ଲୋକେ ମନ୍ତ୍ରୀକି ଧରି
କଳା ପିକରେ,
ତୋଳିବୁ ଘର କିପରି ।୩୨।

ହେଲୁକି ତୁ ଏବେ କାଲ
ନାରୀ ଧର୍ଷଣର ଲାଗିଛି ପାଲ
କଳା ପିକରେ,
ପକାଇଥା କାନେ ତାଲ ।୩୩।

କି କହିବି ଏବ ରୀତି
ଶୋଷଣ ମାରଣ ଧର୍ଷଣ ନୀତି
କଳା ପିକରେ,
ନ ରଖିବୁ ମନେ ପ୍ରୀତି ।୩୪।

ଲାଞ୍ଚ ମିଛ ଗଲ ବଢ
ଗରିବ ବାପୁଡା ପିନ୍ଧୁଛି ଧଡ
କଳା ପିକରେ,
କେ ହଲାଏ ହାତେ ଘଡ ।୩୫।

ଡାଲିଆଟି କାରବାର
ଅଛିକି ନମ୍ବର ନୂଆଁ ମୁଦ୍ରାର
କଳା ପିକରେ,
ଦେଖି କରନ୍ତୁ ବିଚାର ।୩୬।

କୋରିଆ ଦେଶେ ତିଆରି
ହେଉଛି କାହିଁକି କହ ବିଚାରି
କଳା ପିକରେ,
ଯାଉଛି ମୂଲ ବାହାରି ।୩୭।

ଦେଶର ଅବସ୍ଥା ଯାହା
କବି ଲୋକନାଥ ଲେଖିଲେ ତାହା
କଳା ପିକରେ,
ସାକ୍ଷୀ କରି ଚଉବାହା ।୩୮।

ବିଚିତ୍ର ଏ ରାଜନୀତି
ଶୁଣିଲେ ଦେଖିଲେ ଲାଗୁଛି ଭୀତି
କଳା ପିକରେ,
କି ହେଲା ଦେଶର ରୀତି ।୩୯।

ସ୍ୱାଧୀନତା ସଂଗ୍ରାମର
ନ ଜାଣି କେତେକ 'ସ' ଅକ୍ଷର
କଳା ପିକରେ,
ରଣାଙ୍ଗନେ ଆଗଭର ।୪୦।

କ୍ଷମତାରେ ହୋଇ ବଶ
ଶାସନେ ପ୍ରବେଶି କଲେଣି ଧ୍ୱଂସ
କଳା ପିକରେ,
ପ୍ରକୃତି ଯାର ତାମସ ।୪୧।

ଚଳିଛି କେତେ ବିଚାର
ନ ଭାବି ଦେଶର ଭଣ ଦେଖାର
କଳା ପିକରେ,
କେବଳ ବଶ ଆଶାର ।୪୨।

ଗାନ୍ଧିଜୀଙ୍କ ଅଶ୍ରୁଧାର
ପଡୁଛି ଦେଶରେ ବାରକୁ ବାର
କଳା ପିକରେ,
ତେଣୁ ଲୋକେ ନାରଖାର ।୪୩।

ନମାନି ଗାନ୍ଧୀ ବଚନ
ଇଚ୍ଛା ଅନୁସାରେ ଚଳେ ଶାସନ
କଳା ପିକରେ,
ଗରିବ ହେଲା ଉଚ୍ଛନ୍ନ ।୪୪।

ମଦ ଘଟି ଗାଆଁ ଗାଆଁ
ବୁଲିଗଲେ ଥରେ ହେବୁ ଛାନିଆଁ
କଳା ପିକରେ,
କି ହେଲା ଆଜି ଦୁନିଆଁ ।୪୫।

୦ ୦ ୦

## ମଦ

ବିକ୍ରେତା ହେଉଛି ଧନୀ, ମଣିଷ ଉଚ୍ଛନ୍ନ,
ମଦ ପିଇ ସରିଯାଏ ଯେତେ ଉପାର୍ଜନ ।

କାହିଁକି ଏହି ଅଭ୍ୟାସ କମିଯାଏ ଆୟୁ,
କେତେବେଳେ ଉଡ଼ଯାଏ କା'ର ପ୍ରାଣବାୟୁ ।

ଉଚ୍ଚ କୁଳେ ଜନ୍ମ ପାଇ ହୁଅନ୍ତି ନୀଚର,
ମଦ ପାଣି ପିଇଦେଲେ କି ସୁଖ ଲୋକର ।

କୁଟୁମ୍ବରେ ଗଣ୍ଡଗୋଳ, ମଦୁଆ ଦାଣ୍ଡରେ,
ନୁହଁକିରେ ଅପମାନ ଜୀବନ କାଳରେ ।

କିଏ କେତେ ନିନ୍ଦା କରେ ତୋହର ପଛରେ,
ଦିନେ ହେଲେ ପଡ଼ଥିବ ଅବଶ୍ୟ କାନରେ ।

ଏବେ ଅଳଙ୍କୁଳ ହେଲୁ, ନାରୀଠାରୁ ହୀନ,
ଶୁଣି ନିନ୍ଦା, ଅପମାନେ ଯାଉଅଛୁ ଦିନ ।

ଦେଇଛନ୍ତି ପରମେଶ ବିଚାର ଶକତି,
ଅକର୍ମେ ପଶି କେବେ କି ପାଇବୁ ମୁକତି ।

ପ୍ରାଣୀ ମାତ୍ରେ ପାଉଛନ୍ତି ଜୀବନ ମରଣ,
ଏଣୁ ପୋକର ରହସ୍ୟ କଲୁ କି ସ୍ମରଣ ।

ସୃଷ୍ଟି କାଳରୁ ରହିଛି ଭଲ ମନ୍ଦ ବାଣୀ,
ରହୁଅଛୁ ପଶୁପରି ସବୁ ଜାଣି ଜାଣି ।

ଧିକ ଧିକ ତୋ ଜନମ ଧିକ୍ ତୋ ଜୀବନ,
ପଶୁପରି ଆଚରଣ ନ କଲୁ ଚିନ୍ତନ ।

ମଣିଷ ଜନମ ପାଇ ମଣିଷର କର୍ମ,
କଲେ ସିନା ରହିଥିବ ପାଖେ ତୋର ଧର୍ମ ।

ଅବାଟେ ପଶିଲେ ଥୁଆ
ହେଉଅଛି ଦଣ୍ଡ (ଈଶ୍ୱର),
ବୁଝିବ କି କେତେବେଳେ
ଜଗତେ ପାଷଣ୍ଡ (ନାସ୍ତିକ) ।

ବିଂଶ ସାଲୁ ମଦ ଦେଶୁଁ ଉଠାଇବା ପାଇଁ,
କାଗଜେ ରହିଲା ସିନା ଉଠାଗଲା ନାହିଁ ।

ସାହି ସାହି ମଦ ବିକା ଚଳିଛି ଦେଶରେ,
ଗାନ୍ଧିଜୀଙ୍କ ପରାମର୍ଶ ଅଛି ପୁସ୍ତକରେ ।

ମାଗୁ ଭିକ ଅବା ଯେତେ ମଣିଷ ଦେଶର,
କହିଛନ୍ତି 'ମଦ ଉଠୁ' ବୋଲି ବାରମ୍ବାର ।

ରହୁଁ ରହୁଁ ଗଲା ବିତି ସତୁରି ବରଷ,
ସେ ବିଷୟ ଟେକୁ ନାହିଁ କାହାର ମାନସ ।

ଦେଶର ମଙ୍ଗଳ ପାଇଁ ଚିନ୍ତା ଥିଲେ କାର,
ବହୁଦିନୁ ଉଠିଥାନ୍ତା ମଦ କାରବାର ।

ଶାସକ ମଦ୍ୟପି ହେଲେ ଶାସିତର କ୍ଳେଶ,
ଏ କଥା କାହାର ମନେ ପଶୁନାହିଁ ଲେଶ ।

ହଜାର ହଜାର ପ୍ରାଣ ଯାଉଛି ବୃଥାରେ,
କୋଟି କୋଟି ଟଙ୍କା କ୍ଷତି ବସ୍ ଚଳନାରେ ।

କେତେ ଟଙ୍କା ଆସୁଅଛି ମଦ ନିଲାମରେ,
କେତେ ଟଙ୍କା କ୍ଷତି ଏଣେ ବସ୍ ଚଳନାରେ ।

ଏ ହିସାବ କରୁଥିଲେ ଶାସକ ଦେଶର,
ବହୁକାଳୁଁ ଉଠିଥାନ୍ତା ମଦ କାରବାର ।
ନ ଜାଣି ଘୋଟକ ଚଢ଼ ଧଇଲେ ଲଗାମ,
ଆରୋହୀର ମୃତ୍ୟୁ ସିନା ତାର ପରିଣାମ ।

x x x x x

ଭଗବାନ ନାମ କରି କୀର୍ତ୍ତନ
ବଳ ଥାଉ ଥାଉ ପାଉ ଜୀବନ
ନେବା ପାଇଁ ଲୋକ ସଦା ତତ୍ପର
ଦେବା ପାଇଁ ଭବେ କେ ଆଗଭର ?
ବିଚିତ୍ର ସଂସାର ରୀତି
ଦେଖି ଦେଖି ପୁଣି ଭବି ଭବି ମନେ
ଆସୁଛି ନିରତ ଭୀତି ।
ଉପକାର ପାଇ ଅପକାରରେ
ନିରନ୍ତର ଆଶା ପୋଷି ମନରେ
ହୁଅନ୍ତ କୃତଘ୍ନ ଛାଡ଼ଣ ଲାଜ
ଧନ୍ୟ ଧନ୍ୟ ଧନ୍ୟ ନବ୍ୟ ସମାଜ
ଭୁଲି ଅତୀତର କଥା
ନ୍ୟାୟକୁ ବରଜି ଅନ୍ୟାୟେ ପଶନ୍ତ
ଲିଭିଛି ଏ ଦେଶ ପ୍ରଥା ଯେ ।
କିଏ ଜାଣୁଅଛି କେଉଁ ମୁହୂର୍ତ୍ତରେ
କାହାର ପ୍ରାଣବାୟୁ ଯିବରେ ଉଡ଼
ଥଳୀ ଥଳୀ ଟଙ୍କା ଅଜାଡ଼ିଲେ ଅବା
ଆସୁଛି କି କିଏ ଆଉ ବାହୁଡ଼ ?
ପଶୁ ପକ୍ଷୀ ଅବା କୀଟ ଜନ୍ମ ପାଇ
କିଏ କେଉଁଆଡ଼େ ପଳୁଛି ଯାଇ
ଶ୍ରେଷ୍ଠ ଜୀବନଟି ହେଉଛି ଅସାର
ସଂସାର ରହସ୍ୟ ନ ବୁଝି ଭଇ !
ହାତରେ ନଥାଏ ଅଣ୍ଟାରେ ନଥାଏ
ଅରଜିବା ଧନ ପାହୁଲଟିଏ
ତେବେ କାହାପାଇଁ ପାପାଶାରେ ଧାଇଁ
ନିନ୍ଦା ଶୁଣୁଛନ୍ତ ନରନାରୀଏ ?

ପ୍ରଭୁହେ ! ବିଚିତ୍ର ତୁମର ସୃଜନ
ଏ ଘଡ଼ର କଥା ସେ ଘଡ଼କି ନାହିଁ
କଳ୍ପିକି କିଏ ସେ ଚିନ୍ତନ । (ଘୋଷା)
ନଡ଼ିଆ ଭିତରେ ପାଣିକି ଠିଆରି
ତାପରେ ସୃଜନ ଧବଳ ରସ
ପଣସ ଭିତରେ ମଂଜିଟି ଉପରେ
ଦେଇଛ ଘୋଡ଼ାଇ ହଳଦି କସ
ପ୍ରଭୁହେ ! ଏହିପରି ଏହିପରି
ଦେଖୁଅଛି ନିତି ସାରା ଧରା
ପ୍ରଭୁହେ ! ନୁହଁକି ବିଚିତ୍ର ସୃଜନ ?
ବିବେକକୁ ଛାଡ଼ ସ୍ୱାର୍ଥର ପଛରେ
ମଣିଷର ଦେଖ ଧାବନ ।

୦ ୦ ୦

## ନଡ଼ିଆ ଗଛ

ଶାଖାହୀନ ସିନା ନଡ଼ିଆ ତରୁ
ଗଣ୍ଡି ମୋଟ ହୋଇ ଅଗଟି ସରୁ ।
ଦୀର୍ଘ ପତ୍ର ଯୁକ୍ତ ବାହୁଙ୍କା ସାନ
ଜାଳେଣି କାଠକୁ ତା ପ୍ରୟୋଜନ ।
ପତ୍ରରୁ ଖଡ଼କା କରି ବାହାର
ଭଡ଼ା ଭଡ଼ି ଲାଗି ତା ବ୍ୟବହାର ।
ବାୟା ଚଢ଼େଇଟି ହେଲେହେଁ ସାନ
ପ୍ରଭୁଙ୍କ ନାମକୁ କରିଣ ଗାନ ।
ନଡ଼ିଆ ପତର ଚିରି ଅଣ୍ଡରେ
ବାନ୍ଧୁଅଛି ବସା କଉଶଳରେ ।
ବର୍ଷା ପବନକୁ ନାହିଁ ଖାତର
ପୂର୍ବ ତପସ୍ୟାରୁ ପାଇଛି ବର ।
କେଶର ଭିତରୁ ଫୁଟିଇ ଫୁଲ
କେଉଁ ଗଛ ହେବ ତା ସଙ୍ଗେ ତୁଲ ।
କ୍ରମେ ହେଉଅଛି ଗୋଟମା କସି
କେବେ କେବେ କିଛି ପଡ଼ଇ ଖସି ।

ବଡ ହେଲେ ତାକୁ ବୋଲୁ ପଇଡ
ମାତ୍ର ନୁହଇ ତା ବଂଶ କରିଡ ।
ରହିଛି ଭିତରେ ବିଶୁଦ୍ଧ ଜଳ
ବହୁ ରୋଗୀଙ୍କର ହୁଏ ସମ୍ବଳ ।
ସେ ଜଳରୁ ପୁଣି ସୁସ୍ୱାଦୁ ରସ
ହେଉଛି ଉତ୍ପନ୍ନ ତୋଷେ ମାନସ ।
ବିଚିତ୍ର ସୃଜନ ବିଚିତ୍ର ସୃଷ୍ଟି
ଏଥିପ୍ରତି ପଡୁ ଲୋକର ଦୃଷ୍ଟି ।
ସବୁ ଗଛଠାରୁ ଉଚ୍ଚେ ଅଧିକ
ଏ ଗଛର ଗୁଣ ବୁଝ ନାସ୍ତିକ ।
ତୁଚ୍ଛାକୁ ଦେଖାନ୍ତ ଲୋକେ ଗରିମା
ନ ଜାଣି ନ ଭାବି ଈଶ ମହିମା ।

⊙ ⊙ ⊙

## ଦେଶ ଚିନ୍ତା

ଆସିଅଛୁ ଖାଲି ପାଣିରେ (ହାତରେ)
ହସୁଛନ୍ତି ପିଲେ ଖୁସିରେ ।
ଫେରୁଅଛୁ ଶୂନ୍ୟ କରରେ,
ଝରୁଛି ଲୋତକ ନେତ୍ରରେ ।
ବିଚିତ୍ର ଦୁନିଆଁ ରହସ୍ୟ, ମନେ ପଡୁଥିବ ଅବଶ୍ୟ ।
ଗୋଟିଏ ମାଆର ସନ୍ତାନ, ପାଆନ୍ତିକି ଏକା ସମ୍ମାନ ।
ପୂର୍ବ ପାପ ପୁଣ୍ୟ ଫଳରୁ,
ଭୋଗୁଛୁ ମନୁଷ୍ୟ ଜନ୍ମରୁ ।
କିଏ ରୋଗୀ କିଏ ନିରୋଗ,
କେତେବେଳେ ତା'ର ବିୟୋଗ ।
କିଏ ଜାଣୁଅଛି ଆଗରୁ,
ଜାଣିଥିଲେ ଗାନ୍ଧୀ ପୂର୍ବରୁ ।
ନ ପଢ ଗାନ୍ଧିଜୀ ଜୀବନୀ,
କଷଣ ଭୋଗୁଛି ଅବନୀ ।
ପଢାଅ ପିଲଙ୍କୁ ହସାଇ, ଗାନ୍ଧିଜୀ ଆଦର୍ଶ ଶିଖାଇ ।
ଦେଖୁଛ ଦୁନିଆଁ ରୀତିକି, ଛାଡୁଛ ଦେଶର ପ୍ରୀତିକି ।

ପାଇଥିଲା ଧ୍ୱଂସ ଜର୍ମାନ,
ରୁଷିଆ, ଇଟାଲୀ, ଜାପାନ ।
ନିଜ ଦେଶ ଗଢ ଆମକୁ,
କୋଟି କୋଟି ଦେଲେ ଋଣକୁ ।
ନୁଆଁଇ ମସ୍ତକ ଆମର,
ଗୌରବ ଯାଇଛି ଦେଶର ।
ଧିକ ଧିକ ଆମ ଶାସନ, ଛୟାଳିଶ ବର୍ଷ ପୂରଣ ।
ତିନି ଲକ୍ଷାଧିକ ଋଣରେ, ବୁଡନ୍ତା ଆସୁଛି ମନରେ ।

x x x x x

ଆଜି ଅଛ କାଲି ମୃତ୍ୟୁ ଦୁନିଆଁର ନୀତି
ଦେଖୁଛନ୍ତି ଜନଗଣ ଜୀବନରେ ନିତି ।
କି ହେବ ପଢିଲେ ଗୀତା ଅଥବା ପୁରାଣ
ଭାବିଲ କି ସୁଖେ ଯିବ କିପରି ପରାଣ ।
ଜୀଇଁଥିବା ଯାଏଁ ରୋଗ ରହିଛି ଲୋକକୁ
କିପରି ପାଇବ ରକ୍ଷା ପଚାର ମନକୁ ।
କ୍ଷମତା ଅଥବା ଆଶା ପୋଷିଲେ ହୃଦୟେ
ସରିବ କି ଦିନରାତି କାହାର ନିର୍ଭୟେ ।
ନାନା ଚିନ୍ତା ମାଡିବସି ଘାଣ୍ଟୁଛି ମନକୁ
କରିଯାଅ କର୍ମ ଭବେ ପୁଛି ବିବେକକୁ ।
କହନ୍ତି ମହାତ୍ମା ଗାନ୍ଧୀ ବିବେକ ଈଶ୍ୱର
ଚାଲୁଥାଅ କର୍ମପଥେ ଭାବି ନିରନ୍ତର ।
କେତେଦିନ ଚାଲିବରେ ଅନ୍ୟାୟ ପଥରେ
ଆପଣା କର୍ତ୍ତବ୍ୟ ଭୁଲି ଏ ମର ଭବରେ ।
ନ୍ୟାୟ ଅନ୍ୟାୟ ବିଚାର ଈଶ ଦରବାରେ
ସରବେ କରନ୍ତୁ ହେତୁ ଚିତ୍ତେ ବାରେ ବାରେ ।
ପାପ କର୍ମ ଲିପ୍ତ କେତେ ଦିନ ଭବେ
ବିବେକକୁ ପଚାରିଲେ ଜାଣିବେ ସରବେ ।
ବିବେକ ହିଁ ଭଗବାନ ଏହି ଗାନ୍ଧୀ ବାଣୀ
ପାସୋରୁଛ ମନୁ ସବୁ ଜାଣି ଜାଣି ।
ପାପାର୍ଜିତ ଧନ କାର ରହିନାହିଁ ଭବେ
ଚାହିଁଆଡେ ନୟନକୁ ବୁଲାଅ ସରବେ ।

# ଚତୁର୍ଥ-ସ୍ତବକ

ବିଜୁଳି ହେଲଣି କାଳ
କାହାକୁ କରିବା ଆମେ ଚଣ୍ଡାଳ
ଟଅପୋଇ ଲୋ, ସମସ୍ତେ ତ ମହାକାଳ ।

# ବାର ମହାନ୍ତି ପାଞ୍ଜି

ବିବେକ ଆହ୍ୱାନ ନଶୁଣି ମଣିଷ
ପାଉଅଛି କ୍ଳେଶ ଜୀବନେ ଅନିଶ ।୧।
ବାଟେ ବାଟେ ଦେଖି ଉଠାଣି ଗଡ଼ାଣି
ଚେତୁ ନାହିଁ କେବେ ସବୁ ଜାଣି ଜାଣି ।୨।
ଉଠୁଛି ପଡୁଛି ଢେଉ ସାଗରର
ମଣିଷକୁ ତାହା ନୁହ ଅଗୋଚର ।୩।
ମହାକାଳ ଫଳ ପରି ଯା ଅନ୍ତର
କେବେହେଲେ ତାକୁ ବିଶ୍ୱାସ ନକର ।୪।
ପରକୁ କେବେହେଁ ନକର ନିର୍ଭର
ଆପେ କରି ଚିନ୍ତା ଘୁବାଟକୁ ଧର ।୫।
ଜୀବନେ ଅଧିକ ଅଟଇ ଚରିତ୍ର
ନିରତ କରିବ ଭବନା ପବିତ୍ର ।୬।
ଆପଣାର ବୋଲି ଭବୁଛ ଯାହାକୁ
ହୃଦୟ ତାହାର ସର୍ବଦା ନେବାକୁ ।୭।
ସ୍ୱାର୍ଥମୟ ଏହି ବିଶାଳ ଜଗତ
ହୋଇ ସାବଧାନ ଚଳିବ ନିରତ ।୮।
ଅଢେଇ ଦିନକୁ ଆସିଛୁ ମର୍ତ୍ତ୍ୟକୁ
କେ କେବେ ଫେରିବ ଅଜଣା ଲୋକକୁ ।୯।
ଗର୍ବ ଅଭିମାନ ଅଢେଇ ଦିନିଆଁ
ଅନବରତ ତା ଦେଖୁଛି ଦୁନିଆଁ ।୧୦।
ମଣିଷର ପାଞ୍ଜି ଦଇବ ହାତରେ
ନ ଜାଣି କିଏସେ ପଡୁଛି ଖାଲରେ ।୧୧।
ଯାହାକୁ ବୋଲୁଛ ଆଜି ମୋର ମୋର
ଜାଣୁଅଛ କାଲି ସେ ନୁହଇ ତୋର ।୧୨।
ମାୟାର ବନ୍ଧନେ ହେଉଅଛ ଘାଣ୍ଟି
ଦୁଇହାକୁ ଗର୍ବରେ ସାରୁଅଛ ପାଣ୍ଟି ।୧୩।
ଜାଲରେ ପଡ଼ିଲେ ହୁଏ ମୀନ ଯଥା
ହେଉଅଛି ଲୋକ ମାୟାଜାଲେ ତଥା ।୧୪।
କାର ଅସମୟେ କେ ନୁହଇ ଠିଆ
ନେବା ଆଶା ରଖି କେ ହୁଅଇ ଠିଆ ।୧୫।
ଭଇ ମଧ୍ୟେ କଳି ଲାଗିଛି ଅନିଶ
ଲୋଭ ଅନୁଗତ ହେବାରୁ ମଣିଷ ।୧୬।
ତୋର ସହୋଦର ଦେଉଅଛି ବିଷ
ଲୋଡେ ନାହିଁ କେବେ ଈଶଙ୍କ ଆଶିଷ ।୧୭।
ଚମ ଘୋଡ଼ଣିରେ ଆବୃତ ଶରୀର
ଯହିଁ ପରିପୂର୍ଣ୍ଣ ଦୂଷିତ ରୁଧିର ।୧୮।
ଯେତେ ଆବର୍ଜନା ରହିଛି ଶରୀରେ
ପୋଛିବାକୁ ତାକୁ ଅଛି କେ ମହୀରେ ।୧୯।
ଭିତରେ ନରକ ବାହାର ଚିକ୍କଣ
କରୁଛନ୍ତି ଆଜି ନିତି ଲୋକଗଣ ।୨୦।
ବିଧର ଶକତି ଥାଇ ମଣିଷର
ଅବାଟରେ ପଶି ହୁଏ ହରବର ।୨୧।
କଣ୍ଟାଘାତ ଦେଶ ବଢ଼ ରଣଧର
ଅପବ୍ୟବହାର ଆଜି କ୍ଷମତାର ।୨୨।
କାହିଁ ପିଟାପିଟି କାହିଁ ହଣାହଣି
ଲାଗି ରହିଥିବା ଦେଖୁଛି ଧରଣୀ ।୨୩।
ଦେଖି ହାତ ଶୂନ୍ୟ ଜନମେ ମରଣେ
ନାହିଁ ଇଚ୍ଛା କାର ଲୋଭ ସମ୍ବରଣେ ।୨୪।

ବିଚିତ୍ର ନୀତି ଏ ବିଧାତାର ସୃଷ୍ଟି
ପଡୁ ନାହିଁ କାର ଏଥିପ୍ରତି ଦୃଷ୍ଟି ।୨୪।

ଧିକ୍‌ରେ ମଣିଷ ଧିକ ତୋ ବିଚାର
ନ ଛାଡୁଛୁ ମନୁଁ ଅନ୍ୟାୟ ଆଚାର ।୨୫।

ହସିବା କାନ୍ଦିବା ଜନମେ ମରଣେ
କିଏ ନ ଦେଖୁଛି ଏ ଭବ ପ୍ରାଙ୍ଗଣେ ।୨୬।

ତଥାପି ଲୋଭକୁ ନକରି ଦମନ
ଆମୋଦେ ପ୍ରମୋଦେ କଟୁଛି ଜୀବନ ।୨୭।

ନବୁଝି ପାରିଲୁ ସଂସାର ରହସ୍ୟ
ପଶୁଠାରୁ ହୀନ ତୋ ହେବ ଅବଶ୍ୟ ।୨୮।

ପର ପଇସାରେ ବଢ଼ାଇ ସମ୍ବଳ
ଧନ ଗରବରେ ଦେଖାଉଛୁ ବଳ ।୩୦।

ରହିଥିଲେ ଧନ ଚିରକାଳ କା'ର
ଓଲଟା ହୁଅନ୍ତା ଗତି ସଂସାରର ।୩୧।

ପରମେଶ ଠାରେ ପଶିଲେ ଶରଣ
ଯାଆନ୍ତା ବଦଳି ଲୋକ ଆଚରଣ ।୩୨।

ଅନ୍ୟାୟ ଅର୍ଜନ ନୁହଇ ସାର୍ଥକ
ଭବିଷ୍ୟତେ ଯାହା କୁଳ ବିନାଶକ ।୩୩।

ଦରିଦ୍ରକୁ ମାରି ଦେଖାଇବା ଟାଣ
ଏହିକିରେ କେବେ ବିଧାତା ଭିଆଣ ।୩୪।

ନକରି ମାନଧୁ ଲୋଭକୁ ଦମନ
ଏକମାତ୍ର ଆଶା ଧନ ଉପାର୍ଜନ ।୩୫।

ଯାହା ଯୋଗୁଁ ଲୋକ ହେଉଛି କାଙ୍ଗାଳ
ନୁହକିରେ ତାହା ମଦ ମହାକାଳ ।୩୬।

ଦିନୁଁ ଦିନ ଲୋକ ଅନ୍ୟାୟ ଶିକାର
ହୋଇ ଘର କଣେ ଛାଡୁଛି ଚିତ୍କାର ।୩୭।

ଶୁଣୁଛି ଚୁହାରି କିଏସେ କାହାର
ବହୁଅଛ ପଢ଼ କାଗଜ ବିସ୍ତାର ।୩୮।

କିଏସେ ନକରି ଲୋଭକୁ ଆୟତ୍ତ
କି ହେବ ଗାଇଲେ ଗୀତା ଭାଗବତ ।୩୯।

ମୋ ଦେଶ ମୋ ଲୋକେ ନ ଆଣେ କେ ମନେ
କଲମ ଘଷନ୍ତି ଧନ ଉପାର୍ଜନେ ।୪୦।

ଚାଲିଅଛି ଲୁଟି ଦେଶର ସମ୍ବଳ
ଧରିବାକୁ ନାହିଁ କା'ର ମନୋବଳ ।୪୧।

ବିରାଡ଼ି ପାଖରେ ଥୋଇଦେଲେ ଦୁଧ
ପରିଣାମ ଯାହା ଜାଣୁଛନ୍ତି ବୁଧ ।୪୨।

ଯିଏ ଯେତେବେଳେ ଆସୁଛନ୍ତି ଭବେ
ହାତ ଥିବା ଖାଲି ଦେଖନ୍ତି ସରବେ ।୪୩।

ଅଛି କି ଆନନ୍ଦ ଆସିବା ବେଳର
ଫେରିବା ବେଳରେ ଦେଖ ଅଶ୍ରୁ ଝର ।୪୪।

ଏହିତ ଦୁନିଆଁ ଓଲଟ ପାଲଟ
ରଖୁଅଛ ଚିତ୍ତେ କାହିଁକି କପଟ ।୪୫।

ପକ୍ଷପାତ ନୀତି ବ୍ୟାପିଛି ସର୍ବତ୍ର
ବିଚାର କରନ୍ତୁ ହୋଇଣ ଏକତ୍ର ।୪୬।

ଅନ୍ୟାୟ ଅନ୍ୟାୟ ଚାରିଆଡ଼େ ରଡ଼
ଲୋକ ମୁଖୁଁ ଆହା ! ଶୁଭେ ଘଡ଼ ଘଡ଼ ।୪୭।

ସଂସାର ପ୍ରାଙ୍ଗଣ ନୁହେଁ ଖେଳଘର
ଚରିତ୍ର ଗଠନେ ହୁଅ ତତପର ।୪୮।

କିଏ ନ ଜାଣିଛି ଇଟାଲୀ ଜର୍ମାନ
ପୁଣି ସର୍ବହରା ରୁଷିଆ ଜାପାନ ।୪୯।

ବିଗତ ଯୁଦ୍ଧରେ ହରାଇ ସର୍ବସ୍ୱ
ଦେଶକୁ ଗଢ଼ିଲେ ନ ଆଣି ପରସ୍ୱ ।୫୦।

କୋଟି କୋଟି ଟଙ୍କା ଦେଇଛନ୍ତି ଋଣ
ଶୁଝି ପାରିବାକି ସେମାନଙ୍କ ଗୁଣ ।୫୧।

ନ ପଶି ଯୁଦ୍ଧରେ ବିଶାଳ ଭାରତ
ହାତ ପତାଇଲା ହରାଇ ମହତ ।୫୨।

ସଙ୍ଗରେ କାହାର ଯିବ ନାହିଁ କିଛି
ପୁଣ୍ୟରେ ପ୍ରଶଂସା ପାପକର୍ମେ ଛି ଛି ।୫୩।

ହେଲେହେଁ ପଡ଼ନ୍ତି କ୍ଷମତା ମୋହରେ
କରନ୍ତି କୁକର୍ମ ନଭାବି ମନରେ ।୫୪।

ଭଲ ମନ୍ଦ ଜ୍ଞାନ ହେଲେହେଁ ସରଳ
ଜାଣି ଜାଣି ଜନେ ପିଅନ୍ତି ଗରଳ ।୫୫।

ଅନର୍ଥର ମୂଳ ଅର୍ଥ ହିଁ କେବଳ
ଏତିକି ମଣିଷ ଭବୁ ଅବିରଳ ।୫୬।

ରହିଛି ବିବେକ ଜଗୁଆଳ ହୋଇ
ମାନିଲେ ତା କଥା ଯିବ ମଳି ଧୋଇ ।୫୭।

ଖୋଜି ନ୍ୟାୟାନ୍ୟାୟ ପ୍ରଭୁ ନିରଞ୍ଜନ
ଦେଉଥିବା ଦଣ୍ଡ ଭୋଗୁଅଛି ଜନ ।୫୮।

ଚରିତ୍ର ଗଠନେ ନ ହେବ ତତ୍ପର
ଅବାଟେ ଧାଉଁଛ ଭବେ ନିରନ୍ତର ।୫୯।

ଆମ୍ବଗଛେ କେବେ ଫଳେ କି ପଣସ
ସୃଷ୍ଟି ଗତି ହେଜୁ ମଣିଷ ମାନସ ।୬୦।

କୁଦିବରେ କଣ୍ଟା ଗଲେ ଅବାଟରେ
ଖବନ୍ତୁ ସରବେ ବିଶୁଦ୍ଧ ଚିତ୍ତରେ ।୬୧।

ଚାଲିଛି ସଂସାରେ ହିଂସାର ରାଜତ୍ୱ
ଚିରୀହ ଲୋକର ଯାଉଛି ମହତ୍ୱ ।୬୨।

ବିଷର ଶକତି ହେଉଅଛି ଲୀନ
ପାଉଛି କଷଣ ଅବିରମ ଦୀନ ।୬୩।

ଶାସନକୁ ଗଲେ ବଢିବ ସମ୍ବଳ
ବୋଲି ଭବୁଛନ୍ତି କେତେ ଅବିରଳ ।୬୪।

ବିଧାତାର ଦଣ୍ଡ ନବୁଝି ମଣିଷ
ଆପଣା ହାତରେ ପିଉଅଛି ବିଷ ।୬୫।

ନିଜ ଘର ଦଣ୍ଡ ବୁଝୁଥିଲେ ଲୋକ
ନଥାନ୍ତା ତା' ଘରେ କେତେବେଳେ ଶୋକ ।୬୬।

ମୋ ଦେଶ ସଂସ୍କୃତି ମୋ ଦେଶ ସଂସ୍କାର
ଯାଉଛି ଉଭେଇ ପୁଣି ସଦାଚାର ।୬୭।

ମୋ ଦେଶର ବେଦ ମୋ ଦେଶ ବେଦାନ୍ତ
ପଢଲେ ବିଦେଶୀ ହେଉଅଛି ଭ୍ରାନ୍ତ ।୬୮।

ଅନୀତି ଅନ୍ୟାୟ ପକ୍ଷପାତ ଆଦି
ଚାଲିଛି ଦେଶରେ ଏହି କାରସାଦି ।୬୯।

ମୋ ଦେଶର ବେଦ ମୋ ଦେଶ ସଂସ୍କୃତି
ଲିଖଇ ଦେଇଛି ମଣିଷ ପ୍ରକୃତି ।୭୦।

ଗଣ୍ଡି ପୁଅ ଏବେ ଚଢଲଣି ଘୋଡା
ପିଇବାକୁ ମଣ୍ଡା (ମଦ) ହେଉଅଛି ଲୋଡା ।୭୧।

କ୍ଷମତା ମୋହରେ ହଟଇ ବିବେକ
ପୋଡଦେଲେ ଏବେ ଏ ଦେଶର ଟେକ ।୭୨।

ପୂର୍ବର ମହତ୍ୱ ନାହିଁ ଦେଶେ ଆଉ
ଗଛ ଡାଳେ ବସି ରବୁଅଛି କାଉ ।୭୩।

ଗାନ୍ଧିଜୀଙ୍କୁ ମାରି ଭୋଗୁଅଛ ରାଜ୍ୟ
ଏହିକିରେ ନବଯୁଗର ସ୍ୱରାଜ୍ୟ ।୭୪।

ନ୍ୟାୟ ପଥେ ଯିବା ସଦା ଶ୍ରେୟସ୍କର
ପକ୍ଷପାତ ପଛେ ଥୁଆ ତିରସ୍କାର ।୭୫।

ଚଳୁଥିଲେ ମାନି ବିବେକ ବଚନ
ଦିଶିଯିବ ଆପେ ମୁକ୍ତିର ଅୟନ ।୭୬।

ଧିକରେ ମଣିଷ ସ୍ୱାର୍ଥକୁ ନଛାଡ
ସବୁ କଥାରେ ତୁ ମୁଣ୍ଡ ଦେଉ ଲଢ ।୭୭।

ହତ୍ୟାକାରୀ ଗୁଳି ନେବ ମୋ ଜୀବନ
ଗାନ୍ଧୀ ମନ ବହି କରନ୍ତୁ ପଠନ ।୭୮।

ନୁହଁକି ଗାନ୍ଧିଜୀ ଦଇବ ପୁରୁଷ
ଏ ବଚନ କହି ବଢଛି ପୌରୁଷ ।୭୯।

କେତେ ଯୋଗୀ ଋଷି ଜନ୍ମିଛନ୍ତି ଭବେ
ଏପରି କା ତୁଣ୍ଡୁ ଶୁଣିଛକି ଲବେ ।୮୦।

ମରଣ ସମୟ ଘଣ୍ଟାକ ପୂର୍ବରୁ
ଦୁଇଜଣ କର୍ମୀ କାଥିଆ ଓ୍ୱାର୍ଡରୁ ।୮୧।

କଥା ହେବା ଲାଗି ତାଙ୍କୁ ଭେଟିବାକୁ
ଆସନ୍ତେ ଖବର କହିଲା ତାହାଙ୍କୁ ।୮୨।

ଉତ୍ତରିଲେ ଗାନ୍ଧୀ, "ଆଜି ବଂଚିଥିଲେ
କଥାବାର୍ତ୍ତା ହେବି" ସଙ୍ଗରୁ ଫେରିଲେ ।୮୩।

ଭବିଷ୍ୟତ ବାଣୀ ହୋଇଥିଲା ସତ
ମରିବା ଗୁଳିରେ ଜାଣିଛି ଭରତ ।୮୪।

ନିଅନ୍ତ ଦଳର ନିଅନ୍ତ ହାକିମ
ଗଣତନ୍ତ୍ର ବୋଲି ବାଜୁଛି ଡଣ୍ଡିମ ।୮୪।

ଦିଶୁଅଛି ଫୁଟି ଅଟ୍ଟାଳିକାମାନ
'ଗରିବ ପଇସା' କରନ୍ତୁ ସନ୍ଧାନ ।୮୬।

ବର୍ଷ ବର୍ଷ ଧରି ଯାଇଅଛି ବିତି
ଅଛିକି କାହାର ଦେଶଲାଗି ପ୍ରୀତି ।୮୭।

ଦେବାଲାଗି ସର୍ବେ ହୁଅନ୍ତି ବିମୁଖ
ନେବାକୁ ହୁଅନ୍ତି ସମସ୍ତେ ଉତ୍ସୁକ ।୮୮।

ଠକା ଠକି କରି ବଢ଼ାଏ ଯେ ଧନ
ସେ ପୁଣି ବୋଲାଏ ଜଗତେ ସଜ୍ଜନ ।୮୯।

ନ୍ୟାୟେ ଚଳାଇଲେ ଜୀବନ ସଂଗ୍ରାମ
ଚଳିଯିବ ସୁଖେ ଭବେ ଅବିରାମ ।୯୦।

ପକ୍ଷପାତ ନୀତି ନରଖି ମାନସେ
ସରିଯାଉ ଦିନ ସଦା ହସେ ହସେ ।୯୧।

ଯାଇଛି ବିବେକ ଯାଇଛି ବିଚାର
ଲାଜ ମହତକୁ ଡର ନାହିଁ କାର ।୯୨।

କି ବୋଲନ୍ତି ଲୋକେ ପଛରେ କାହାର
ସ୍ଥାନ ନାହିଁ ଆଜି ପ୍ରଶଂସା ନିନ୍ଦାର ।୯୩।

ଗାଉଅଛି ଗୀତ ଆମ୍ବ ଡାଳେ ପିକ
ସୁଲଳିତ କଣ୍ଠେ ବୋଲି ଠିକ ଠିକ ।୯୪।

ଆସି ଖାଲି ହାତେ ଯାଉ ଖାଲି ହାତେ
ଧୂଳି ପକାଉଛୁ ଖାଉଥିବା ଭାତେ ।୯୫।

ନ ବୁଝିବା ଯାଏଁ ଏତିକି ମଣିଷ
ପାଇବ କି କେବେ ବିଧାତା ଆଶୀଷ ।୯୬।

କି ବୋଲିବେ ଜନେ ଭବୁଁ ଗଲେ ଫେରି
ଅବା ପାଖେ କେହି ରହିଥିଲେ ଘେରି ।୯୭।

ଏତିକି ବିଚାରି କରୁଥିଲେ କର୍ମ
ପାଖେ ପାଖେ ଥିବ ଅବିରାମ ଧର୍ମ ।୯୮।

ଏବ ନିର୍ବାଚନେ ଗାଆଁ ଭଗ ଭଗ
କେତେ ପ୍ରାଣହାନୀ ନହେଲେ ସଜାଗ ।୯୯।

କୋଟି କୋଟି ଅର୍ଥ ହୁଏ ଅପବ୍ୟୟ
ଏଥିଲାଗି ଦାୟୀ ଶାସକ ନିଶ୍ଚୟ ।୧୦୦।

ବିନା ଅର୍ଥ ବ୍ୟୟେ ଦେଶ ନିର୍ବାଚନ
ହେବାଲାଗି ପର ମହାତ୍ମା ଲିଖନ ।୧୦୧।

ନୀତି ନିୟମକୁ ଦେଇଛନ୍ତି ଲେଖି
ଚାଲିଛି ଶାସନ ତାହାକୁ ଉପେକ୍ଷି ।୧୦୨।

ରହି ନାହିଁ ଟାଣ ସୃଷ୍ଟିରେ କାହାର
ଏତିକି ମଣିଷ ନକରେ ବିଚାର ।୧୦୩।

ରହିଥିଲେ ଯିଏ ଦୋତାଲ କୋଠାରେ
ଦେଖୁ ନାହିଁ କିଆଁ ଆଜି କେଉଁଠାରେ ।୧୦୪।

ନବୁଝିବ ଯିଏ ନିଜର ଅନ୍ୟାୟ
ତାକୁ ବତାଇବ କିଏ କି ଉପାୟ ।୧୦୫।

ନେବା ନାହିଁ କିଛି ଯିବାରେ ବାହାରି
କର ନିତି କର୍ମ ସୃଷ୍ଟି କି ବିଚାରି ।୧୦୬।

ମଣିଷ ଜୀବନ ପାଚିଲା ପତର
କେବେ ଫେରିଯିବ ଲୋକ ଅଗୋଚର ।୧୦୭।

ଗାନ୍ଧିଜୀ ଆଦର୍ଶ ଗାନ୍ଧୀ ଉପଦେଶ
ନାହିଁ ଏ ଦେଶରେ କେଉଁଠାରେ ଲେଶ ।୧୦୮।

ଯାହା ଯୋଗୁଁ ଆଜି ବସନ୍ତି ଗାଦିରେ
କୃତଘ୍ନ କୃତଘ୍ନ ବୋଲନ୍ତି ମହୀରେ ।୧୦୯।

କେତେ ଦିନ ପାଇଁ କାହାର କ୍ଷମତା
ରହିଛି ମହୀରେ ଦେଖୁଛି ଜନତା ।୧୧୦।

ପୂର୍ବଜନ୍ମ ପାପ ଗୋଡ଼ାଇ ଗୋଡ଼ାଇ
ଦେଉଅଛି ଦଣ୍ଡ ଲୋକଙ୍କୁ ଦେଖାଇ ।୧୧୧।

କେ କରିବ ଧୁନି ମାଆକୁ ଝୁରିଲେ
ଅବା ଲୋଚନରୁ ଲୁହ ଗଡାଇଲେ ।୧୧୨।

୦.୦.୦

( ରସକୁଲ୍ୟା ରାଗ )

କ୍ଷମତା ନିମିତ୍ତ ଅତି ଆତୁର
ନିଜକୁ ବୋଲନ୍ତି ବଡ ଚତୁର
ରମଣୀ ନିମିତ୍ତ ନିର୍ବାଚନରେ
ସ୍ଥାନ ସଂରକ୍ଷଣ କଉଶଳରେ
କରି ଶାସକ ନିକର ଯେ
ଘରେ ଥିବା ଲୋକ ଦାଣ୍ଡକୁ ବାହାରି
ପଶେ ଆଜି ଘରେ ଘରେ ।୧।

କରନ୍ତୁ ବିଚାର ଏ ଦେଶ ଜନେ
ପୁରୁଷ ଯିବକି କେବେ ରନ୍ଧନେ
ଅବା ଅଛି କ୍ଷୀର ତାହାର ସ୍ତନେ
ସକ୍ଷମ ହେବକି ଶିଶୁ ଶୟନେ
ପିଲାକୁ ଦେବ ଶୁଆଇ ଯେ
ବିଧିର ବିଧାନ ହେବକି ଓଲଟ
ଚିନ୍ତା କରୁ ଦେଶ ଭାଇ ।୨।

ପିଲା ମଳମୂତ୍ର କାଢ଼ିବ କିଏ
ଥିବେ ତ ସଭରେ ଏଣେ ନାରୀଏ
ଓଲଟ ହେଲାକି ସୃଷ୍ଟି ଧାତାର
ନୁହଇ ଏ କାର୍ଯ୍ୟ କେବେ ପିତାର
ଧନ୍ୟ ଧନ୍ୟ ଏ ବିଚାର
ଜନମିଲେ କିରେ ଭାରତ ଭୂଇଁରେ
ବୁଦ୍ଧି ଶୂନ୍ୟ କୁଳାଙ୍ଗାର ।୩।

ଅବାସ୍ତବ ଚିନ୍ତା, ଦୂର ବିବେକ
ଯାଉଅଛି କ୍ରମେ ଦେଶର ଟେକ
ହିଂଦୁର ସଂସ୍କୃତି ହିଂଦୁ ସଂସ୍କାର
ଅଛିକିରେ କେଉଁ ଦେଶେ ଧରାର ।
ଅନ୍ୟାୟର ପ୍ରତିବାଦ ଯେ
କରିବା ନୁହଁକି ବିବେକର କାର୍ଯ୍ୟ
ନ ସହି ଏ ଅପବାଦ ।୪।

ନ ଦେଖି ମାଆକୁ କାନ୍ଦଇ ପିଲା
କରିବ କେ ସଫା ତା'ର ମଇଳା
କାନ୍ଦଲେ ସେ ଖାଏ ମାଆଁର କ୍ଷୀର
ନ ଦେଖୁଛି କିଏ ନୀତି ସୃଷ୍ଟିର
କେ କେତେ ନେବ ସଙ୍ଗରେ ଯେ
ବିଧିର ବିଧାନ ଆସିବା ଫେରିବା
ନଥିବ କିଛି ହାତରେ ଯେ ।୫।

ନ ବାଛି ମଣିଷ ସାର ଅସାର
ନିଜ ଇଚ୍ଛାମତେ କରେ ବେଭାର
ଅଢ଼େଇ ଦିନକୁ ଆସି ଏ ଭବେ
କେବେବା ଫେରିବା ନଜାଣୁ ଲବେ
ନାନା ନଟକୂଟେ ପଶି
ଆପଣା ଲାଭକୁ ଖୋଜୁଥିଲେ ସଦା
ଫେରିବ କି ହସି ହସି ? ।୬।

କିଏ ବା କାହାର ନଭାବି ମନେ
ଚକ୍ଷୁ ଲାଗିଥିବ କେବଳ ଧନେ
ପ୍ରାଣବାୟୁ ଉଡ଼ିଯିବା ପୂର୍ବରୁ
ଗଡୁଥିବ ଲୁହ ବେନି ନେତ୍ରରୁ
ନେବେଣି ଛଡ଼ାଇ କଂଚି ଯେ
ଉଡ଼ିଯିବ ଖରେ ପକ୍ଷୀ ଲାଗି ତହିଁ
ରଖିଥିଲେ ଧନ ସଂଚି ଯେ ।୭।

କ୍ଷମତା ମୋହରେ କିଏ ବା ଅନ୍ଧ
ପକାନ୍ତି ତୃଚ୍ଛାକୁ ବାଲିରେ ବନ୍ଧ
ସୃଷ୍ଟିର ରହସ୍ୟ ନଭାବି ଦିନେ
ଛଟପଟ ଯଥା ଜାଲରେ ମୀନେ
ଓଲୋମ ବିଲୋମ ସୃଷ୍ଟି
ମଣିଷ ଜନମ ପାଇ ଦିନେ କେହି
ନ ପକାନ୍ତି ଟିକେ ଦୃଷ୍ଟି ।୮।

ଈଶ୍ୱର ଇଚ୍ଛାରେ ଭବ ଚାଳିତ
ପିତୃ ମାତୃହରା ସଦା ଦୁଃଖିତ
କେ ଏଡ଼ ପାରୁଛି ବିଧି ବିଧାନ
ଯେବେ ଯା ଘଟୁଛି ନ ହୁଏ ଆନ

ଦୁନିଆଁ ରୀତିକି ଦେଖି ଯେ
ନ ଶିଖି ମଣିଷ    ପଶୁଛି ଅବାଟେ
ନିଜ ମହତ ଉପେକ୍ଷି ।୯।

ନାନା ଦୁଷ୍ଟ ଲୋକ ପାଏ ଜୀବନେ
ପଦେ ହେଲେ କେବେ ନ ରଖେ ମନେ
ରହୁଥିଲେ ହେତୁ ଆଶା ପଛରେ
ଧାଉଁ ନଥାନ୍ତା କେ ଆଜି ଭବରେ

ବିଧିର ବିଚିତ୍ର ସୃଷ୍ଟି ଯେ
ଜନମେ ଆନନ୍ଦ    ମରଣ ଯେ କାନ୍ଦ
ପଡୁନାହିଁ କାହା ଦୃଷ୍ଟି ଯେ ।୧୦।

ଖାଲିହାତେ ଆସି ଖାଲି ହାତରେ
ଆସିବା ଯିବାଟା ନିତି ଲୋକରେ (ସଂସାରେ)
ରହିଅଛି ଲାଗି ନ ଦେଖେ କିଏ
ତଥାପି ମାୟାର ଜାଲେ ସଭିଏଁ

ପଡ଼ ସଦା ଛଟପଟ ଯେ
ଆଖି ବୁଜି ଅବା    କାନ ମୁଦି ଦେଇ
ପୋଷନ୍ତ ହିଂସା କପଟ ଯେ ।୧୧।

କେଉଁ ମୁହୂର୍ତ୍ତରେ ଯିବା ବାହୁଡ଼
ଅଣ୍ଟାରେ ନଥିବ କଡେ କଉଡ଼
ଖାଲିହାତେ ଆସି ଭୂଇଁରେ ପଡ଼
ଦଣ୍ଡେ ବା ମୁହୂର୍ତ୍ତେ ଶୁଣୁଛି ରଡ଼

ଗଡ଼ଲେ ଲୋତକ ଧାର
ଦିନେ ଦୁଇଦିନ    ପରେ ପାସୋରିବ
ନୁହଁକି ଏ ଲୋକାଚାର ।୧୨।

ଅଢେଇ ଦିନିଆ କ୍ଷମତା ପାଇଁ
ଧନ ଅରଜିବା ଆଶାରେ ଧାଇଁ
ଆପଣା ଲାଭରେ ସହୁଛୁ କ୍ଲେଶ
ପରିଣାମେ ତାର ଉପୁଜେ ଦ୍ୱେଷ

ଏ ପାଇଁ ସାରା ଜଗତ
ଚାଲିଅଛି ପର    ଝାଞ୍ଜ ମୃଦଙ୍ଗରେ
ବିକି ଆପଣା ମହତ ।୧୩।

ଦେଖ ଚଉଦିଗେ ଈଶ୍ୱରମୟ
ସ୍ୱାର୍ଥକୁ ବରଜି ନୋହି ଅଥୟ
ପ୍ରବେଶି ସୁକର୍ମେ ଆଚରି ନୀତି
ରଖ ମନେ ସଦା ମୋ ଦେଶପ୍ରୀତି

ଭଣ୍ଡ ତପସ୍ୱୀର ବେଶ ଯେ
ତେଜି ମନୁ ଏବେ    ଗାନ୍ଧୀ ଉପଦେଶ
ମାନିଲେ ଘୁଞ୍ଚିବ କ୍ଲେଶ ।୧୪।

ପାଶ୍ଚାତ୍ୟ ଶିକ୍ଷାକୁ ପାଶ୍ଚାତ୍ୟ ସଭ୍ୟତା
ତା ସଙ୍ଗେ ମିଶିଲା ଏବର କ୍ଷମତା ।

ଗୁରୁଜନ ପ୍ରତି ତିଳେ ନାହିଁ ଭକ୍ତି
ପାଳଗୋଛା ପରି ବାହାରୁଛି ଯୁକ୍ତି ।

କୃତଜ୍ଞତା ସ୍ଥାନ କରିଛି ପୂରଣ
କୃତଘ୍ନତା ଆସି ଦେଖୁଛି ଈକ୍ଷଣ !

ଉପକାର ଲାଗି ଯାଉନାହିଁ ମନ
ଅପକାର ହୃଦ କରୁଛି ମନ୍ଥନ ।

ବିଧାତା ବିଧାନ ଛାଡ଼ଦେଇ ବଳେ
କ୍ଷମତା ହାସଲ ଇଚ୍ଛନ୍ତି କୌଶଳେ ।

ତେଣୁ ରମଣୀଙ୍କ ସ୍ଥାନ ସଂରକ୍ଷଣ
ଶାସକ ଗୋଷ୍ଠୀଏ କଲେ କି ଭୂଷଣ ।

ଗାନ୍ଧୀ ଉପଦେଶ ଶାସକେ ନଜାଣି
ଅଯଥାରେ କଳି ଆଣୁଛନ୍ତି ଟାଣି ।

କେତେ ହଣାହଣି କେତେ ମରାମରି
ଚାଲିଛି ଦେଶରେ ଦେଖୁଛୁ ଯେପରି ।

ଅଳ୍ପଦିନେ ଦେଶ ପଡ଼ବ ଭୁଶୁଡ଼
ଏ ଦେଶର ପାଠ ନଯାଅରେ ଛାଡ଼ ।

ମଇଳା କାଢ଼ିବା ଏଣେ କ୍ଷୀର ଦେବା
ବାସନ ମାଜିବା ପୁନଶ୍ଚ ରାନ୍ଧିବା ।
ଏ କାର୍ଯ୍ୟ କେବେହେଁ ନୁହଁ ପୁରୁଷର
ହେଲାକିରେ ବୁଦ୍ଧି ଭ୍ରଂଶ ଶାସକର ।
ଗାନ୍ଧୀ ଉପଦେଶ ଲୋଡ଼େ ଦେଶ ଆଜି
ଉଠନ୍ତୁ ଉଠନ୍ତୁ ଦେଶ ଛାତ୍ର ଗଢ଼ି ।

ନୈତିକତା ହାନି କରିଛି କ୍ଷମତା
ଏକଥା କହିବ ଆଜି ବୃକ୍ଷଲତା ।

କ୍ଷମତା କ୍ଷମତା କରୁଅଛି ବାୟା
ମଦପାଣି ଟଙ୍କା ଶାସକର ଛାୟା ।

ଅତୀତରେ କେତେ ସଂଭ୍ରାନ୍ତ ରମଣୀ
ଯାଇଛନ୍ତି କୁହୁ ଜାଣିଛି ଧରଣୀ ।

ଗାନ୍ଧୀଜୀ ଆମର୍ଶେ ବୋଳୁଅଛ କାଳି
କିହେବ ଶେଷରେ ଜନ୍ମଦିନ ପାଳି ।

ଏ ଦେଶ ଧର୍ମରେ ଲଗାଇ କାଳିମା
ଦେଖାଇ ହେଉଛ ଆପଣା ବଡ଼ିମା ।

ବାଜୁ ବାଜୁ ଦେଶେ କୃଷ୍ଣଙ୍କର ଶଙ୍ଖ
ନ ଲଗାଅ ହିନ୍ଦୁ ଧର୍ମରେ କଳଙ୍କ ।

ମର୍ଯ୍ୟାଦା ଯାଇଛି କେତେ ନାରୀଙ୍କର
ହିସାବ ଅଛିକି ଶାସକ ଗୋଷ୍ଠୀର ।

ପାସୋରି ଯାଇଛି ଅତୀତ ଘଟଣା
ଅବାଟରେ ପଶି ହେଉଅଛି ବଣା ।

ଆପଣା ଗୌରବ ନ ରଖିଲେ ଆପେ
ହେଉଛି ନିଷ୍ଫଳ ପଛ ପରିତାପେ ।

କ୍ଷମତା ଲୋକକୁ ଆଣୁଛି ଓଟାରି
ଚାଲିଛି କୌଶଳ କିଛି ନ ବିଚାରି ।

ଅଛିକି କାହାର ମଣିଷ ପଣିଆ
ଏ ଆଚାର ଦେଖି ହସୁଛି ଦୁନିଆଁ ।

ନୁହଁ ବଡପଣ ବିଚାର ହୀନତା
ପ୍ରକାଶ ପାଉଛି କେବଳ ଲଘୁତା ।

କରୁଅଛି ଅନ୍ଧ ଆଜି ଏ କ୍ଷମତା
ପାଉଅଛି ଲିଭି ହିନ୍ଦୁର ସଭ୍ୟତା ।

ଆଜି କୋଟିପତି କାଲିକି ଭିକାରୀ
ଏଥିପ୍ରତି ଦୃଷ୍ଟି ନପଡେ କାହାରି ।

ନିମକ ହାରମ ନୁହଁକି ଏ ଦେଶ
ନ ମାନି ବଚନ ମହାତ୍ମାଙ୍କ ଲେଶ ।

ଆଫ୍ରିକାରୁ ତାଙ୍କୁ ଆଣିଲେ ଡକାଇ
କି ଯଶ ପାଇଛ ତାହାଙ୍କୁ ମରାଇ ।

ସର୍ବସ୍ୱ ବରଜି କେତେ ମାଡ ଖାଇ
ଗାଳି ଶୁଣି ଶୁଣି କେତେ ଜେଲ ଯାଇ ।

ସତ୍ୟ ଅହିଂସାରେ ଆଣିଥିଲେ ଦେଶ
ତାଙ୍କ ଚିହ୍ନ କାହିଁ ଅଛିକିରେ ଲେଶ ।

ଅନୀତି ପସର ଦେଇଅଛ ବାନ୍ଧ
ସତ୍ୟ ଅହିଂସାକୁ ଦେଇଅଛ ଛାଡ଼ ।

ଚଉଦିଗେ ଦେଖୁ ସିନା ହଣାହଣି
ଅବା ମଦ୍ୟ ପାନେ ଲାଗେ ଝୁଣାଝୁଣି ।

ତାଙ୍କ ଉପଦେଶ ତାଙ୍କ ନିର୍ବାଚନ
ଜାଣିଛକି ପଦେ ଏବର ଶାସନ ।

ନାହିଁ ଗଣ୍ଡଗୋଳ ନାହିଁ ଖର୍ଚ୍ଚ ଅର୍ଥ
ଶାସକେ ସେସବୁ କରିଛନ୍ତି ବ୍ୟର୍ଥ ।

କୋଟି କୋଟି ଟଙ୍କା ସରୁଛି ଦେଶର
ପଡ଼ଲା କି ଦୃଷ୍ଟି କେବେ ଶାସକର ।

ଗାନ୍ଧୀଜୀ ନାଆଁରେ ଲଗାଇ କଳଙ୍କ
ଯାଉଅଛି ବଢ଼ି ଦେଶରେ ଆତଙ୍କ ।

କିଏ ନ ଦେଖୁଛି ବିଧାତା ବିଧାନ
ପ୍ରତି ମୁହୂର୍ତ୍ତରେ ଏ ସାର ଜୀବନ ।

ତଥାପି ମଣିଷ ନଭାବି କିଂଚିତ
ରଖୁଛି କିପରି କୁକର୍ମରେ ଚିତ୍ତ ।

ଏ ଜାତି ମହତ୍ତ୍ୱ ଏ ଜାତିର ଧର୍ମ
ଯାଇଛି ପାସୋରି ଆଶ୍ରୟି କୁକର୍ମ ।

ପର ତଂଟି ଚିପା ବାଟ ଯାହାର
ଦେଶିକ କଷଣ ପୁଅ ତାହାର ।

ବିଧିର ବିଧାନ ବିଚିତ୍ରମୟ
ଜାଣି ନ ପାରନ୍ତି ଅଧମଚୟ ।

କେତେବେଳେ କିଏ ଯାଉଛି ଚାଲି
ରହିଅଛି ହାତ ଯୋଡ଼କ ଖାଲି ।

ଶୁଭିଲେ କାହାଣୀ ଘର ଉପରେ
ମଲା ମଲା ବୋଲି ହୁରି ଦାଣ୍ଡରେ ।

ଶୂନ୍ୟ ହାତ ସିନା ଶୁଭୁଛି ବଡ଼
ଏ ନାଟ ଲାଗିବ ଘଡ଼କି ଘଡ଼ ।

ଜନମ କାଳରେ ଆନନ୍ଦ କାହିଁ
ହସୁଥିବେ କେତେ ମୁହଁକୁ ଚାହିଁ ।

ନ ଆସେ ଚେତନା କାର ମନରେ
ହିଂସା ତେଣୁ ସଦା ଖେଳେ ହୃଦରେ ।

ସାମାନ୍ୟ କଥାରୁ ଉଠୁଛି କଳି
କ୍ରୋଧାଗ୍ନିରେ କିଏ ଯାଉଛି ଜଳି ।

ନାନା ଅନ୍ୟାୟରେ ଖୋଜନ୍ତି ବାଟ
ଶୁଭିଲାଣି ଏଣେ କା' ମୁଣ୍ଡ କାଟ ।

ଏତ କଳିଯୁଗ କଳିର ଖଣି
ଦଣ୍ଡକ ଭିତରେ ବ୍ୟାପେ ଧରଣୀ ।

କିଏ ହସୁଅଛି କା'ର ବେଦନ
ଓଲୋମ ବିଲୋମ ବିଧି ସୃଜନ ।

ପ୍ରବେଶିଲେ ଆଶା ମହା ବିପଦ
ଟଳାଇବ ଉଚ୍ଚ ଥିବା ସମ୍ପଦ ।

ପାଳଗୋଛା ପରି ଏବ ଶାସନ
ଏଥିଲାଗି ଦାୟୀ ଭେଟର ଗଣ ।

ମରଣ ଟିକସ ଆଦାୟ ପାଇଁ
ଆଦାୟ ନିମିତ୍ତ ଯତନ ନାହିଁ ।

ପ୍ରଭୁ ଜଗନ୍ନାଥ ପ୍ରଭୁ ଲୋକନାଥ
ବିଜେ କରି ଆଜି ହେଉଛୁ ଅନାଥ ।

ପ୍ରଭୁ ନାମ ଧରି ବିଶୁଦ୍ଧ ଚିତ୍ତରେ
ବିଚାର କରନ୍ତୁ ନିଷ୍ପକ୍ଷପାତରେ ।

ସତ୍ୟ ଅହିଂସାର ଯାଇଛି ମହତ୍ୱ
ମିଥ୍ୟା ହିଂସା ଲୋଭ କରୁଛି ରାଜତ୍ୱ ।

କରିବା ପାପକୁ ନାହିଁରେ ନିସ୍ତାର
ଗତ କଥା ହେତୁ କର ବାରମ୍ବାର ।

ଏତ କଳିଯୁଗ ଯାଉଅଛେ କଳି
ଯହିଁରୁ ଉଠୁଛେ ମଣିଷର ବଳି ।

ଶିଖିବାକୁ ଲୋକ ମରମ ତ୍ୟାଗର
ଶ୍ମଶାନ ନିବାସ ଅଛି ଶିବଙ୍କର ।

ପରମେଶ୍ୱରଙ୍କ ଶ୍ରୀ ଚରଣରେ
ରହୁ ମନ ସଦା ଏକ ଲୟରେ ।
ଦୀନ ସେବା ହେଉ ଜୀବନ ବ୍ରତ
ଯାପିଅଛି ଦିନ ଅନବରତ

ଖୋଜୁଅଛି ମୁକ୍ତିପଥ
ଏତିକି ମାଗୁଣି ଦେଖାଇ ଦିଅନ୍ତୁ
ଦୟାମୟ ଜଗନ୍ନାଥ ।

ଲୋଡ଼ ନାହିଁ କେବେ ଅନ୍ୟାୟ ବିତ୍ତ
ସଚେତନ ଅଛି ନିରତ ଚିତ୍ତ
ଅଭେଇ ଦିନକୁ ଏ ଭବେ ଆସି
ଦେଖିଲି ଦୁନିଆଁ ରହସ୍ୟ ରାଶି

କରି ଆୟତ ମାନସ ଯେ
ଅଣ୍ଟା ହାତ ଖାଲି ଥିବ ଗଲେ ଭବୁଁ
ରହୁ ହୃଦୟ ହରଷ ।

ଯେଉଁ ପାଇଁ ଯିଏ ସଂସାର ରୀତି
ଅର୍ଥ ଲାଗି ସିନା ବଢେ ଅପ୍ରୀତି
ବୃଥା କଳ୍ପନାରେ ଆଧୁଛି ଦୁଃଖ
ଛାଡ଼ଲେ ଲୋଭକୁ ମିଳଇ ସୁଖ

ଧାଇଁଲେ ଆଶା ପଛରେ
ଲାଗି ରହିଥିବ କଷଣ ଜୀବନେ
ଘବନ୍ତୁ ଶୁଦ୍ଧ ହୃଦରେ ।

କ୍ଷମତା ନିମିତ୍ତ ନିତି କନ୍ଦଳ
ଦେଖନ୍ତି ଚୌଦିଗେ ଲୋକ ସକଳ
ତଥାପି ତହିଁରେ ଲାଖୁଛି ମନ
ବୃଥା ସରୁଅଛି ଅର୍ଜିତ ଧନ

ଅନ୍ୟାୟ ପରଦା ଘୋଡାଇ ରଖିଛି
ମନକୁ ସଦା ଯାହାର
ନ୍ୟାୟ ଲାଗି କେବେ ଡାକିଲେ ତାହାକୁ
କରିବ କି ସୁବିଚାର ।

(ରାଗ–ରାମକେରି)

ଦେଶପ୍ରୀତି ଅଛି ଯାହାର ଭାଇ, ଆଗକୁ ଆସ
ଅନ୍ୟାୟ ବିରୋଧେ ଲଢ଼ିବା ଥିବାଯାଏ ନିଃଶ୍ୱାସ ।

ଦେଖୁଅଛ ଲୁଟି ଚାଲିଛି ପାଟି ଫିଟୁନି କାର
ଯେଝା ବାଟ ଖୋଜି ବୁଲନ୍ତି କରି ଅସଦାଚାର ।

ପାପ ପୁଣ୍ୟ ବେନି ରହିଛି ସବୁ ଯୁଗରେ ଭବେ
ବିଚାରୁ ଥିଲେ ତା ମଣିଷ ଲୁଟି ନଥାନ୍ତା ଲବେ ।

ଡିଲେ କେହି ଖବୁ ନାହାନ୍ତି ଦୁନିଆଁର ରୀତିକି
ଚିନ୍ତୁ ଥିଲେ ଦେଶ ଭିତରେ ଆଣିଥାନ୍ତେ ନୀତିକି ।

ଶତ ଶତ ବର୍ଷ ଯାଇଛି ହୋଇ ପର ଅଧୀନ
ଗାନ୍ଧିଜୀ ଅହିଂସା ମନ୍ତ୍ରରେ ହେଲା ଦେଶ ସ୍ୱାଧୀନ ।

କେତେ ମାଡ ଜେଲ ଭୋଗିଲେ ଦେଶୁଁ ଅମରି ପାଇଁ
କହନ୍ତୁ ଏ ଦେଶବାସୀଏ ତାଙ୍କ ଚିହ୍ନଟି ନାହିଁ ।

ଅରଟ ଡାକୁଡ ହାତରେ ଧରି ଗାଆଁକୁ ଗାଆଁ
ବୁଲୁଥିଲେ ଖର ଶୀତରେ ଅଛି କେଉଁଠି ନାଆଁ ।

ତ୍ୟାଗ ଛାଡ ଭୋଗେ ମାତିଲେ ଦେଖୁଁ ଶାସକ ଗଢି
ପ୍ରସରିଲା ମଦ ସର୍ବତ୍ର ଲୋକେ ଦରିଦ୍ର ଆଜି ।
କେତେ ନରହତ୍ୟା ଚାଲିଛି ଦେଶ ନିର୍ବାଚନରେ
ଗାନ୍ଧିଜୀ ଆଦର୍ଶ ଏହିକି ଲୋକେ ଭାବନ୍ତୁ ଥରେ ।

ଯୁବକ ସମସ୍ତେ ଅତ୍ୟାୟ ଲାଗି କରି ଲଢାଇ
ଆସିକା ବେଙ୍କରେ ନମୁନା ଦେଇଅଛ ଦେଖାଇ ।

ଆସିବା ସମୟେ ଆନନ୍ଦ ନ ଦେଖୁଛି କେ ଭବେ
ଫେରିଲା ବେଳରେ କ୍ରନ୍ଦନ ଶୁଣୁଛନ୍ତି ସରବେ ।

ଏଣେ ଆସୁଛନ୍ତି ସମସ୍ତେ ଖାଲିଥିବା ହାତରେ
ପୁଣି ଫେରୁଛନ୍ତି ଧରାରୁ ଶୂନ୍ୟ ଥିବା କରରେ ।

ସାଗରର ଢେଉ ଉଠୁଛି ପୁଣି ପଡୁଛି ଯଥା
ମଣିଷ ଜୀବନ ନୁହଁକି ଅନବରତ ତଥା ।

ଉଠାଣି ଗଡାଣି ବାଟରେ ନ ପଡେ କା ଦୃଷ୍ଟିରେ
ଓଲଟ ପାଲଟ ଚାଲିଛି ନିରନ୍ତର ସୃଷ୍ଟିରେ ।

ତେଣୁରେ ମଣିଷ କାହିଁକି ଏତେ କରୁଛୁ ଲୋଭ
ଧୀର ମନେ ବିଚାରିଲେ ତୁ ନିଶ୍ଚେ ଆସିବ କ୍ଷୋଭ ।

ବିଚାର ଶକତି ପାଇଛୁ ପୁଣି ଅଛି ବିବେକ
ଜୀଇଁଥିବା ଯାଏ ରଖିଥା ତୋର ଜୀବନେ ଟେକ ।

କେଉଁ ମୁହୂର୍ତ୍ତରେ କିଏସେ ଛାଡ଼ ଏ ଭବ ଧାମ
ଯାଉଅଛି ଫେରି ଲୋଚନେ ପଡେ ତା ଅବିରାମ ।

କିଏସେ ଜାଣୁଛି କାହାର କେବେ ପୂରିବ କାଳ
ଫେରିଯିବ ଭବ ଭୂଇଁରୁ ଛାଡ଼ ନାନା ଜଞ୍ଜାଳ ।

ସୃଜନ ରୀତିକି ମଣିଷ ଚିନ୍ତା କରିଲେ ଲବେ
ହୋଇଯିବ ପୋଛି ହୃଦରୁ ଛନ୍ଦ କପଟ ଜବେ ।

କିଏସେ ଜାଣୁଛି କାହାର କେବେ ପୂରିବ କାଳ
ଫେରିଯିବ ଭବ ଭୂଇଁରୁ ତେଜି ନାନା ଜଞ୍ଜାଳ ।

ଆଗେଇ ଯାଇଛି ମଣିଷ କରିବାକୁ ଅନ୍ୟାୟ
ଭାବୁଛି ଜୀବନ ପଥରେ ସେହି ଏକା ସହାୟ ।

ରହିଅଛି ଛପି ହୃଦୟେ ସ୍ୱାର୍ଥ ଅନବରତ
ଦେଖାଉଛି ବାଟ ଲୋକକୁ ତେଜି ମହତ ସତ ।

ତା କବଳେ ଯିଏ ପଡୁଛି କରେ ଚୌଦିଗେ ହାନି
ତେଣୁରେ ଚାଲିଛି ଶାସନ ଗାନ୍ଧୀ ବାର୍ତ୍ତା ନ ମାନି ।

ଗାନ୍ଧୀ ଉପଦେଶ ନ ଜାଣି ଦଳେ ଗାଦିରେ ବସି
ଯାହା ଇଚ୍ଛା ତାହା କରନ୍ତି ନିଜ ଲାଭରେ ରସି ।

କ୍ଷମତା ନିମିତ୍ତ ଅତି ଲାଳାୟିତ
କରୁଅଛୁ କର୍ମ ଅତି ଅବାଂଛିତ ।

ଅନ୍ୟାୟ ଅନ୍ୟାୟ ଶୁଭୁଛି ରଡ
ବୋଲନ୍ତି ଶାସକ ନ ଧରି ଖଡ ।

ଠକାମି ଅଧ୍ୱଟି ଦେଖାଏ ବାଟ
ଲାଗିଛି ଏପରି ଦୁନିଆଁ ନାଟ ।

ପାପ ଅବା ପୁଣ୍ୟ ନାହିଁ ବିଚାର
ଧନ ଅରଜନ ହୋଇଛି ସାର ।

ଧାଇଁଛି କ୍ଷମତା ଆଶା ପଛରେ
ବୋହିଲାଣି ଝାଳ ଦେଖନ୍ତି ନରେ ।

ଭଗଟିଏ ବୋଲି ଦେଲା ନାଟୁଆ
ତାକୁ ଶୁଣିଦେଲା ଜଣେ ବାଟୁଆ ।

ଟେବଲ୍ ଉପରେ ଫାଇଲି ଗଦା
ବର୍ଷ ବର୍ଷ ଧରି ହେଉଛି ଲଦା ।

ନ ମିଳିଲେ ଲାଞ୍ଚ ରହୁଛି ପଡ଼
ଶୁଖିଲ ପତର ପଡ଼ୁଛି ଝଡ଼ ।

ଲାଗିଅଛି ନାଟ ଏ ସାରା ଜୀବନ
ଅରଜିବା ଧନ ଖାଇଥିବା ଧନ ।

ଆଜି ଯେ ଶାସକ କାଲି ସେ ଶାସିତ
ଓଲେମ ବିଲେମ ସବିତ୍ର ବିଦିତ ।

ଭିକାରିକି ମୁଠେ ଦେବା ପାଇଁ ଭତ
ହାଣ୍ଡିକି କାହାର ଯାଉ ନାହିଁ ହାତ ।

ଗଲାଣି ଉଭେଇ ଆସ୍ତିକତା ଆଜି
ବ୍ୟାପୁଛି ଚୌଦିଗେ ନାସ୍ତିକତା ଗଜି ।

ଦୂର୍ବଳିଗ୍ଧ ଯାହା ଅଛିକି ଦେଶରେ
ନୈରାଶ୍ୟ ପବନ ବହୁଅଛି ଖରେ ।

ନାସ୍ତିକତା ଯାଇ ବସୁଛି ଉପରେ
ଆସ୍ତିକତା ଖସି ରହିଲାଣି ଘରେ ।

ଅଛି କି ଭାବନା ଦେଶ ପାଇଁ କାର
ଚାଲିଛି କେବଳ କ୍ଷମତା ବିସ୍ତାର ।

ବ୍ୟର୍ଥେ ପରିଣତ ହୋଇଛି ଯୋଜନା
ତା'ର ସଫଳତା କରେ କେ କାମନା ।

ଆତ୍ମସାତ୍ ବଢୁ ଅଛି ଦିନୁଁ ଦିନ
କେହି ନ ଜାଣିଲେ ଜାଣୁଛନ୍ତି ଜନ ।

ନିମକ ହାରମ ନୁହଁକି ଏ ଦେଶ
ନମାନି ବଚନ ମହାତ୍ମାଙ୍କ ଲେଶ ।

ଆଫ୍ରିକାରୁ ତାଙ୍କୁ ଆଣିଲେ ଡକାଇ
କି ଯଶ ପାଇଛ ତାହାଙ୍କୁ ମରାଇ ।

ସର୍ବସ୍ୱ ବରଜି କେତେ ମାଡ ଖାଇ
ଖାଲି ଶୁଣି ଶୁଣି କେତେ ଜେଲ ଯାଇ ।

ସତ୍ୟ ଅହିଂସାରେ ଆଣିଥିଲେ ଦେଶ
ତାଙ୍କ ଚିହ୍ନ କାହିଁ ଅଛିକିରେ ଲେଶ ।

ଅନୀତି ପସରା ନେଇଅଛ ବାନ୍ଧ
ସତ୍ୟ ଅହିଂସାକୁ ଦେଇଛ ଉପାଡ଼ ।

ଚଉଦିଗେ ଦେଖୁ ସିନା ହଣାହଣି
ଅବା ମଦ୍ୟପାନେ ଲାଗେ ଝୁଣାଝୁଣି ।

ତାଙ୍କ ଉପଦେଶ ତାଙ୍କ ନିର୍ବାଚନ
ଜାଣିଛିକି ପଦେ ଏବର ଶାସନ ।

କାହିଁ ଗଣ୍ଡଗୋଳ ବୃଥା ଖର୍ଚ୍ଚ ଅର୍ଥ
ଶାସକେ ସେସବୁ କରିଛନ୍ତି ବ୍ୟର୍ଥ ।

କୋଟି କୋଟି ଟଙ୍କା ସରୁଛି ଦେଶର
ପଡ଼ଲାକି ଦୃଷ୍ଟି କେବେ ଶାସକର ?

ଗାନ୍ଧୀ ନାଆଁରେ ଲଗାଇ କଳଙ୍କ
କସା ଯାଉଅଛି ଅଙ୍କ ପରେ ଅଙ୍କ ।

କିଏ ନ ଦେଖୁଛି ବିଧାତା ବିଧାନ
ପ୍ରତି ମୁହୂର୍ତ୍ତରେ ଏ ସାରା ଜୀବନ ।

ଏ ଜାତି ମହତ୍ୱ ଏ ଜାତିର ଧର୍ମ
ଯାଇଛି ପାସୋରି ଆଶ୍ରୟି କୁକର୍ମ ।

ଚାଉଅଛି ଗୀତ ଆମ୍ଭଡାଳେ ପିକ
ପୁଲକିତ କଣ୍ଠେ ବୋଲି ଧିକ ଧିକ ।

ଆସି ଖାଲି ହାତେ ଯାଉ ଖାଲି ହାତେ
ଧୂଳି ପକାଉଛୁ ଖାଉଥିବା ଭତେ ।

ନ ବୁଝିବା ଯାଏଁ ଏତିକି ମଣିଷ
ପାଇବ କି କେବେ ବିଧାତା ଆଶିଷ ।

କି ବୋଲିବେ ଜନେ ଉଦୁଁ ଗଲେ ଫେରି
ଅବା ପାଶେ କେହି ରହିଥିଲେ ଘେରି ।

ଏତିକି ବିଚାରି କରୁଥିଲେ କର୍ମ
ପାଶେ ପାଶେ ଥିବ ଅବିରମ ଧର୍ମ ।

ଏବ ନିର୍ବାଚନେ ଗାଆଁ ଭଗ ଭଗ
କେତେ ପ୍ରାଣହାନି ନହେଲେ ସଜାଗ ।

କୋଟି କୋଟି ଅର୍ଥ ହୁଏ ଅପବ୍ୟୟ
ଏଥିଲାଗି ଦାୟୀ ଶାସକ ନିଶ୍ଚୟ ।

ବିନା ଅର୍ଥ ବ୍ୟୟେ ଦେଶ ନିର୍ବାଚନ
ହେବା ଲାଗି ପଣ ମହାତ୍ମା ଲିଖନ ।
ନୀତି ନିୟମକୁ ଦେଇଛନ୍ତି ଲେଖି
ଚାଲିଛି ଶାସନ ତାହାକୁ ଉପେକ୍ଷି ।
ରହି ନାହିଁ ତ୍ରାଣ ସୃଷ୍ଟିରେ କାହାର
ଏତିକି ମଣିଷ ନକରେ ବିଚାର ।
ରହିଥିଲା ଯିଏ ଦୋଚାଲା କୋଠାରେ
ଦେଖୁନାହିଁ କିଆଁ ଆଜି କେଉଁଠାରେ ।
ନ ବୁଝିବ ଯିଏ ନିଜର ଅନ୍ୟାୟ
ଶିଖାଇବ କିଏ ତାହାକୁ ଉପାୟ ।
ନେବ ନାହିଁ କିଛି ଯିବରେ ବାହାରି
କର ନିତି କର୍ମ ସୃଷ୍ଟିକି ବିଚାରି ।
ମଣିଷ ଜୀବନ ପାଚିଲା ପତର
କେବେ ଫେରିଯିବ ଲୋକ ଅଗୋଚର ।
ଧନ୍ୟରେ କ୍ଷମତା ତୋର କୁମନ୍ତ୍ରଣା
ହେତୁ ଦେଶ ଭୋଗେ ବିବିଧ ଯନ୍ତ୍ରଣା ।
ଗାନ୍ଧିଜୀ ଆଦର୍ଶ ଗାନ୍ଧୀ ଉପଦେଶ
ନାହିଁ ଏ ଦେଶରେ କେଉଁଠାରେ ଲେଶ ।
ଯାହା ଯୋଗୁଁ ଆଜି ବସନ୍ତି ଗାଦିରେ
କୃତଘ୍ନ କୃତଘ୍ନ ବୋଲନ୍ତି ମହୀରେ ।
କେତେଦିନ ପାଇଁ କାହାର କ୍ଷମତା
ରହିଛି ମହୀରେ ଦେଖୁଛି ଜନତା ।
ପୂର୍ବଜନ୍ମ ପାପ ଗୋଡ଼ାଇ ଗୋଡ଼ାଇ
ଦେଉଅଛି ଦଣ୍ଡ ଲୋକଙ୍କୁ ଦେଖାଇ ।
କିଏ ନ ଦେଖୁଛି ଜନ୍ମ ପାଇ ଭବେ
ଅଛିକି କାହାର କେବେ ଚିନ୍ତା ଲବେ ।
ଧନ୍ୟ କଳିଯୁଗ ଧନ୍ୟ ଲୋକଗଣ
ହୋଇଛି କି କା'ର ଆଶାର ପୂରଣ ?
ଧିକରେ କ୍ଷମତା ଧିକ ତୋ ଲାଳସା
ଶୁଣୁ ନିନ୍ଦା ପୁଣି ହେଉ ଲୋକହସା ।

ଉଠୁଛି ପଡୁଛି ଲହରୀ ଯେସନ
ମଣିଷ ଜୀବନ ନୁହଁକି ତେସନ ।
ତେଣୁରେ ମଣିଷ ଛାଡ଼ ଅହଂକାର
କରିବୁ ଜୀବନେ ନିରତ ବିଚାର ।
ଜନମେ ଆନନ୍ଦ ମରଣେ କ୍ରନ୍ଦନ
କରୁଛି ମଣିଷ ନିତ୍ୟ ଦରଶନ ।
କରୁଛନ୍ତି ଯିଏ ଏ ବିଶ୍ୱ ଶାସନ
ତାଙ୍କ ପଦ ଧ୍ୟାୟୀ ଯାଉ ମୋ ଜୀବନ ।
ଯାଉଛି ଉଭେଇ ମଣିଷ ପଣିଆ
ତେଣୁ ଆଜି ଲୋକ ପର ଗୋଡାଣିଆ ।
କରୁଅଛି ଅନ୍ଧ କେବଳ କ୍ଷମତା
ଯାଉଅଛି ଲିଭି ପୂର୍ବର ସଭ୍ୟତା ।
ଆଜି କୋଟିପତି କାଲିକି ଭିକାରି
ଏଥିପ୍ରତି ଦୃଷ୍ଟି ନପଡ଼େ କାହାରି ।
ଗରୀବ ଉପରେ ଧନୀର ପ୍ରହାର
ବଢୁଛି କି ନାହିଁ କରନ୍ତୁ ବିଚାର ।
ବଢିବାରୁ ଦେଶେ ଅନ୍ୟାୟ ଗଡ଼ଡ଼
ମଣିଷର ଆଜି ଯାଉଛି ମହତ୍ତ୍ୱ ।
କ୍ଷମତା ନିମିତ୍ତ ଅନ୍ୟାୟ ସରଣୀ
ଖୋଜୁଅଛି ଲୋକ ଦେଖୁଛି ଧରଣୀ ।
କେଉଁଠାରେ ନାହିଁ ପୂର୍ବର ଗୌରବ
କରନ୍ତି ଶାସକେ ଚିନ୍ତା ଅବାସ୍ତବ ।
ଗରୀବ ଘଟରେ ପଡୁଅଛି ଧୂଳି
ଜଳିବରେ ଦିନେ କୁହୁଳି କୁହୁଳି ।
ଅବାସ୍ତବ ଚିନ୍ତା ଅବାସ୍ତବ ରୀତି
କଦାପି ଲୋକର ନୁହ ଦେଶପ୍ରୀତି ।
ଗୋଡ଼େଇଛି ଲୋକ ଲୋଭ ପଛରେ
ଅବିରମ ମନ ରଖି ଧନରେ
କରୁଅଛି ଇଚ୍ଛାମତେ କରମ
ନଜାଣି କିଂଚିତ ସୃଷ୍ଟି ମରମ

ପଡ଼ ଆଶା କବଳରେ ଯେ
ଭଲ ମନ୍ଦ ତତ୍ତ୍ୱ                    କେ ବୁଝୁଛି ଆଜି
ରହି ଆପଣା ଲୋଭରେ ।

ଜନମେ ଖାଲି ହାତ ମରଣେ ତଥା,
ସୃଷ୍ଟି ସୃଜନରୁ ବିଧାତା ପ୍ରଥା ।
ଜନ୍ମିଲେ ଆନନ୍ଦ ମଲେ କ୍ରନ୍ଦନ,
ଚିନ୍ତୁ ଲୋକ ସଦା ସୃଷ୍ଟି ସୃଜନ ।

## 'ସୃଷ୍ଟି ରହସ୍ୟ'

ନିକିତିକି ଧରି ତଉଲ ସଦା ନ୍ୟାୟ ଅନ୍ୟାୟ,
କିପରି ପାଇବ ମୁକତି ଖୋଜ ତା'ର ଉପାୟ ।

କେତେଦିନ ବଂଚି ରହିବ କରୁଅଛ କଳ୍ପନା,
ବଂଚିଥିବା ଯାଏଁ ଭୋଗୁଛ ଅଙ୍ଗେ ନାନା ଯାତନା ।

ଆୟୁ କ୍ଷୟ ହୋଇ ଯାଉଛି ଲିତାବିଲିତ ଧରି,
ଭଲମନ୍ଦ କଥା ବିଚାରି ଦିନ ଯାଉ ତ ସରି ।

ସୁଖମୟ ହେବ ଜୀବନ କଲେ ଚିତ୍ତ ନିର୍ମଳ,
ନିନ୍ଦା ଅପବାଦ ନ ଶୁଣ ପିଇ ସ୍ୱାର୍ଥ ଗରଳ ।

ପୂର୍ବ ଜନ୍ମ ଧର୍ମ ହେତୁରୁ ପାଇ ମଣିଷ ଜନ୍ମ,
ପ୍ରାଣ ଥିବାଯାଏଁ ହୃଦୟେ କେବେ ନରଖ ଛଦ୍ମ ।

ପାପ ପୁଣ୍ୟ ଛଡ଼ା ସମ୍ମାନ ଯାଉଛି କି ସଙ୍ଗରେ,
କର୍ତ୍ତବ୍ୟ କରମ ନ ଛାଡ଼ ଥିବା ଯାଏଁ ଭବରେ ।

ଓଲୋମ ବିଲୋମ ନିରତ ଲାଗି ରହିଛି ଭବେ,
ସୃଷ୍ଟିର ରୀତିକି କିଏସେ ଭବୁଅଛି କି ଲବେ ।

ପାଇଛି ମଣିଷ ବିବେକ, ତାର ନଶୁଣି ଡାକ,
ଇଚ୍ଛାମତେ କରି ଯାଉଛି ଲୋକ ଜୀବନଯାକ ।

ବିଧାତା ବିଧାନ ବିଷୟରେ ମନ ନବଳେ କା'ର,
ମୃଗତୃଷ୍ଣା ପଛେ ଧାଇଁବା ଏବେ ହୋଇଛି ସାର ।

ଜାଣି ଜାଣି ନ୍ୟାୟ ହୁଡ଼ୁଛି ଛନ୍ଦ ହୋଇ ଲୋଭରେ,
ଜନତା ମରଣ ରହସ୍ୟ ଦିନେ ନଭାବି ଥରେ ।

ଆସିବା ଫେରିବା ଲାଗିଛି ଯଥା ହସ କାନ୍ଦରେ,
ତଥା ଶୂନ୍ୟ ହାତ ରହୁଛି ଜନ୍ମ ମୃତ୍ୟୁ କାଳରେ ।

ଏ ବିଚିତ୍ର ସୃଷ୍ଟି ସନ୍ତତ ଦେଖି ଦେଖି ମଣିଷ,
କରିଯାଉ କର୍ମ ସଂସାରେ ଚିହ୍ନି ପୀୟୂଷ ବିଷ ।

ଅବାଟେ ପଶିଲେ ବାଜିବ ପାଦେ କଣ୍ଟା ଅବଶ୍ୟ,
କରିଯାଅ କର୍ମ ନିରତ ଭାବି ସୃଷ୍ଟି ରହସ୍ୟ ।

କେଉଁ ମୁହୂର୍ତ୍ତରେ କାହାର ପ୍ରାଣ ଯାଉଛି ଉଡ଼
ସାର୍ଥକ ମଣିଷ ଜନମ ନ ଆସିବ ବାହୁଡ଼ ।

ହଜାର ହଜାର ବରଷ ହୋଇ କୀଟ ପତଙ୍ଗ,
ପାଇବୁକି ଅନ୍ୟ ଜୀବନେ କେବେ କାହାର ସଙ୍ଗ ।



# ପଂଚମ-ସ୍ତବକ

ଲୋଭ ମଣିଷର ବଡ ଅଗତି,
କଲେ ପରିହାର ମିଳଇ ଶାନ୍ତି ।
ନାମ ନେଲେ ସିନା ଅଛି ମୁକତି,
ଥୟ ରଖୁଥିବ ସନ୍ତତ ମତି ।
ମିଛକୁ ବରଜି କହିବ ସତ,
ଶ୍ରମ ବଳେ ଜିଣ ସଦା ଜଗତ ।

# ଚେତନାବଳୀ-୧

## ଜଣାଣ

ବ୍ରହ୍ମାଣ୍ଡ କରତା ପରମେଶ୍ୱର
ଭକ୍ତି ଭରେ ନମି ସଦା ପୟର ।
ନଜାଣି କରିବା ପାପ ଜୀବନେ
ତୁମେ ଏକା ପ୍ରଭୁ ତା'ର ଖଣ୍ଡନେ ।
ଦୟାମୟ ବୋଲି ଡାକେ ଜଗତ
ରଖିଛି ତା ହୃଦେ ଅନବରତ ।
କେ ବୁଝି ପାରୁଛି ତୁମ ମହିମା
ତୁଚ୍ଛାକୁ ଦେଖାନ୍ତ ସଦା ଗରିମା । (ଗର୍ବ)
ଲୋଭକୁ କରି ଦମନ (ଯେ)
କ୍ଷଣସ୍ଥାୟୀ ବୋଲି ଜୀବର ଜୀବନ
ମନେ ପଡୁ ଅନୁକ୍ଷଣ ।

⊙ ⊙ ⊙

ଯାହା ନାମ ଦୟାନିଧି
ସେ ନାମ ନେବରେ ନିରତ ବିଧି
ବାଇମନରେ, ଲଭିବା ଶେଷରେ ସିଦ୍ଧି ।

ଓଲଟ ପାଲଟ ସୃଷ୍ଟି
ଏଥିପ୍ରତି କା'ର ପଡେ କି ଦୃଷ୍ଟି
ବାଇମନରେ, ଦେଖୁଛୁ ଅଲୋଡ଼ା ବୃଷ୍ଟି ।

ନିରଞ୍ଜନ ଯା'ର ନାମ
ଦେଖୁଛନ୍ତ ସବୁ ଲୋକର କାମ
ବାଇମନରେ, ଅଛିକି ତାଙ୍କ ବିଶ୍ରାମ ।

ମଣିଷ ଜନମ ପାଇ
ବୃଥା କଳ୍ପନାରେ କାଳ ବିତାଇ
ବାଇମନରେ, ବିବେକ ବୁଦ୍ଧି ହରଇ ।

ଦିନୁଦିନ ଆୟୁ କ୍ଷୟ
ଦେଖୁନାହୁଁ କିରେ ତୋ ନେତ୍ରଦ୍ୱୟ
ବାଇମନରେ, ଭବିଲେ ଲାଗୁଛି ଭୟ ।

ଜନମ ମରଣ ନିତି
ନଦେଖୁଛି କିଏ ଦୁନିଆ ରୀତି
ବାଇମନରେ, ନରହୁ ସ୍ୱାର୍ଥରେ ପ୍ରୀତି ।

ଚିନ୍ତୁଥିବୁ ଥରେ ଥରେ
କିଏସେ କାହାର ଏହି ଭବରେ
ବାଇମନରେ, ଫେରିବା ଖାଲି ହାତରେ ।

ଗପି ଗପି ମିଛ ସତ
କଟୁଛି ସମୟ ଅନବରତ
ବାଇମନରେ, ନଭବି କେ ଭବିଷ୍ୟତ ।

ଚିତ୍ତ ଯେବେ ଥିବ ଶୁଦ୍ଧି
ଆପେ ଆପେ ଆସି ଯିବରେ ବୁଦ୍ଧି
ବାଇମନରେ, ଛାଡ଼ଦେ ମନରୁ ଋଦ୍ଧି (ଧନ) ।

ପଦ କ୍ଷମତା ମୋହରେ
ଛଟପଟ ଯଥା ମୀନ ଜାଲରେ
ବାଇମନରେ, ହେଉଛି ଲୋକ ଭବରେ ।

ବଢ଼ଲେ ପାପ ହୃଦରେ
ଯେସନ ଲୁହାରେ କଳଙ୍କ ଧରେ
ବାଇମନରେ, ତେସନ ପରିଣାମରେ ।

ଲୋଭକୁ କରି ଦମନ
ଧରମେ ରଖିଲେ ସନ୍ତତ ମନ
ବାଇମନରେ, ସୁଖରେ ଯିବ ଜୀବନ ।

କ୍ଷଣସ୍ଥାୟୀ ଏ ଜୀବନ
ନଦେଖୁଛି କିରେ କାହା ଲୋଚନ
ବାଇମନରେ, ଛାଣିବ କଲେ ଚିନ୍ତନ ।

ଲଭ ମହତକୁ ଡରି
କରମ କରିବ ଧର୍ମ ଆଚରି
ବାଇମନରେ, ସ୍ୱାର୍ଥକୁ ଦମନ କରି ।

ଆପଣା ସୁଖ ନିମିତ୍ତ
ବଳୁଛି ନିରତ ଲୋକର ଚିତ୍ତ
ବାଇମନରେ, ଯେନକେନ ଅର୍ଜି ବିତ୍ତ ।

ମଦ ଗଞ୍ଜି ଘରେ ଘରେ
ନଦେଖୁଛି କିଏ ଗ୍ରାମ୍ୟେ ସହରେ
ବାଇମନରେ, ଉଚ୍ଛନ୍ନ ହେଲେଣି ନରେ ।

କିହେବ ଏ ଦେଶ ଦଶା
ନକଲେ ତା ଚିନ୍ତା ଲୋକ ସହସା
ବାଇମନରେ, ଶେଷେ ହେବ ଲୋକହସା ।

ମହାତ୍ମାଜୀ ଉପଦେଶ
ନାହିଁ କେଉଁଠାରେ ତହିଁରୁ ଲେଶ
ବାଇମନରେ, ନିମକ ହାରାମ ଦେଶ ।

ବର୍ଷାଦିନେ ବେଙ୍ଗ ରଡ଼
ଶୁଣୁଥିବେ ଲୋକେ ଘଡ଼କି ଘଡ଼
ବାଇମନରେ, କି ଲଭ ଦେଖାଇ ଛଡ଼ ।

ପଇଡ଼ ଭିତରେ ପାଣି
କିପରି ଆସୁଛି କିଏ ନ ଜାଣି
ବାଇମନରେ, ଦୁଷ୍ଟାକୁ ବୁଲନ୍ତ ପାଣି (ହାତ) ।

କଳିଯୁଗେ ଧରାଧରି
ନ୍ୟାୟକୁ ବରଜି ଅନ୍ୟାୟାଚରି
ବାଇମନରେ, କି ହେଲ ଦେଶ ଏପରି ।

ବିପ୍ଳବ ବୁଦ୍ଧି ବିବେକ
ନରଖି ମଣିଷ କାହାର ଟେକ
ବାଇମନରେ, ଏ ଧାମେ ହୋଇଣ ଏକ ।

ଆଲୁଅ ଅନ୍ଧାର ନୀତି
ନଦେଖୁଛି କିଏ ଏକଥା ନିତି
ବାଇମନରେ, ଆସୁ ପ୍ରଭୁ ପଦେ ଭକ୍ତି ।

ପୂଜାରୀ ହୋଇ ସ୍ୱାର୍ଥର
ମହତ୍ତ୍ୱ ବୁଡ଼ାଇ ଦେଲ ଦେଶର
ବାଇମନରେ, ଇଜ୍ଜତ ନାହିଁ ଲୋକର ।

⊙ ⊙ ⊙

ହୋମିଓ ଔଷଧ ଭଳି ନାହିଁ ଗୁଣ କା'ର
ଦେଖାଉଛି ବାରମ୍ବାର ଅତି ଚମତ୍କାର ।
ସମକକ୍ଷ ହେବା ପାଇଁ କେଉଁ ଚିକିତ୍ସାରେ
ନାହିଁ ରୋଗାରୋଗ୍ୟ ଲାଗି ସୂକ୍ଷ୍ମ ଉପାୟରେ ।
ନିର୍ଦ୍ଦୋଷ ସୁସ୍ୱାଦୁ ପୁଣି ଆଶୁ ଗୁଣକାରୀ
ଅତି ଊଣା ଖର୍ଚ୍ଚ ଯହିଁ ଜାଣୁ ନରନାରୀ ।
ଭଳି ଭଳି ଚିକିତ୍ସକ ଯାର ନାହିଁ ଲୋଡ଼ା
କାହିଁକିରେ ଦୀନ ଅର୍ଥ ହେଉଅଛି ପୋଡ଼ା ।
ଯେତେଦିନ ରହିଥିବ ଚନ୍ଦ୍ର ଦିବାକର
ରହିଥିବେ ହାନିମାନ ହୋଇଣ ଅମର ।
ବିପରୀତ ବିଧାନକୁ ସଦୃଶ ବିଧାନ
ବହୁ ସ୍ଥଳେ ହଟାଇଛି କରନ୍ତୁ ସନ୍ଧାନ ।
ଗରୀବ ଘରେ ଜନମି ଅକ୍ଳାନ୍ତ ଶ୍ରମରେ
ଢାଳିଛ ବିଦ୍ୟୁତାଲୋକ ସାରା ଭୁବନରେ ।
ଆଶୁ ପରିମାଣ ବିଷ ଅଛିକି ଏଥିରେ
ବିବେକକୁ ପୁଛି କହ କେ ଅଛି ମହୀରେ ।
ଟଂଚି ଚିପି ଦେଇଛନ୍ତ ଏଣେ ସରକାର
ଉଠାନ୍ତୁ ଆଶୁ ଆଇନ ଯାହା ଅପକାର ।
କରିଥିଲେ କଣ୍ଠରୋଧ ଅନ୍ୟ ପ୍ରଣାଳୀରେ
ଯହିଁ ବିଷ ପରିପୂର୍ଣ୍ଣ ଔଷଧାବଳୀରେ ।
ହୋଇଥାନ୍ତେ ଲୋକେ ଖୁସି ଯେଣୁ ଏ ଔଷଧ
ଆବିଷ୍କୃତ ହେବା ଦିନୁ ସର୍ବଦା ବିଶୁଦ୍ଧ ।
ହୋମିଓ ପାଥିର ଗୁଣ ଯେ ଦେଖିଛି ଥରେ
ସ୍ତମ୍ଭୀଭୂତ ହୋଇ ରହେ ଅତି ଆନନ୍ଦରେ ।

⊙ ⊙ ⊙

ଲାଞ୍ଚ ନେଇ ନେଇ ଘର କରୁ ପୂର୍ଣ୍ଣ
ଭାବୁନାହୁଁ କେବେ ଦିନେ ହେବ ଚୂର୍ଣ୍ଣ ।

ଆଣିଛୁ କଅଣ ? ନେବୁ ବା କଅଣ ?
ନ ଭାବି ଦେଖାଉ ସଦା ବଡପଣ ।

କେଉଁଠାରୁ ଆସି କେଉଁଠାକୁ ଯାଉ ?
ପୁଚ୍ଛିବୁ ମନକୁ ବେଳ ଥାଉ ଥାଉ ।

ଏକୁଟିଆ ଆସି ଯାଉ ଏକୁଟିଆ
ଦେଖୁଅଛି ଧନୀ ଦେଖୁଛି ମୂଲିଆ ।

ଦେଖୁଛି ଶାସକ ଦେଖୁଛି ଶାସିତ
କ୍ଷମତାରେ ଥାଇ କିଂପା ପୁଲକିତ ।

ଦେଖୁଛୁ ଆଲୋକ ଦେଖୁଛୁ ଅନ୍ଧାର
ଓଲୋମ ବିଲୋମ ବିଧାତା ବିଚାର ।

ଜୀବ ଶ୍ରେଷ୍ଠ ବୋଲି ବାଜୁଛି ବାଇଦ
ରହିନାହିଁ କାର ନିରତ ସଂପଦ ।

ଦଇବ ହାତରେ ମଣିଷର କଂଚି
ପଳାଇବ ଦିନେ ରଖିଥିଲେ ସଂଚି ।

ଠକିଲେ ପରକୁ ଠକାମିରେ ପଡ଼
ଆସିଲେ ତା ବେଳ କରୁଥିବୁ ରଡ଼ ।

ରହିଛି ବିବେକ ରହିଅଛି ବୁଦ୍ଧି
ବେଳ ଥାଉ ଥାଉ ଚିତ୍ତ କର ଶୁଦ୍ଧି ।

ପୂର୍ବ ସୁକୃତରୁ ମଣିଷ ଜନମ
ଭାବୁନାହୁଁ କେବେ ହେବାରୁ ଅଧମ ।

ଦେଖୁଛ ଯାହାକୁ ବାଟରେ ଘାଟରେ
ରଡ଼ ଶୁଭିଲାଣି ତା'ର ମରଣରେ ।

ଧନ ପାଇଁ ଆଜି କେତେ ଟଣାଟଣି
ଭାଇ ଭାଇ ମଧ୍ୟେ ଦେଖୁ ହଣାହଣି ।

ଦଇବର ଦଣ୍ଡ ଅଛି ଘରେ ଘରେ
ପଡୁନାହିଁ କିରେ କାହା ଲୋଚନରେ ।

ବାପାକୁ ମାରିଛି ପୁଅ ଇତିହାସେ
ସ୍ୱର୍ଣ୍ଣାକ୍ଷରେ ଲେଖା ନୁହ ପରିହାସେ ।

ଆପଣା ଲାଭରେ ନକର କରମ
କେତେବେଳେ ନୁହ ସୃଷ୍ଟିର ଧରମ ।

ଆସୁଛି ନିଜକୁ ଯେତେ ରୋଗ ବ୍ୟାଧି
ନିଜ କର୍ମଫଳ ଭୋଗୁଛି ଅବଧି ।

ସେ ଭାବନା କାର ନାହିଁ ଦିନେ ମନେ
ରହୁଅଛି ଚିନ୍ତା ଧନ ଉପାର୍ଜନେ ।

ଦେଇଛନ୍ତି ଯାହୋରି ଗାନ୍ଧୀ ଉପଦେଶ
ଦେଖୁନାହିଁ ।ହିଁ ଥିବାପରି ଲେଶ ।

ପକ୍ଷପାତ ନୀତି ସଦା ନିନ୍ଦନୀୟ
କେତେବେଳେ ତାହା ନୁହ କ୍ଷମଣୀୟ ।

୦ ୦ ୦

ତିନି ଯୁଗ ଯାଇ କଳି ଯୁଗରେ
ଜନମ ଯେତେକ ଏହି ଭବରେ
ଗୀତା ଭଗବତ ଥିବା ବଚନ
ନ ବୁଝିଲ ଲବେ କାହାରି ମନ

ପଡ଼ ଲୋଭ କବଳରେ ଯେ
ମନ ଇଚ୍ଛା ମତେ ଚାଲିଛି କରମ
ପାଠୁଆ ବୋଲାଇ ନରେ ।

ଟୁଙ୍କାକୁ ପଢନ୍ତୁ ପଇସା ସାରି
ପୂର୍ବ ପାଠ ପଢା ନାହିଁ କାହାରି
କରିଛି ପରୀକ୍ଷା ଛାତ୍ରଙ୍କୁ କେତେ
ଯଥାର୍ଥ ଉତ୍ତର ନପାଏ ସେତେ

ନ ଆସିଲେ ଭକ୍ତି ମନେ
ସରସ୍ୱତୀ କଣ୍ଠେ ନ ରହିବେ କ୍ଷଣେ
ବୁଝୁ ଅବୁଝା ଜୀବନେ ।

ଗୁରୁଭକ୍ତି ରଖି ଛାତ୍ର ସକଳ
ଚଳିଲେ ସେ ହେବେ ଏକା ସମ୍ବଳ
ତାଙ୍କ ହୃଦୟରେ ନଦିଅ ବ୍ୟଥା
ନକରି କରନ୍ତୁ ଯୁକ୍ତି ଅଯଥା

ପରୀକ୍ଷା କେନ୍ଦ୍ରରେ ବସି
କିଏ କେଉଁପରି    ଖୋଜୁଛନ୍ତି ସୂତ୍ର
ନାନା ଦୁର୍ନୀତିରେ ପଶି ।

ପରିଣାମ ଫଳ ବିଷମମୟ
ବିରତରହୁ ସଦା ଛାତ୍ର ନିଚୟ
ନିଜ ଜୀବନକୁ ନିଜେ ଗଢ଼ବ
କିପରି ସାର୍ଥକ ହେବ ଖୋଜିବ

ଶ୍ରମ ବିନା ଦିଏ ଫଳ
ନ ଯାପିଲେ କାଳ    ଅଯଥାରେ କେବେ
ଘଟିବ ସଦା ସୁଫଳ ।

ଇତିହାସ ସାକ୍ଷୀ ପୁଣି ଛାତ୍ରର
ଶୁଣିବ ବଚନ ଗୁରୁଜନର
ହୋଇଛନ୍ତି ବଡ଼ ଯେତେ ଭବରେ
ଘଟିଛି କି କେବେ ବିନା ଶ୍ରମରେ

ପରଖି ନିଜ ବିବେକ
କରୁଥିଲେ କର୍ମ    ନ ହେବ ନିଷ୍ଫଳ
ରଖରେ କୁଟୁମ୍ବ ଟେକ ।

ନିଜ ବାପା ମାଆ କେତେ କଷ୍ଟରେ
ପଢାନ୍ତି ପିଲାଙ୍କୁ ଲାଗି କ୍ଷେତରେ
ଖରା ବର୍ଷା ଶୀତ କାକର ସହି
କେବେ ବା କିଏସେ ଉପାସେ ରହି

ଭବିଷ୍ୟତ ଜୀବନରେ
ଉପାର୍ଜନ କ୍ଷମ    ହେଲେ ପିଲାମାନେ
ନଥିବ ଦୁଃଖ ମନରେ ।

ପିତୃ ମାତୃ ଋତୁ ଗୁରୁ ଭକତି
ରଖିଥିବ ଚିତ୍ତେ ନିରତ ମତି
ପୁରାଣ ଯୁଗରୁ ଅଛି ଆଦର୍ଶ
ଭୁଲ ନାହିଁ କେବେ ସେହି ଅମର୍ଶ

ଚରିତ୍ର ଗଠନେ ବ୍ରତୀ
ନହେଲେ ପିଲାଏ    ବିପଥରେ ଯାଇ
ଭେଟିବ ବିପତ୍ତି ତତି ।

ଯେତେ କୁଅଭ୍ୟାସ ପିଲାଦିନରୁ
କରିବ ଅନ୍ତର ଯେଝା ମନରୁ
ଶୁଦ୍ଧ ଆଚରଣେ ମିଳେ ପ୍ରଶଂସା
ନହେବ ଦାଣ୍ଡରେ କେ ଲୋକହସା

ଶ୍ରେଷ୍ଠ ମଣିଷ ଜୀବନ
ଅନ୍ୟାୟେ ନପଶି    ରଖିବ ବିଶୁଦ୍ଧ
ସନ୍ତତ ଅନ୍ତଃକରଣ ।

ବଡ଼ ନିରଳସ ମୋ ଦେଶ ଚଷା
ହେଉନାହିଁ କେବେ ସେ ଲୋକହସା
ଖରା ବର୍ଷା ଶୀତ କାକର ସହି
ଲାଗିଥାଏ ଖଟେ ଦିନେ ନ ରହି

ଧନ୍ୟ ଧନ୍ୟ ପରିଶ୍ରମ
ପରମେଶ ବିନା    କେ ତା ଦୁଃଖେ ଭାଗୀ
ସାର୍ଥକ ତା'ର ଜନମ ।

ଈଶ୍ୱର ଇଚ୍ଛାରେ ଭବ ଋଳିତ
ପିତୃ ମାତୃ ହରା ସଦା ଦୁଃଖିତ
କେ ଏଡ଼ ପାରୁଛି ବିଧି ବିଧାନ
ନ ବୁଝି ପାରନ୍ତି ଲୋକ ବିତାନ

ଦୁନିଆଁ ରୀତିକି ଦେଖି
ନ ଶିଖି ମଣିଷ    ପଶୁଛି ଅବାଟେ
ଲାଜ ମହତ ଉପେକ୍ଷି ।

ନାନା ଦଣ୍ଡ ଲୋକ ପାଏ ଜୀବନେ
ପଦେ ହେଲେ କେବେ ନରଖେ ମନେ
ରହୁଥିଲେ ହେତୁ ଆଶା ପଥରେ
ଧାଉଁ ନଥାନ୍ତା ସେ ଆଜି ଭବରେ

ବିଧିର ବିଚିତ୍ର ସୃଷ୍ଟି
ଜନମେ ଆନନ୍ଦ    ମରଣରେ କାନ୍ଦ
ପଡୁଛ କି କା'ର ଦୃଷ୍ଟି ?

ଖାଲି ହାତେ ଆସି ଖାଲି ହାତରେ
ଆସିବା ଯିବାଟା ନିତି ଭବରେ
ରହିଅଛି ଲାଗି ନଦେଖେ କିଏ
ତଥାପି ମାୟାର ଜାଲେ ପଡ଼ିଏଁ

ମୀନ ପରି ଛଟପଟ
ଆଖି ବୁଜି ଅବା                    କାନ ମୁଦି ଦେଇ
ରଖନ୍ତି ହିଂସା କପଟ ।

ନଦେଖି ଚୌଦିଗେ ଈଶ୍ୱରମୟ
ଆଶା ଜାଲେ ଆଜି ମାନବଚୟ
ସେପଟେ କୃଷ୍ଣଙ୍କୁ ଏପଟେ କୃଷ୍ଣ
ଧନାଗମ ପାଇଁ ନୋହି ବିତୃଷ୍ଣ

ନେଇ ପରର ସମ୍ପତ୍ତି
ଟିକେ ନ ବିରକ୍ତି                    ପର ଜନମକୁ
ଅର୍ଜନ୍ତି ନିଜ ବିପତ୍ତି ।

ଦଣ୍ଡ ଲିତା ଧରି ଆୟୁଷ କ୍ଷୟ
ଏଥିପ୍ରତି କା'ର ଅଛିକି ଲୟ
ଧାଉଁଛି ମଣିଷ ଆଶା ପଛରେ
ପଡ ନିରନ୍ତର ଲୋଭ ବଶରେ

ନାହିଁ କାହାର ଭବନା
ପରସ୍ୱ ହରଣ                    ମହାପାପ ବୋଲି
ଆସେ କି କେବେ ଚେତନା ।

ଗାନ୍ଧୀ ଉପଦେଶ କେହି ନ ପଢ
ଭଙ୍ଗନ୍ତ ଶାସନ ଘଡକି ଘଡ
ହେଉଛି ପଇସା ଅପଥା ଖର୍ଚ୍ଚ
ମନୋରଥ କା'ର ହେବାରୁ ବ୍ୟର୍ଥ

କୋଟି କୋଟି ଋଣ ଭର
ରଲିଅଛି ବଢ                    ସେ ହିସାବ ନାହିଁ
ହେଉଛି ସାର ଠିକ୍‌କାର ।

ଅଗଣିତ ଅର୍ଥ ହେଉଛି ଲୁଟି
ଜନତାର ଆଖି ଯାଉଛି ଫୁଟି
ନେବାରୁ ଆଶ୍ରୟ ଅସାଧୁତାର
ଗରୀବ ବାପୁଡା ହୁଏ ଶିକାର

ଗଡାଉଛି ଲୁହଧାର
ବେଳ ଥାଉ ଥାଉ                    ନ ଖୋଜିଲେ ବାଟ
ଭବିଷ୍ୟତ ଅନ୍ଧକାର ।

ବିରର କରନ୍ତୁ ଯେତେ ସାଧୁଏ
ଅବା ହାଣ୍ଡିଶାଳେ ଥିବା ବଧୂଏ
ଯାଉଛି ଶ୍ମଶାନ ଗଲ ଗୋଚର
ଅଛିକି ଗାଆଁରେ କାହିଁ ପଦର

ଯେ ଯାହା ବଳ ଖଟାଇ
ମିଳୁଅଛି ପଙ୍ଗା                    କୌଶଳୀକୁ ପର
ରହୁଛି ଦୁର୍ବଳ ଭଇ ।

ପ୍ରସବିଲ ଆଶା ସ୍ୱାର୍ଥ କ୍ଷମତା
ବେନିଙ୍କ ମଧ୍ୟରେ ଥିଲା ମମତା
ଦୁର୍ଭାଗ୍ୟରୁ ଦିନେ ଲାଗିଲେ କଳି
କ୍ରୋଧାଗ୍ନିରେ ହୃଦ ଯାଉଛି ଜଳି

କେ ନୁହେଁ କାହାକୁ ଊଣା
ସହସା କ୍ଷମତା                    ସ୍ୱାର୍ଥର ଆଖିକୁ
ଫିଙ୍ଗିଦେଲା ମୁଠେ ଝୁଣା ।

ପ୍ରଭୁ ଜଗନ୍ନାଥ କରୁଣାମୟ
ତବ ଶ୍ରୀଚରଣେ ରହୁ ମୋ ଲୟ
ନଥିବ ଆପଦ ନଥିବ ଭୟ
ହେବାଯାଏଁ ମୋର ଆୟୁଷ କ୍ଷୟ

ଏତିକି ମୋର ମାଗୁଣି
ସରିଯାଉ ଦିନ                    ଦୀନ ସେବା କରି
ତବ ନାମ ଗୁଣି ଗୁଣି ।

ଜନମେ ମରଣେ ଖାଲି ହାତଟା
ହସ ଦୁଃଖ କାନ୍ଦ ଦେଖୁଁ ଓଲଟା
ଦୁନିଆଁ ରହସ୍ୟ ବିଚିତ୍ରମୟ
ଚିନ୍ତିବାକୁ ନାହିଁ ଟିକେ ସମୟ

ନ ବାଛି ନ୍ୟାୟ ଅନ୍ୟାୟ
ସଦା ଲୋଭ ଲଭ                    କବଳରେ ପଡ
ନ ଦିଶଇ ସଦୁପାୟ ।

ଜୀବନ ଖେଳଟି ସରିବା ପରେ
ନାହିଁ ଭେଟ ଆଉ କାହା ସଙ୍ଗରେ
ପ୍ରବୃତ୍ତି ନିବୃତ୍ତି ଲଗାଇ ନାଟ
ଅନବରତ ତା ବସାଏ ହାଟ

ଶତ୍ରୁ ମିତ୍ର କ୍ଷଣେ କ୍ଷଣେ
ହୋଇ ପରସ୍ପର ଘଟାନ୍ତି ବିପ୍ଳବ
ଦେଖୁଅଛୁ ଅନୁକ୍ଷଣେ ।

ପର୍ଯ୍ୟାୟ କ୍ରମରେ ଜନ୍ମ ମରଣ
ଘଟୁଛି ଜୀବର ତା ଅନୁକ୍ଷଣ
ଏଣ୍ଡିପୋକ ଜୀବ କଲେ ଦର୍ଶନ
ସତ୍ୟତା ଜାଣିବ ତହିଁରୁ ଜନ

ହେଉଛି ଗତି କିପରି
ଦୁଇ ଇଞ୍ଚ ଲମ୍ବ ବଢ଼ ପ୍ରଥମରେ
ଜନ୍ମେ ପ୍ରଜାପତି ପରି ।

ନିଜେ ଖୋଷା କରି ରହେ ଭିତରେ
ତହିଁରୁ ବାହାରେ ବିଂଶ ଦିନରେ
ହେଉଛନ୍ତ ଯୋଡ଼ ଅଣ୍ଡିରା ମାଛ
ଦେଉଛନ୍ତ ଜମ୍ମ ବାହାରେ ଥାଇ

ମରଣ, ଦି ଦିନ ପରେ
ଦେଖି ସ୍ତମ୍ଭୀଭୂତ ନହେବ କିଏ ସେ
ଏ ରୀତି ବୁଝିଲେ ଥରେ ।

ନ୍ୟାୟ ଅନ୍ୟାୟକୁ ଦେଖି ଲୋକର
ଦେଉଛନ୍ତ ଦଣ୍ଡ ପରମେଶ୍ୱର
ବୁଝିବ କିପରି ଏ ଛାର ଜନ
ନଥିଲେ ମାନସେ ସୃଷ୍ଟି ଚିନ୍ତନ

ଅନୀତି ପଥୁଁ ଓହରି
ଚଳିବ ସନ୍ମାର୍ଗେ ବୁଝି ଆଜୀବନ
ସାଧୁତା ସଦା ଆଚରି ।

ନ ଆଣି ଆସିଛ ସଙ୍ଗରେ ଭବେ
ନେବ କିରେ କିଏ ଫେରିଲେ ଲବେ
ଜାଣୁଛି ମଣିଷ ବିଚିତ୍ର ନୀତି
ବଦଳୁ ଅଛିକି କାହାର ରୀତି

ସୁବିଚାର ଛାଡ଼ ଦେଇ
ଭାବୁଛି କି କେବେ ଛାଡ଼ିଲେ ଏ ଭବୁ
ଫେରିବି କିଛି ନ ନେଇ ।

ଧିକରେ ବିଚାର ଧିକ ମଣିଷ
ନ କରି ଚିନ୍ତନ ପିଉଛ ବିଷ
ବଡ଼ ଆଡ଼ୁ ଆସେ ଲୋଭ ବନ୍ଧନ
ନୁହଇ ସହଜ ତାର ମୋଚନ

ଶୟନେ କଲେ ଭାବନା
ଦୁନିଆଁ ରହସ୍ୟ ଚିନ୍ତା କଲେ ମନେ
ପଶିବ ଅବା ଚେତନା ।

ମୋ ଦେଶବାସୀ ଏ ଶୁଣ ଦି ପଦ
ଧନର ଲାଳସା ବଡ଼ ବିପଦ
ଛାଡ଼ଗଲେ ପ୍ରାଣ କି ନେବା ବହି
ନିତି ଚିନ୍ତୁଥିବା ଗତିରେ ଶୋଇ

ରହିଥିବ ହାତ ଖାଲି
କଡ଼ାଏ କଉଡ଼ ନଥିବ ଅଣ୍ଟାରେ
ଯେବେ ଭବୁଁ ଯିବା ଚାଲି ।

କିଏ କେଉଁ ଜନ୍ମ ପାଇବ ପରେ
ଆସିଲା କି ଚିନ୍ତା କାହା ମନରେ
ଜୀଇଁଥିବା ଯାଏଁ ଦେଖିଲୁ ଯାହା
ଅତି ଶିକ୍ଷଣୀୟ ନୁହଁକି ତାହା

ମାୟା ମୋହ ବନ୍ଧନରେ
ଦୁର୍ଲ୍ଲଭ ଜୀବନ ଯାଉଅଛି ସରି
ନ ଭାବଇ କେହି ଥରେ ।

ବିଚାର ବିବେକ ବୁଦ୍ଧି ହରଇ
ଶରଣ ପଶନ୍ତ ଅନ୍ୟାୟେ ଯାଇ
ଗୁଣ୍ଡାମି ଠକାମି ଖୋସାମତିଆ
ଶାସନ ବଳରେ ହେଲେ ବଢ଼ଆ

ଧନ୍ୟ ଧନ୍ୟ କଳିଯୁଗ
ସଂଯମକୁ ଛାଡ଼ ସ୍ୱାର୍ଥକୁ ଆଚରି
ଚଳନ୍ତ ମାନବ ପୂଗ ।

ଅହମିକା ବ୍ୟାଧି ଧରିଛି ନଳୀ
ଜଗୁଆଳ ହୋଇ ଲଗାଏ କଳି
ଡରୁଆ ପଳାଏ କିଛି ନ କହି
କେହି କେହି ପୁଣି ଯାଆନ୍ତ ସହି

ପଶିଣ ଖଳ ଶାସନେ
ଭଲମନ୍ଦ କିଛି ନ ବିଚାର କରି
ମନ ଧନ ଅରଜନେ ।

ପାପ ପୁଣ୍ୟ ଯାର ନାହିଁ ବିଚାର
ନାନା ନଷ୍ଟ କୁଟ ତାର ବେଭାର
ଅତୀତ ଭବିଷ୍ୟ ନଭାବି ଲବେ
ଚିରସ୍ଥାୟୀ ପରି କରମ କର

ମଣିଷ ଜୀବନ ପାଇ
ସୃଷ୍ଟିର ରୀତିକି ନ କରି ଚିନ୍ତନ
ଠିକ ତା ଜୀବନ ଥାଇ ।

ଧନ୍ୟ ଧନ୍ୟ ସ୍ୱାର୍ଥ ତୋର କବଳେ
ପଡ଼ ଲୋକ ଖେଳେ କଳ୍ପନା ଛଳେ
ବିଚାର ବିବେକ ବୁଦ୍ଧି ହରାଇ
ଦେଖାଇ ହେଉଛି ନିଜ ବଡ଼ାଇ

ଟିକେ ଚିନ୍ତା ନାହିଁ ଯାର
କେଉଁ ମୁହୂର୍ତ୍ତରେ ନ ଜାଣି କି ହେବ
ସେ କି ମଣିଷରେ ଗାର ।

କେତେବେଳେ ଉଡ଼ୁଁ ଯିବା ପଳାଇ
ଦୁଇକଡେ ଦୁଇ ହାତ ମେଲାଇ
କିଏ ଜାଣୁଅଛି ସୃଷ୍ଟି ବିଧାନ
ରହୁଅଛି ମନ ଧନରେ ଧ୍ୟାନ

ଛନ୍ଦ କପଟ ଆଚରି
ବାହାରନ୍ତି କେତେ ଟଂଟି ଚିପିବାକୁ
କୁମାର୍ଗେ ସଦା ବିଚରି ।

ଅଛି କି ଦୀନର ସାହା ଭରସା
ସର୍ବଦ୍ର ହେଉଛି ସେ ଲୋକହସା
ଡରୁଛି କି ଶୀତ ବରଷା ଖରା
ସବୁବେଳେ ତାର ମୁଣ୍ଡ ନୁଖୁରା

ଟର୍କାରି ତାହାର ଖଡ଼ା
ବରଷା ପାଣିରେ ଘର ବୁଡ଼ଲାଣି
ଝଲେ ନଥିବାରୁ ନଡ଼ା ।

ଜାତିସଂଘ ଦ୍ୱାରା ଦେଶ ନିନ୍ଦତ
ନିଜକୁ ଭାବନ୍ତି ଲୋକେ ପଣ୍ଡିତ
ଅର୍ଥ ଖର୍ଚ୍ଚ କରି କ୍ଷମତା ପାଇ
ମଣିଷକୁ ଆଜି କରୁଛି ବାଇ

ଅଗାବଗା ହୋଇ ରୁଣ୍ଡ
ସ୍ୱାର୍ଥକୁ ହୃଦୟେ ଦିବା ନିଶି ରଖି
ଦୁଜାକୁ କରନ୍ତି ଦୁଣ୍ଡ ।

ଗୋଡ଼ାଣିଆ କେତେ ସଙ୍ଗେ ବାହାରି
ଲାଭ ଆଶା ରଖି ମନେ ବିଚାରି
ବାବୁଙ୍କ ପ୍ରଶଂସା କରନ୍ତି ଦାଣ୍ଡେ
ବୁଲନ୍ତି ଆଗ୍ରହେ ଗାଆଁର ଖଣ୍ଡେ

ଧନ୍ୟ ଧନ୍ୟ କଳିଯୁଗ
ବିବେକ ବିଚାର ବୁଦ୍ଧି ଶୂନ୍ୟ ପରା
ହେଲେଣି ମାନବ ପୁଗ ।

ପାପାର୍ଜିତ ଧନ କିହେବ ପରେ
ବିଚାର କରିବ ଶୁଦ୍ଧ ଚିତ୍ତରେ
ଅବଶ୍ୟ ଜାଣିବ ଗାଆଁରେ ଘରେ
ଆଖି ବୁଲାଇଲେ ଚଉଦିଗରେ

କୁକର୍ମର ପରିଣାମ
ଭୋଗିବାକୁ ହେବ ଇହପର ଜନ୍ମେ
ଚିନ୍ତୁଥାଅ ଅବିରାମ ।

ଅଣ୍ଟାରେ ନଥିବ କଡେ କଉଡ଼ି
ଯେବେ ଭବ ଛାଡ଼ି ଯିବା ବାହୁଡ଼ି
କୋକେଇ ଦିପଟେ ଦୁଇ ପାପୁଲି
ଆପେ ଆପେ ପଡ଼ି ଥିବରେ ଝୁଲି

ପରମେଶ ଇଚ୍ଛା ମତେ
କିଏ କେଉଁ ଜୀବ ହେବ ଗଲେ ପ୍ରାଣ
ନଜାଣେ କିଏ ଜଗତେ ।

ଅସୀମ ଜୀବକୁ ଅସୀମ ସ୍ୱର
ବୁଝିପାରିବ କେ ଅନ୍ତ ବିଶ୍ୱର
ଶ୍ରେଷ୍ଠ ପ୍ରାଣ ପାଇ ମଣିଷ ଭବେ
ଆପଣା ଶରୀରୁ ନ ବୁଝି ଲବେ

ଗର୍ଭରୁ ପଡ଼ିଲେ ତଳେ
ସଙ୍ଗେ ସଙ୍ଗେ କୁଆଁ          କୁଆଁ ରଡ଼ କରି
କାନ୍ଦଇ କେତେ ବିକଳେ ।

ଯାହାଙ୍କ ଦୟାରୁ ଏ ଭବ ସୃଷ୍ଟି
ପଡ଼ୁଛି କି କେବେ କାହାର ଦୃଷ୍ଟି
ଯେତିକି ଅନ୍ୟାୟ କରୁଛି ଭବେ
ପାଆନ୍ତି ସେତିକି ଦଣ୍ଡ ମାନବେ

ଭବନ୍ତା ଯଦି ମଣିଷ
ଅବାଟକୁ ଛାଡ଼          ଚଳନ୍ତା ବାଟରେ
ପାଆନ୍ତା ଶଂସା ଅନିଶ ।

ଚଟେଇଲେ ମହୁ ହେଉଛି ତୁନି
ଏବେ ଶୁଭିଲଣି ଡାକର କୁନି
ପଞ୍ଚମ ଦିନରେ ଆସୁଛି କ୍ଷୀର
ଝୁଣିଲେ ସେ ଟିକେ ହେଉଛି ଧିର

କ୍ରମେ ଲେଉଟାଏ କଡ଼
ମାଆ କ୍ଷୀର ଖାଇ          ଆସୁଅଛି ବଳ
ଦେଖୁଛୁ ହେବାର ବଡ଼ ।

କୁହୁକୁହୁ କଲେ ଦେଉଛି ହସି
ଆପେ ଆପେ ଶିଖି ପଡ଼ୁଛି ବସି
ଗୁରୁଣ୍ଡି ଗୁରୁଣ୍ଡି ଯାଉଛି ଧୀରେ
ଆପେ ଘତ ଶିଆ ଶିଖେ ଅଟୀରେ

ହେଉଅଛି ଠିଆ ପରେ
ଚଳି ଦେଖିବାର          ବିଧି ବିଧାନକୁ
ଭବେ କି ଲୋକ ମନରେ ।

ଶୁଣାଶୁଣି କରି ଶିଖୁଛି କଥା
ଦଗେଟି ଭଷା ତା ହରଇ ବ୍ୟଥା
ଖଡ଼ ଛୁଆଁ ବର୍ଷ ହେଲେ ତାହାର
ଦେଖନ୍ତି ତା ପିତା ପାଂଜିରୁ ବାର

ତଦନ୍ତେ ଧରୁଛି ଖଡ଼
ବିଦ୍ୟାଳୟେ ତାକୁ          କରନ୍ତି ଭରତି
ବୟସ ଆସିଲେ ବଢ଼ି ।

ଖାଇଥିଲ କେତେ ମାଡ଼          ସହିଛି ତୁମର ହାଡ଼
ପାରିହେଲ କେତେ ଗାଡ଼ ଧନ୍ୟ ମୋହନ

କାରାଗାରେ ସଞ୍ଛ ସଞ୍ଛ          ଗୋରଙ୍କୁ ଦେଇଛ ତଡ଼
ନମାନି ନିଦାଘ ଝଡ଼ ତୁମ ଦର୍ଶନ

ନାହିଁ ଆଉ ଅହିଂସା ସତ୍ୟ
ହରଇଲା ପରି ଲାଗୁଅଛି ଅପତ୍ୟ ।

ନିମକ ହାରାମ ଦଳେ          ମାରିଥିଲେ କଉଶଳେ
ପ୍ରାର୍ଥନାର ସଭସ୍ଥଳେ ଗୁଳି ଫୁଟାଇ
ଯାହାଙ୍କ ସ୍ଲୋଗାନ ମାନ          ଇତିହାସେ ବିଦ୍ୟମାନ
କରୁ ଦେଶ ତା ସନ୍ଧାନ ତାଙ୍କୁ ହରାଇ

ତାହାଙ୍କର ଅଭିଶାପରେ
ଭୋଗୁଅଛି ଦେଶ ଆଜି ଚଉଦିଗରେ ।

ହେଉଛି ଦେଶ ଲୁଣ୍ଠିତ          ଦେଖୁ ଯାହା ବିପରୀତ
ଲୋକରେ ହେଉ ନିନ୍ଦିତ କଳି ଯୁଗରେ
ଦିଶୁଅଛି ଜଳ ଜଳ          ଅଧର୍ମ ହେଲା ପ୍ରବଳ
ଅନ୍ୟାୟେ ବଶ ସକଳ ଧର୍ମ ମାର୍ଗରେ

ଯିବାକୁ ଅମଙ୍ଗ ସରବେ
କ୍ଷମତାହିଁ ବଡ଼ ବୋଲି ଚିନ୍ତନ ଭବେ ।

ସରବେ ବ୍ୟସ୍ତ ନେବାରେ          ଦେବାକୁ କିଏ ବିଷରେ
ତେଣୁ ଦେଶ ଋଣ ଭରେ ଗଳୁଣି ବୁଡ଼
ବରପୁତ୍ର ମହାତ୍ମାଜୀ          ନାହାନ୍ତି ଦେଶରେ ଆଜି
ତାଙ୍କ ଉପଦେଶ ରଜି ସମସ୍ତେ ହୁଡ଼

ଧାଉଁଛନ୍ତି ଆଶା ପଛରେ
ଦେଖିଲେହେଁ ଫେରିବାର ଖାଲି ହାତରେ ।

ପଡ଼ୁଛିକି କାହା ଦୃଷ୍ଟି          ହେଉଛି ଅଲୋଡ଼ା ବୃଷ୍ଟି
ବିଚିତ୍ର ବିଧାତା ସୃଷ୍ଟି ଭୂମଣ୍ଡଳରେ
ନାହିଁ କାହାର ବିଚାର          ଚଉଦିଗେ ବ୍ୟଭିଚାର
କବଳେ ପଡ଼ ଲୋଭର ନିଜ ଲାଭରେ

ପାସୋରିଲେ ଗାନ୍ଧୀ ବଚନ
ଧନ ଧନ ଭବି ଭବି ଯାଏ ଜୀବନ ।

କୋଟିପତି ଥିଲ ଯିଏ    ଦାଣ୍ଡର ଭିକାରି ସିଏ
ଦେଖନ୍ତ ଲୋକ ସଭିଏଁ ଦୁନିଆଁ ରୀତି
ତଥାପି ହୁଅନ୍ତ ଅନ୍ଧ    ବାଳିରେ ବାନ୍ଧନ୍ତ ବନ୍ଧ
ନିରନ୍ତର ହୃଦେ ଛନ୍ଦ କୁକର୍ମେ ପ୍ରୀତି
ଇହପର ନଥାଇ ଜ୍ଞାନ
ପର ଧନ ପ୍ରତି ରହେ ନିରତ ଧ୍ୟାନ ।

ଅସାଧୁ କେତେ ବାହାରି    ଗରୀବଙ୍କୁ ଦେଲେ ମାରି
ଶୁଣୁଛି କିଏ ଗୁହାରି ଆଜି ଦେଶରେ
ଲିଭିଅଛି ସଦାଚାର    ନାହିଁ କାହାର ବିଚାର
ଚାରିଆଡେ ହାହାକାର ପଡେ କାନରେ
କାହିଁ ଗଲ ଗାନ୍ଧୀ ଆଦର୍ଶ
ଅଛିକି ଦେଶରେ ଆଜି ତାଙ୍କ ଆମର୍ଶ ।

ଉଠନ୍ତୁ ଛାତ୍ର ବିତତି    ଦେଖନ୍ତୁ ଦେଶର ଗତି
ଜାଣନ୍ତୁ ଶାସକ ମତି  ନକରି ହେଳା
ଲାଞ୍ଚ ମିଛ କାରବାର    ଦିନୁଁ ଦିନ ବଢବାର
ନକଲେ ତା'ର ବିଚାର ବୁଡ଼ିବ ଭେଳା
ମଦ ନିଶା ହେଲ ପ୍ରବଳ
ଏଥିଲାଗି ଦାୟୀ ସିନା ଶାସକ ଦଳ ।

କ୍ଷମତା ନିଶାରେ ପଡ    କିଏ ଛାଡୁଅଛି ରଡ
ଗୁଣ୍ଡାମି ଉତ୍କୋଚ ବଢ ଶେଷ ସୀମାରେ
ପହଂଚିଛି ଦେଖୁ ଆଜି    ନୀରବ ଶାସକରାଜି
ଅନ୍ୟାୟ ତତି ବିରାଜି ଉଚ୍ଛୃଙ୍ଖଳାରେ
ଦେଖାନ୍ତି ଆପଣା ବଡ଼ିମା
କେତେଦିନ ରହିବରେ କା'ର ଗରିମା ।

ଦୀନବଂଧୁ ଯାର ନାମ    ତାଙ୍କ କର୍ମ ଅବିରାମ
ନକରି ଡିଳେ ବିଶ୍ରାମ ପ୍ରାଣୀ ହିତରେ
ଦେଖିଲେହେଁ ନିରନ୍ତର    ଆଳସ୍ୟ କବଳେ ନର
ନନେଇ ନାମ ତାଙ୍କର ପର ଛିଦ୍ରରେ
ଆନନ୍ଦିତ  ଅନବରତ
ମଣିଷପଣ ଭୁଲି ଆଜି ପରନୁଗତ ।

ଗ୍ରାମମାନ ବିଭଜିତ    ମଦ୍ୟପାନ ସୀମାତୀତ
ସବୁ କାର୍ଯ୍ୟ ବିପରୀତ ପାସୋରି ଧର୍ମ
ରହିଛି ଆଜି ଧନରେ    ଭ୍ରଷ୍ଟାଚାର ଅର୍ଜନରେ
ସ୍ୱାର୍ଥପୂର୍ଣ୍ଣ ହୃଦୟରେ ଚାଲିଛି କର୍ମ
ଆଖି ଉପରକୁ କାହାରି
ଶୁଣିବାକୁ ନାହିଁ କିଏ କାହା ଗୁହାରି ।

ବିବେକ ବୁଦ୍ଧି ବିଚାର    ପରମେଶ ଉପହାର
ମଣିଷ ଛଡା କାହାର ନାହିଁ ଏ ଭବେ
ଜାଣି ଜାଣି ଲୋକ ନିତି    ହୃଦୟେ ନଥାଇ ଭୀତି
ରଖୁଛି କୁକର୍ମେ ପ୍ରୀତି ନଚିନ୍ତି ଲବେ
ନକରି ଲୋଭକୁ ଦମନ
ଧନ ପ୍ରତି ରହୁଅଛି ନିରତ ମନ ।

ନ୍ୟାୟକୁ ବର୍ଜନ କରି    ପକ୍ଷପାତ ନୀତି ଧରି
ଅନ୍ୟାୟ ଆଶ୍ରୟ କରି ଶାସକ ଚୟ
ମନଇଚ୍ଛା କାରବାରେ    ପଶି ଅନୀତି ଆଚାରେ
ଲୋକମତ ନ ନେବାରେ ନରଖି ଲୟ
ହୁଡିଲ  ବିଚାର ବୁଦ୍ଧିକି
ଦିନରାତି ଚାହିଁଅଛି  ଆଶା ରଖିକି ?

ଚାଲିଛି ଲୁଟ ଦେଶରେ    ମରେ ଦୀନ ଉପାସରେ
ନାହିଁ ନଡା ତା ଚାଳରେ କର ଭାବନା
କହେ କବି ଲୋକନାଥ    ଧ୍ୟାୟୀ ସଦା ଜଗନ୍ନାଥ
ଜାଗି ଉଠୁ ଏ ଭାରତ ପଶୁ ଚେତନା
କିଏ କେତେ  କାଳ ବଂଚିବ
ଆସିଲେ ଏକତା ଦୁଃଖୀ ଦଶା ଘୁଂଚିବ ।

୦ ୦ ୦

କେଉଁଠାରୁ ଆସି    କେଉଁଆଡେ ଯାଉ
ଏ ଭାବନା ନାହିଁ କାହାର ଭବେ
ଲାଗିଅଛି ମନ    ଧନ ଉପାର୍ଜନେ
ଦୁନିଆଁ ରୀତିକି ଜାଣି ସରବେ ।
କାର ଅଟ୍ଟାଳିକା    ପଡଲାଣି ଢଳି
ହେଲାଣି ମାଲିକ ଦିନ ମୂଲିଆ

ପିନ୍ଧିବା ଖଣ୍ଡିକ    ମିଳି କଷ୍ଟ କଷ୍ଟ
ପଡ଼ୁନାହିଁ ଦିନ ମାରି ମୁଣ୍ଡିଆ ।

ଯାହା ଯୋଗୁଁ ଆମେ    ମଣିଷ ଜୀବନ
ପାଇ ଭବ ମଂଚେ ଖେଳୁଛୁ ଖେଳ

ତାଙ୍କ ନାମ ଜପି    ଯାପିବାକୁ କାଳ
କେତେବେଳେ ଟିକେ ନଥାଏ ବେଳ ।

କେତେଦିନ ଧନ    ଅବା ଯଉବନ
ଏ ବିଚାର ନାହିଁ କାହାର ମନେ

ହାକିମି ଚଳାଇ    ଯାପିବାକୁ କାଳ
କ୍ଷମତା ନିମିତ୍ତ ଗୋଡ଼ାନ୍ତି ଜନେ ।

ଏ ଦେଶେ ଏପରି    ଅଛନ୍ତି କେତେକ
ସବୁ ଜାଣି ଜାଣି ଅଣବାଟରେ

ପଣି ଦିନଗତି    କରନ୍ତି ଯାହାକି
ସ୍ୱାର୍ଥ ଆଶା ରଖି ମନ ଭିତରେ ।

ଗାଆଁ ଗାଆଁ ମଦ    ଭଟି ଲୋ ମାଉସୀ
ଗାଆଁ ଗାଆଁ ମଦ ଭଟି

ଯେତେ ଅରଜିଲେ    ନିଅଣ୍ଟ ସବୁ ଲୋ
କରୁଥାଆ ବସି ପାଟି ।

ଏ ଦେଶରୁ ସବୁ    ଚୁହା ଚାଲିଛି ଲୋ
ଉତ୍ତର ପ୍ରଦେଶ ବାଟେ ନେପାଳ

ତେଣୁ ମହରଗ    ଘୋଟି ଆସୁଛି ଲୋ
ହେଲାଣି ଶାସନ ଦେଶର କାଳ ।

ଚାଳିଶ ବରଷ    ଗଲାଣି ବିତି ଲୋ
ଚାଳିଶ ବରଷ ଗଲାଣି ବିତି

ଘେଟ ବେଳ ଏବେ    ଆସିଲା ପାଖେଇ
ଗର୍ଜନ ଶୁଣିବୁ ନିତି ।

ପେଟକୁ ଅଣ୍ଟାକୁ    ନିଅଣ୍ଟ ସବୁ ଲୋ
ପେଟକୁ ସଦା ନିଅଣ୍ଟ

ଚିହ୍ନି ରଖିଥାଆ    ହାଣ୍ଡିଶାଳେ ବସି
ଶାସନ ଗାଦିରେ ଖଣ୍ଟ ।

ମାରିଲେଣି ବାଣ    ଶୁଭୁଛି ଶବଦ
ଶେଷକୁ ଉଠୁଛି ଧୂଆଁ

କନା ଖଣ୍ଡେ ନାହିଁ    ପିଲାଟି ପାଇଁକି
ରଡ଼ୁଅଛି କୁଆଁ କୁଆଁ ।

ଭୋଟରଙ୍କ ଆଖି    ଫିଟୁ ଲୋ ମାଉସୀ
ଭୋଟରଙ୍କ ଫିଟୁ ଆଖି

ବାଣ୍ଟିବେ ପଇସା    ଧରି ହାତରେ ଲୋ
ଓଲଟରେ ଯାଉ ଲାଗି ।

ମଣିଷ ଜୀବନ    ପାଣିର ଫୋଟକା
ବୁଝନ୍ତି କି କିଏ ଭବେ

ବୁଝୁଥାନ୍ତେ ଯେବେ    ଅସାଧୁ ମାର୍ଗକୁ
ଆସନ୍ତେ କି କେହି ଲବେ ।

ଉଠନ୍ତୁ ଉଠନ୍ତୁ    ବାରେ ଛାତ୍ରବୃନ୍ଦ
ବୁଝନ୍ତୁ ଦେଶର କଥା

ଚରିଆଡ଼େ ଲୁଟି    ଦିଶୁଅଛି ଫୁଟି
ଶୁଣିଲେ ଲାଗୁଛି ବ୍ୟଥା ।

କେତେ କ୍ଲେଶ ସହି    ବିଦେଶୀ ହଟାଇ
ସ୍ୱାଧୀନତା ଦେଲେ ଆଣି

ନ ଯାନ୍ତି ଗାନ୍ଧିଜୀ    ତାଙ୍କ ଉପଦେଶ
ନ ପଢ଼ିଲେ ଜାଣି ଜାଣି ।

ଓଲୋମ ବିଲୋମ    ମଣିଷ ଜୀବନ
ନଦେଖେ କିଏସେ ଭବେ

ତଥାପି ମଣିଷ    ପର ମୁହୂର୍ତ୍ତରେ
ଯାଉଅଛି ଭୁଲି ଜବେ ।

ପକ୍ଷପାତ ଭବ    ରଖି ମନେ ମନେ
ଚାଲିଛି କରମ ଯେତେ

କିରଣୀ ମାଳରେ    ଅଫିସ ପୂରଣ
ନ କରନ୍ତି କାର୍ଯ୍ୟ ଯେତେ ।

ଚିଠି ଆସୁଅଛି    ଚିଠି ଯାଉଅଛି
ଲାଗୁଅଛି ଦିନ କେତେ

ଉତ୍ତର ଦେବାରେ ଘଟିଲେ ବିଳମ୍ବ
ତଦାରଖ ନାହିଁ ସେତେ ।
ଦେଶ ଲାଗି କା'ର ଟିକେ ନାହିଁ ଚିନ୍ତା
କ୍ଷମତା କରୁଛି ବାଇ
ଧନର ଲାଳସା ଟାଣୁଅଛି ମନ
ନ ଦେଖୁଛି କେଉଁ ଭଲ ।

ମୋର ମୋର ବୋଲି ଯାହାକି ବିସ୍ତରୁ
ସେ ନୁହେଁ କେବେ ତୋହର
ଯେ ଯାହା ସ୍ୱାର୍ଥରେ ମଜିଅଛି ଲୋକ
ପ୍ରସଙ୍ଗ ନିତି ଉବର ।

ମଣିଷ ଜନମ ଆଜି ଯେ ପାଇଛି
କି ଜୀବ ହେବ ସେ ପରେ
ହିଂସା କପଟତା ନଥାନ୍ତା ସଂସାରେ
ଏ ଭବନା କଲେ ଥରେ ।

ବଢ଼ିଛି ଅନ୍ୟାୟ ବଢ଼ିଛି ଅନୀତି
ରହିଛି ମନ ସ୍ୱାର୍ଥରେ
ତେଣୁ ଏଣ୍ଡିପୋକ ଜନମ ମରଣ
ପଶୁ ଲୋକର ହୃଦରେ ।

ଯଉବନ ବେଳେ ଦେଖିଥିବା ଅଙ୍ଗ
ବାର୍ଦ୍ଧକ୍ୟେ ନରହେ ତାହା
ଗର୍ବ ଅଭିମାନ ଅଢେଇ ଦିନ ତ
ପଡ଼ଛୁ ପୁରଣେ ଯାହା ।

କେଉଁଆଡେ ଯିବା କି ଜୀବ ପାଇବା
କିଏସେ ଭବୁଛି ଲବେ,
ଜୀବନ କାହାଣୀ ଏଣ୍ଡିର ଜାଣିଲେ
ସରବେ ଏପରି ଭବେ ।

ମାଟ୍ରିକ ପରୀକ୍ଷା ଦେବା ପରେ ପରେ
ଏଣ୍ଡିପୋକ ଡମ୍ବ ଆଣି
ପୁରୀରୁ ଗାଆଁକୁ ଆସି କିଣିଥିଲି
ଲୋଡ଼ା ହେବ ଟାଟ ଜାଣି ।

କୋଡ଼ିଏ ଦିନରେ ଡମ୍ବରୁ ବାହାରି
ପିଂପୁଡ଼ରୁ ଥିଲା ସାନ
ଏତେ କ୍ଷୁଦ୍ର ଜୀବ ହେଲେହେଁ ଶରୀରେ
ରହିଥାଏ ନାକ କାନ ।

କ୍ରମେ ବଢ଼ ବଢ଼ ବିଂଶତି ଦିନରେ
ଲମ୍ବ ଅଢେଇ ଇଞ୍ଚର
ସେଦିନ ନଖାଇ ଡାଳିଆରେ ବୁଲି
ଖୋଜେ ଖୋଷା ଲାଗି ଘର ।

ଆମ୍ବପତ୍ର ଡାଳ ଟୋକେଇରେ ରଖି
ଗୋଟି ଗୋଟି ଦେଲି ଛାଡ଼
ଘଡ଼ିକ ଭିତରେ ଖୋଷା କରି ପୋକ
ଥିବ ପର ମୁଣ୍ଡ ମାଡ଼ ।

କିଏସେ ଜାଣୁଛି କେତେବେଳେ ତା'ର
ପ୍ରାଣବାୟୁ ଗଲା ଉଡ଼
ତା ଭିତରେ ରହି ପ୍ରଜାପତି ହୋଇ
ଆସୁଛି ପୁଣି ବାହୁଡ଼ ।

ବିଂଶତି ଦିନରେ ଖୋଷା କାଟିଦେଇ
ପାଉଁଶିଆ ବର୍ଣ୍ଣ ଧରି
ପ୍ରଜାପତି ରୂପେ ଆସୁଛି ବାହାରି
ଲମ୍ବ ଲମ୍ବ ନିଶ କରି ।

ଦେଖାଇ ଦେବାକୁ ସୃଷ୍ଟିର ରହସ୍ୟ
ବିଚିତ୍ର ଲୀଳା ବିଧିର
ରେ ମଣିଷ ତୋର ଆସୁ କିଛି ଜ୍ଞାନ
ନହୋଇ କେବେ ଅଧୀର ।

ଅଣ୍ଡିର ମାଇର ଯୋଡ଼ ଦୁଇଦିନ
ଦେଇ ପୁଣି ଡମ୍ବମାନ
ଯାଉଅଛି ପ୍ରାଣ କ୍ଷଣକ ଭିତରେ
ଏହିତ ବିଧି ବିଧାନ ।

ଯାପୁଅଛୁ କାଳ ପାପ ପଙ୍କେ ପଶି
ନଭାବି ସୃଷ୍ଟି ରହସ୍ୟ

ଆସିବ ତା ବେଳ କରିବାକୁ ଚିନ୍ତା
ମରଣ କାଳେ ଅବଶ୍ୟ ।

ସୁକୃତ ଦୁଷ୍କୃତ ଜାଣି ପରମେଶ
ରଖନ୍ତି ଲେଖି ପାଂଜିରେ
ତୋ ଅନ୍ତରେ ଥାଇ ନ ପାରିଛୁ ଜାଣି
ମଜ୍ଜିଲୁ ପାପେ ମହୀରେ ।

ଭଲମନ୍ଦ ଦିନେ ନକଲୁ ବିଚାର
ପଡ଼ ଲୋଭର କବଳେ
ପଶୁଠାରୁ ହୀନ କରୁଅଛୁ କର୍ମ
ଭସି ପଙ୍କମୟ ଜଳେ ।

ଅର୍ଥ ହିଁ କେବଳ ଅନର୍ଥର ମୂଳ
ତା କବଳେ ପଡ଼ ଲୋକେ
ବିବେକ ହରଇ ନକରି ବିଚାର
ଯାଉଛି ଜୀବନ ଶୋକେ ।

ପକ୍ଷପାତ ନୀତି ତଥା ଖୋସାମତି
ଅନ୍ୟାୟ ପାପ ଅବଶ୍ୟ
ଜାଣି ଜାଣି ଲୋକ ପ୍ରବେଶି ତହିଁରୁ
ଭୁଲନ୍ତି ସୃଷ୍ଟି ରହସ୍ୟ ।

ଯେତେବେଳେ ଜର ଆସୁଅଛି ମାଡ଼
କେତେ ଲୋକ କେତେ କଥା
କହନ୍ତି ପଛରେ ପଡୁଥିବ କାନେ
ଜନମାଈ ମନେ ବ୍ୟଥା ।

ଅତୀତ କୁକର୍ମ ପକାଇଲେ ମନେ
ଲୁହ ଗଡୁଥାଏ ଝରି
ନରହେ ରଚନା ଛାଡ଼ିଗଲେ ପ୍ରାଣ
କି ନେବା ସଙ୍ଗରେ ଧରି ।

କେଉଁ ମୁହୂର୍ତ୍ତରେ କି ହେବ କାହାର
ଜାଣୁଛି କିଏ ମହୀରେ
ଜୀବନେ କଷଣ ଭୋଗିଲେହେଁ ଲୋକ
ଯାଉଛି କାଳ ଅଗ୍ନିରେ ।

ଯେ ଯାହା କରିଛି ପୂର୍ବ ଜନମରେ
ଏ ଜନମେ ତା'ର ଫଳ
ଅବଶ୍ୟ ଭୋଗିବ ଆସିଲେ ତା ବେଳ
ଦିଶୁଅଛି ଜଳ ଜଳ ।

ଦୁଃଖୀ ଲାଗି ସଦା ଦୟାଭାବ ବହି
କରିବ କର୍ମ ଜୀବନେ
ସାର୍ଥକ ହେବାରେ ତା ଜନମ ଭବେ
ଭାବି ରଖ ସର୍ବେ ମନେ ।

କୃତଜ୍ଞତା ସ୍ଥାନ ଜରିଛି ପୂରଣ
କୃତଘ୍ନତା ଘରେ ଘରେ
ହୃଦୟ ଭିତରୁ ଉଠୁଅଛି କୋହ
ପଡ଼ଲେ କାନରେ ଥରେ ।

ତ୍ରେତୟା ଦ୍ୱାପରେ ରାମକୃଷ୍ଣ ବେନି
ଜନମି ଏହି ମାଟିରେ
ଦେଖାଇ ଥିଲେ ଯେ ଆଦର୍ଶ ଗୁଡ଼ିକ
ମିଶିଛି ଆଜି ଧୂଳିରେ ।

ଲଗାଇଲେ ନିଆଁ ବାହାରିବ ଧୂଆଁ
ସୃଷ୍ଟିର ନୀତି ଭୁବନେ
ନ ଦେଖୁଛି କିଏ ବିଶାଳ ଜଗତେ
ପଡୁଛି ଯାହା ନୟନେ ।

କରୁଥିବା ପାପ ନ ଲୁଚିବ କେବେ
ଉଠିବ ଫୁଟି ନିଶ୍ଚୟ
ଜାଣି ଜାଣି ଲୋକ କରୁଛି ଯାହାକି
ଦେଖୁଛନ୍ତି ଦୟାମୟ ।

ଚୈତ୍ର ମାସ ହେଲା ଶୀତ ନ ଛାଡ଼ିଲା
ଏ କି ବିପରୀତ କାଳ
ଆମ୍ବ ମୁଗ ବିରି ଫସଲ ମରିଛି
କୁହୁଡ଼ ହେବାରୁ କାଳ ।

ବସନ୍ତର ଶୋଭା ହେଲାପରି ଭଭ
ଜଣା ପଡୁ ନାହିଁ ଲବେ

କରିବା ଅନୀତି ଭୋଗୁଅଛି ଲୋକ
ଧବନ୍ତୁ ଏବେ ସରବେ ।

ବାରବାର ଆସି କୁହୁଡ଼ ଚୌଦିଗେ
କରୁଛି ଫସଲ କ୍ଷତି
ବିଧାତାର ଦଣ୍ଡ ନୁହଁକି ଏସବୁ
ଦେଖି ମଣିଷର ମତି ।

ଯେତିକି ଅନ୍ୟାୟ କରୁଛି ମଣିଷ
ସେତିକି ବିଧାତା ଦଣ୍ଡ
ଆଶାର ପଛରେ ଧାଉଁଛି ବୃଥାରେ
ମିଳିବ ବୋଲି ବା ଖଣ୍ଡ ।

ରହିଅଛି ବାଟ ରହିଛି ଅବାଟ
ନ ବିଚାରି ଭଲମନ୍ଦ
ଉଠିଆସେ ଢେଉ ଗଲାଣି ହୃଦୟେ
ପ୍ରବୃତ୍ତି ନିବୃତ୍ତି ଦ୍ୱନ୍ଦ୍ୱ ।

ଯା ନାମ ଧରିଲେ ମିଳିବ ମୁକତି
ସେ ନାମ ନ ଧରି ତୁଣ୍ଡେ
ପର ନିନ୍ଦା କରି ଯାଉଛି ସମୟ
ପାପ ବୋଝ ଧରି ମୁଣ୍ଡେ ।

ମଣିଷ ଜନମ ପାଇଲୁ ସୁକର୍ମେ
କର୍ତ୍ତବ୍ୟକୁ ଦେଲୁ ଛାଡ଼ି
ବିବେକ ବିଚାର ବୁଦ୍ଧି ହରାଇଣ
ତୁଚ୍ଛାକୁ ହେଉଛୁ ଝାଡ଼ ।

ଦଣ୍ଡ ଲିତା ଧରି ବିତୁଛି ସମୟ
କ୍ଷୟ କରି ଆୟୁ ନିତି
ବିଧାତାର ସୃଷ୍ଟି ନ ପଡ଼ିଲେ ଦୃଷ୍ଟି
ଶିଖାଇବ କିଏ ନୀତି ।

ହାତ ରହି ଖାଲି ପାଇଲୁ ଜନମ
ଖାଲି ହାତେ ଯିବା ଫେରି
କେ ରଖି ପାରିବ ପ୍ରାଣ ଛାଡ଼ଗଲେ
ଯେତେ ଲୋକ ଥାନ୍ତୁ ଘେରି ।

ବାପା ମାଆ ଅବା ପୁଅ ଝିଅ ଅବା
ନାତି ନାତୁଣୀ ମମତା
କେତୋଟି ବରଷ ବିତିଗଲା ପରେ
ରହୁନାହିଁ କାହା ସତ୍ତା ।

ଛନ୍ଦ ହୋଇ ଲୋକ ମାୟା ବନ୍ଧନରେ
ବଶ ନାନା ଅନ୍ୟାୟରେ
ଯଥାର୍ଥ ଭାବନା କଲେ କେ ଜାଣିବ
କ୍ଷଣିକ ସବୁ ଭବରେ ।

ଯେ ଯାହା କରିଛି ପୂର୍ବ ଜନମରେ
ଏ ଜନମେ ତା'ର ଫଳ
ଅବଶ୍ୟ ଭୋଗିବ ଆସିଲେ ତା ବେଳ
ଦିଶୁଅଛି ଜଳ ଜଳ ।

ଏ ଭବ ରହସ୍ୟ ଭାବୁକ ଅବଶ୍ୟ
ବୁଝୁଛି ସାର ଅସାର
ଅତୀତ ଭବିଷ୍ୟ କରୁଥିଲେ ଚିନ୍ତା
ଅସନ୍ତା ନ୍ୟାୟ ବିଚାର ।

ସମବାୟ ନୀତି ଯାହାପାଇଁ ପ୍ରୀତି
ବସିଛି ଉଚ୍ଚ ଆସନେ
ଗରୀବ ନାଆଁରେ ଧନୀ ଉପକୃତ
ପଡୁଛି ନିତି ଲୋଚନେ ।

ଅମାନତକାରୀ ହେଲେ ହଟହଟା
ଶୁଣୁଛି ଆଜି କିଏ ସେ
କଅଁଳ କଥାଟି ନେଲାବେଳେ ସିନା
ଫେରାଇଲେ ହଟା ଶେଷେ ।

ଅମାନତ ପାଇଁ ପଦେ ଲେଖା ନାହିଁ
ସମବାୟ ଆଇନରେ
ତେଣୁ ନିରୁପାୟ ଅମାନତକାରୀ
ରହେ ନିରଶ ମନରେ ।

ମୂଳିଆ ପଠାଇ ନ ଗଲେ ବିଳମ୍ବ
ନ ସହେ କି ଋଷୀ କ୍ଷତି

ସେପରି ଆସିକା ଆର୍ବନ ବ୍ୟାଙ୍କର
ଦିଅନ୍ତୁ ଦୃଷ୍ଟି ତା ପ୍ରତି ।
ବଚନ କଅଁଳ ଭିତର ଅନଳ
ଏପରି ବହୁଳ ଅଛନ୍ତି ଖଳ
ଦଣ୍ଡ ଲିଟା ଧରି ଯାଉଛି ବାହାରି
ହୋଇ ଆୟୁ କ୍ଷୟ ଖସୁଛି ବଳ ।

ଯାହାକୁ ବୋଲୁଛ ମୋର ପରିବାର
କେତେ ବର୍ଷ ଗଲେ ବିତି
କାହାର ସମ୍ବନ୍ଧ ରହୁ ନାହିଁ କିଛି
ଜଣା ପଡୁନାହିଁ ଛିଟି ।

ଅଗଣିତ ଜୀବ ଦେଖୁଛୁ ସୃଷ୍ଟିରେ
ପଡୁଛି ଆଖିରେ ନିତି
କିଏ କାହା ସଙ୍ଗେ ନୁହଁଇ ସମାନ
ବିଚିତ୍ର ବିଧାତା ନୀତି ।

ତନ୍ମଧ୍ୟେ ମଣିଷ ବିବେକ ବିସ୍ତର
ପୁଣି ଯାଉଅଛି ବୁଝି
ଅମନୁଷ୍ୟ ବୋଲି ପଡ଼ବ କାନରେ
ନକଲେ ହୃଦୟ ଶୁଦ୍ଧି ।

ମିଛକୁ କେବେହେଁ ଧରନାହିଁ ମନେ
ଆଶ୍ରିତ ନୁହଁ ସତ୍ୟର
ସର୍ବଦା ମହାତ୍ମା ଗାନ୍ଧୀ କହୁଥିଲେ
ସତ୍ୟ ହିଁ ପରମେଶ୍ୱର ।

ଆଜି ସେହି କଥା ଯାଉଛି ଉଭେଇ
ଚୌଦିଗେ ମିଛ ପ୍ରସରି
ଖେଳାଉଛି ଖେଳ ମଣିଷ ମାନଙ୍କୁ
ନଭବେ କିଏ କିପରି ।

ଏକା ମାଆଠାରୁ ଜନମି ଥିଲେ
ବାପା ମାଆ ଥାଉ ଥାଉ
ହେଲେଣି ଅଲଗା ରହିବାକୁ ସୁଖେ
ନ ସମ୍ଭାଳି କାର ଦାଉ ।

ସାଧୁ ବା ଅସାଧୁ ଉପାୟେ ଅରଜି
ରଖିଲେ ଧନ ସାଇତି
ପକ୍ଷୀ ଲାଗି ଦିନେ ଉଡ଼ିଯିବ ନିଶ୍ଚେ
ଦୀନ ସେବା ହେଉ ନୀତି ।

○ ○ ○

## ଅନ୍ୟାୟ

ଅନ୍ୟାୟ ମାଳାକୁ ଗୁଂଥି ମୋଦ ଭରେ
ପିନ୍ଧାଇ ଦେଉଛି ଅବୁଝା ବେକରେ ।
ଯାଉଣୁ ଆସୁଣୁ ଗୁଣୁଥିବେ ମନେ
ଯତନ କରନ୍ତୁ ତା ଲୋପ ସାଧନେ ।
ଗାନ୍ଧିଜୀ ଆଦର୍ଶ ଅଛିକି ଦେଶରେ
ଯା ଯୋଗୁଁ ବସୁଛ ଚଉକି ଉପରେ ।
ବଢ଼ାଇଲେ ଅର୍ଜି କୁଟୁମ୍ବ ଆବଳି
ହେଉଥିବେ ଖୁସି ନ ପାଇଲେ କଳି ।
କଣିକାଏ ମାନିଥିଲେ ଉପଦେଶ
ଦୁଃଖ ଦୈନ୍ୟ ଆଜି ଭୋଗନ୍ତା କି ଦେଶ ।
ଅନ୍ୟାୟ ବିରୁଦ୍ଧେ କରିବାକୁ ପାଟି
ଫିଟାଉ ନାହାନ୍ତି ଭୟ କରି ଲାଠି ।
ରହୁଛନ୍ତି ପୁନି ଦେଖି ଏ ବେଭାର
ଅବା ସ୍ୱାର୍ଥେ ବାଧା ପଡୁଛି କାହାର ।
ନାନା ଜାତି ଗଛ ଫୁଲ ନାନା ଜାତି
ପଡୁଛି ଦୃଷ୍ଟିରେ ପାଇଗଲେ ଗତି ।
ଭିନ୍ନ ଭିନ୍ନ ବର୍ଣ୍ଣ ବିଭିନ୍ନ ଗଠନ
ସୁବାସ ଯେଉଁଟି ହରେ ଜନମନ ।
ଋତୁ ଅନୁଯାୟୀ ଫୁଟୁଅଛି ଫୁଲ
କିଏ କାହା ସଙ୍ଗେ ନହୁଅଇ ତୁଲ ।
ଫୁଲ ଗନ୍ଧହୀନ ହେଲେହେଁ ଆଦର
ଯେସନ ଗୟସ୍ ଶିତି କଣ୍ଟକର ।
ସୁବାସେ ଅଧିକ ରଜନୀ ଗନ୍ଧାର
ଦିନେ ବାସ ନାହିଁ ଅପରାଜିତାର ।

କଠିଣୁକ କୁସୁମ ମୁଣ୍ଡେ ଶିବଙ୍କର
ଯେପରି ସେ ଲୋଡା ସଦା କୃଷ୍ଣଙ୍କର ।

ମୂଳୁ ଚୂଳ ଯାଏଁ କଣ୍ଟା ଗୋଲପର
ଫୁଲଟି ସୁନ୍ଦର ହେତୁ ତା ଆଦର ।

କେତକୀ କିଆଟି ଦିଶେ ଏକାପରି
ମାତ୍ର ବର୍ଣ୍ଣ ଭେଦ ନୁହଁ ସମପରି ।

ବରଜି ଆଳସ୍ୟ ହୁଅ ନିରଳସ
ରହିଥାଅ ଶ୍ରମେ ସନ୍ତତ ମାନସ ।

କେତେବେଳେ ପ୍ରାଣ ପକ୍ଷୀ ଯିବ ଉଡ଼ି
ଜୀବନେ ତା' କେବେ ନଆସେ ବାହୁଡ଼ି ।

ସ୍ୱାର୍ଥ ଚିତ୍ତେ ରଖି ପକ୍ଷପାତ ନୀତି
ନୁହ ମଣିଷପଣ ଅବା ସୃଷ୍ଟି ରୀତି ।

ଗରୀବ ଦୁଃଖରେ ହୁଅ ସଦା ଦୁଃଖୀ
ହୋଇ ପରହିତ ହେଉଥାଅ ସୁଖୀ ।

ଆସିଛୁ ଲଙ୍ଗଳା ଶୂନ୍ୟ ହାତ ଥାଇ
ତଦ୍ରୂପ ଏ ଭବୁ ଯିବରେ ପଳାଇ ।

ରହିଥିଲେ ମନ ନିରତ ସ୍ୱାର୍ଥରେ
ପଶୁଠାରୁ ହୀନ ହେବ ସେ ଭବରେ ।

ପ୍ରାଣବାୟୁ ଥିବାଯାଏଁ ଏ ଶରୀରେ
ଅତି ସତର୍କରେ ଚଳିବ ମହୀରେ ।

ଠକାମି ଭଣ୍ଡାମି ଚଉଦିଗେ ବ୍ୟାପି
ଜୋକପରି ରକ୍ତ ଶୋଷନ୍ତି ଅଦ୍ୟାପି ।

ପର ଉପକାରେ ନ ଲଗେ ଯା ଧନ
ଧିକ ତା ଜୀବନ ଧିକ ଉପାର୍ଜନ ।

ପକ୍ଷପାତ ନୀତି ଯାହାର ହୃଦରେ
କରିବ ତାହାକୁ ଦୂରରୁ ଅନ୍ତରେ ।

ଆଜି ଯେ ରହିଛି କାଲି ହେବ ପୋଡା
ପାଅ ନାହିଁ ମନେ ଚଢ଼ିବାକୁ ଘୋଡା ।

⊙ ⊙ ⊙

ନିଶାରେ ଘାରି ହେଲା ପରି ମଣିଷ
ହେଉଅଛି ସ୍ୱାର୍ଥରେ ମୋହ ଅନିଶ ।

ବାଟ ଅବାଟ କିଛି ନପଡେ ଜଣା
ତେଣୁ ସେ ପଦେ ପଦେ ହେଉଛି ବଣା ।

ଗାତରେ ପଡ଼ଗଲେ ଉଂଚୁଛି ହାତ
କେବେ ବା କାହାଠାରୁ ଖାଉଛି ମାଡ ।

ପ୍ରବୃତ୍ତି ଲୁଚି ରହି ନେଉଛି ଝାଣି
ଯାଇଲେ ଅପମାନ ନପାରେ ଜାଣି ।

ନମଙ୍କେ ଶୁଣିବାକୁ ବିବେକ ଡାକ
ଆପଣାକୁ ମଣୁଛି ବଡ ଚାଲାକ ।

କେତେବେଳେ ନାଟୁଆ କେବେ ପାଠୁଆ
ହୋଇ ଖେଳୁଛି ଖେଳ ଦୁହାଁକୁ ଦୁହାଁ

ଦେଖୁଛି ହାଡ଼ ଯିଏ ଲାଭ ମହତ
ପଶୁଠାରୁ ହୀନ ସେ ବୋଲେ ଜଗତ ।

ବିବେକ ଆହ୍ୱାନ ନଶୁଣି ମଣିଷ
ପାଉଅଛି କ୍ଲେଶ ଜୀବନେ ଅନିଶ ।

ବାଟେ ଘାଟେ ଦେଖି ଉଠାଣି ଗଡାଣି
ଚେତୁ ନାହିଁ କେବେ ସବୁ ଜାଣି ଜାଣି ।

ଉଠୁଛି ପଡୁଛି ଉର୍ମି ସାଗରରେ
ପଡୁଛି ନିରତ ଦର୍ଶକ ନେତ୍ରରେ ।

ମହାକାଳ ଜଳ ପରି ଯା ଅନ୍ତର
କେବେହେଲେ ତାକୁ ବିଶ୍ୱାସ ନକର ।

ପରର ଉପରେ ନକର ନିର୍ଭର
ଆପେ କରି ଚିନ୍ତା ଘୁଆଁଟକୁ ଧର ।

ଜୀବନେ ଅଧିକ ଅଟଇ ଚରିତ୍ର
କରିବ ନିରତ ହୃଦୟ ପବିତ୍ର ।

ଆପଣାର ବୋଲି ଭାବୁଛ ଯାହାକୁ
କରିବ ବିଶ୍ୱାସ ପରଖି ତାହାକୁ ।

ସ୍ୱାର୍ଥମୟ ଏହି ବିଶାଳ ଜଗତ
ଅତି ସାବଧାନେ ଚଳିବ ନିରତ ।

ଅଚ୍ଛେଇ ଦିନକୁ ଆସିଛ ମର୍ତ୍ତ୍ୟକୁ
କେ ଯାଏ କୁଆଡେ ଅଜଣା ଲୋକକୁ ।

ଯଉବନ ଗର୍ବ ଅଚ୍ଛେଇ ଦିନିଆ
ଅନବରତ ତା ଦେଖୁଛି ଦୁନିଆଁ ।

ମଣିଷର ପାଂଜି ଦଇବ ହାତରେ
କରିଲେ ଅନ୍ୟାୟ ପଡ଼ିବା ଖାଲରେ ।

ପଡ଼ଲେ ଜାଲରେ ହୁଏ ମୀନ ଯଥା
ହେଉଅଛି ଲୋକ ମାୟା ଜାଲେ ତଥା ।

ଚମ ଘୋଡ଼ଣୀରେ ଆବୃତ ଶରୀରେ
ଯହିଁ ପରିପୂର୍ଣ୍ଣ ପଣିତ ରୁଧୀରେ ।

ଲାଂଚୁଆ ମିଛୁଆ ଖଚୁଆ ଦଳ
ବଢ଼ଗଲେ ଦେଶେ ମିଶି ସକଳ ।

ଘୋଟ ପ୍ରସଙ୍ଗରେ ଲାଗନ୍ତି କଳି
ଏକକୁ ଆରକେ ଯାଉଛି ବଳି ।

ପଇସା ମୁହଁକୁ ଦେଖି ମଣିଷ
ବୁଝି ପାରୁନାହିଁ ଅମୃତ ବିଷ ।

ହଣାହଣି ଦେଖୁ ଚଉଦିଗରେ
ହାହାକାର ଭବ ଆସେ ମନରେ ।

ପାଇଅଛି ଲୋପ ବିଚାର ଶକ୍ତି
ଗୁରୁଜନ ପ୍ରତି ନରହେ ଭକ୍ତି ।

ଲଗାଇଛି ନାଟ ମଦ କେବଳ
ବୁଝୁଥିବା ଲୋକ ଆଜି ବିରଳ ।

ଦାଣ୍ଡର ଭିକାରୀ ଘୋଡାରେ ଚଢ଼
ବୁଲୁଛି ଚୌଦିଗେ ପକାଇ ରଡ଼ ।

ଶିଖିବ ତହିଁରୁ ଜୀବର ଗତି
ବିଧିର ବିଧାନ ବିଚିତ୍ର ଅତି ।

ଦିନୁଁ ଦିନ ଦେଖୁଁ ବଢୁଛି ପାପ
କରୁ ନାହିଁ କିଏ ତା ଅନୁତାପ ।

ବାହାଦୁରୀ ସିନା ହୁଏ ଦେଖାଇ
ଶୁଣିଲେ ଚୁହୁଲି ଦିଏ ଉଡାଇ ।

ନୂଆଁ ସଭ୍ୟତାକୁ ନୂଆଁ ଶାସନ
ମୋହିଦେଲା କିରେ ସବୁରି ମନ ।

ଭଗବତ ଘର ଥିଲା ଗାଆଁରେ
ରତିଖିଆ ପରେ ଧର୍ମ ଚର୍ଚ୍ଚାରେ ।

ପୂରୁବ କାହାଣୀ ଭବିଲେ ଥରେ
ଲୋଚନୁ ଦୁଃଖରେ ଲୋତକ ଝରେ ।

ସୁଖୀ କିଏ ଦେଖି ନବ୍ୟ ସଭ୍ୟତା
କି ନକରେ ଦେଶେ ଆଜି କ୍ଷମତା ।

ବାର ବାର ସହି ବିଶେଷ କ୍ଲେଶ
ଅହିଂସାରେ ଆଣିଥିଲେ ଯେ ଦେଶ ।

ଗଛ ଡାଳେ ବସି କହୁଛି କାଉ
ସେ ମହାପୁରୁଷ ନାହାନ୍ତି ଆଉ ।

ସରିଗଲେ ପଢ଼ା ଚାକିରୀ ପାଇଁ
କି ହେବ ଧାଇଁଲେ ପଇସା ନାହିଁ ।

ବଢ଼ିଛି ଉତ୍କୋଚ ପ୍ରତି କ୍ଷେତ୍ରରେ
ଯାଉଛି ସାଧୁତା ଗାନ୍ଧୀ ପରେ ।

କରୁଅଛି କିଏ ଲୋଭ ଆୟତ୍ତ
ଧନ ଉପାର୍ଜନେ ଇଚ୍ଛା ନିରତ ।

ଅସହାୟ ଲାଗି ଲଢୁଛି କିଏ
ଦେଖାନ୍ତ ଚତୁରୀ ଯେଝାର ଯିଏ ।

ରହିଛି ବିବେକ ତାକୁ ପଚାରି
କରିଲେ କରମ ନାହିଁ ଭଗାରୀ ।

ବିଚାର ଶକତି ଦେଇଛି କିଏ
ସବୁ କଥା ଜାଣି ଅଛନ୍ତି ସିଏ ।

ଯୌବନ ସମୟେ ଅଧିକ ବଳ
ତେଣୁ ଲୋକ କରେ ନାନା କୌଶଳ ।

ତା'ର ପଛେ ପଛେ ଆସୁଛି ଜରା
ଆପେ ଆପେ କାନ୍ତି ଯାଉଛି ପରା ।

କଳା ବାଳ ଧଳା ହେଉଛି କ୍ରମେ
ବୋଲନ୍ତ ମୁଣ୍ଡରେ ହେଲାକି ଶ୍ରମେ ।

ପ୍ରାଣବାୟୁ ଯେବେ ଯାଉଛି ଉଡ଼
ଆଉ ସେ ନଆସେ ପୁଣି ବାହୁଡ଼ ।

ନୁହଁଇ କା ଭେଟ କାହା ସଙ୍ଗରେ
କିଏ କେଉଁ ଜୀବ ହେଉଛି ଖରେ ।

ଏଣ୍ଡି ପୋକ ପରି ଜୀବ ଜନମ
ଚିରନ୍ତନ ନୀତି ବିଧି ନିୟମ ।

ପଢ଼ାଇ ଲୋକ ଲୋଭ କବଳେ
କରୁଅଛି ଲୁଟ ନାନା କୌଶଳେ ।

ଦେଖୁଛୁ ଅସ୍ଥାୟୀ ସବୁ ଏ ଭବେ
କରୁଛ କରମ ନ ଭବିଲ ଲବେ ।

ଅତୀତ ଭବିଷ୍ୟ ନଭବି ଲବେ
କିଏ ଚିରସ୍ଥାୟୀ ହେବକି ଭବେ ।

ଆଶୁ କବି ଯଦୁମଣିଙ୍କ ସମ
ଉତ୍କଳେ କାହାର ନାହିଁ ଜନମ ।

ଶୁଦ୍ଧ ରଚନାରେ ସେ ପାରଙ୍ଗମ
କବିଙ୍କ ମଧ୍ୟରେ ସେହି ପ୍ରଥମ ।

ଉତ୍କୃଷ୍ଟ ତାଙ୍କର ଲେଖନୀ ଛଟ
ନିର୍ଭୀକ ମନରେ କରନ୍ତ ଥଟ ।

ଜନମ ମରଣ ଲଗିଛି ନିତି
ଏହାହିଁ ବିଧାତା ବିଧାନ ନୀତି ।

ଶିଖୁଛି କି ଲୋକ ତହିଁରୁ ପଦେ
ଲୋଡା ହେବା ଲାଗି କେବେ ବିପଦେ ।

ହଣାହଣି ସଦା ରହିଛି ଲାଗି
ଏଥିରେ କେବଳ ଶାସକ ଭାଗୀ ।

ଯାଇଛି ଅହିଂସା ଗାନ୍ଧିଜୀ ପରେ
ହିଂସାର ରାଜତ୍ୱ ଏବେ ଦେଶରେ ।

ରଖିଥାନ୍ତେ ଯେବେ ଗାନ୍ଧିଜୀ ଟେକ
ଚଳନ୍ତା ଶାସନ ପୁଚ୍ଛି ବିବେକ ।

⊙ ⊙ ⊙

ଯେତେ ଲୋକ ରହି ଥାଆନ୍ତୁ ଘେରି
ଆସିବ କି କିଏ ଗଲେରେ ଫେରି
ଜୀବ ଜୀବନ
ନ କରନ୍ତ କିଏ ନିତି ଦର୍ଶନ ।

ଦେଖୁଛ ଅସ୍ଥାୟୀ ସବୁ ଏ ଭବେ
କରୁଛୁ କରମ ନଭବି ଲବେ
ବିବେକ ବୁଦ୍ଧି
ଜୀଇଁଥିବା ଯାଏ କରରେ ଶୁଦ୍ଧି ।

ଅତୀବ ଜଟିଳ ଏ ଭବ ଭୂଇଁ
ଯେତେବେଳେ ଆସି ଦେଉଛୁ ଛୁଇଁ
କିଛି ନଆଣି
ଫେରିଗଲେ ଖାଲି ଥିବରେ ଜାଣି ।

ଆସୁଅଛୁ ଯଥା ଫେରୁଛୁ ତଥା
ଓଲୋମ ବିଲୋମ ସୃଷ୍ଟିର ପ୍ରଥା
ନଭବି କିଛି
ଯାଉଛି ଜୀବନ ପଛରେ ଛି ଛି ।

ପ୍ରାଣ ପକ୍ଷୀ ଯେବେ ଯାଉଛି ଉଡ଼ି
ଆସୁନାହିଁ ଆଉ କେବେ ବାହୁଡ଼ି
ଦୁନିଆଁ ନୀତି
ଚିନ୍ତୁଛିକି କିଏ ଶୟନେ ନିତି ।

ଯେତେ ଲୋକ ରହିଥାଆନ୍ତୁ ଘେରି
ନ ପାରିବେ ରୋକି ଗଲେରେ ଫେରି
ଜୀବ ଜୀବନ
ନ କରୁଛି କିଏ ନିତି ଦର୍ଶନ ।

ଶାସକ ହାତରେ ଲୋକର ତଣ୍ଟି
ଖାଇବ ଆହାର ପେଟକୁ କଣ୍ଟି
ଚକ୍ଷାର କଣ୍ଟି
ଦେଉଳରେ ନିତି ବାଜୁଛି ଘଣ୍ଟି ।

⊙ ⊙ ⊙

( ରାଗ-ରାମକେରୀ )

ନେତୃତ୍ୱକୁ ଅବମାନନା କରି ଆମ ମନ୍ତ୍ରୀଏ
ଘୋଡ଼ାଇ ଅଛନ୍ତି ଆପଣା ଦୃଷ୍ଟି ଯେଝାର ଯିଏ ।

ଅତୀତ ଭବିଷ୍ୟ ନଭାବି କରୁଅଛୁ କରମ
ନୁହଁ କେତେବେଳେ ହୃଦରେ ଶାସନର ଧରମ ।

ଶୃଙ୍ଖଳାକୁ ମାନି ଚଳିବା ନୈତିକତାର ଅର୍ଥ
ଶତ ଯତନରେ ପିଠିକି ରହି ନପାରି ବ୍ୟର୍ଥ ।

ଉଚ୍ଚ ପଦଧାରୀ ହାକିମେ ହଜୁଥିବେ ନିଶ୍ଚୟ
ନ ପଶିଲ କା'ର ମୁଣ୍ଡରେ ଛାଇ ବିଷୟଚୟ ।

[illegible] ଦେଶ ମନ୍ତ୍ରୀଏ ଜାଣି ନାହାନ୍ତି ପଦେ
କୁ[illegible] ନଜାଣି ଭରୀ ନିନ୍ଦାପବାଦେ ।

ଶୃଙ୍ଖଳିତ ସୈନ୍ୟ ନହେଲେ ଖସିଯାଅ ଗାଦିରୁ
ଖାଲି ହାତ ଥିବ ଅବଶ୍ୟ ଫେରିଗଲେ ମହୀରୁ ।

ଆଖି ଉପରକୁ ଲୋକର ଗାଦି ପାଇଲେ ଥରେ
ଅନ୍ୟାୟ ନ୍ୟାୟକୁ ଛାଡ଼ିବା ନାହିଁ କାହା ଚିତ୍ତରେ ।

ଅର୍ଥହିଁ କେବଳ ଦେଖାଏ ଆଜି ବାଟ ଅବାଟ
ବିଚାରୁ ନାହିଁ କେ ମନରେ ଦିନେ ବସିବ ହାଟ ।

ଅପାର ମହିମା ଯାହାର ଦେଖି ଚଉଦିଗରେ
ପାସୋରି ଦେଉଛି ମଣିଷ ପଡ଼ିଲେହେଁ ନେତ୍ରରେ ।

ଯାହା ଯୋଗୁଁ ଜନ୍ମ ପାଇଛି ସର୍ବଶେଷ ଜୀବରେ
ବଂଚିବା ପାଇଁ ବିବିଧ ଦ୍ରବ୍ୟ ତାପାଇଁ ଭବରେ ।

ବିବେକ ବିଚାର ବୁଦ୍ଧିହିଁ ତା'ର ଅମୂଲ୍ୟ ଶକ୍ତି
ନ ଲଗାଇ ତାହା ଲୋଡ଼ାରେ ଛାଡ଼ ଦେଉଛି ଭକ୍ତି ।

କପା ଗଛ ଯଦି ନଥାନ୍ତା ବୁଲୁଥାନ୍ତା ଲଙ୍ଗଳା
କହିବା ଶକତି ନଥିଲେ ତା'ର ନଥାନ୍ତା ଗଳା ।

ଜୀଇଁଥିବା ଯାଏଁ କରୁଛି ଲୋକ ଲୋଡ଼େ ଯେତେକ
କରୁନାହୁଁ କିରେ ମଣିଷ ଉପଯୋଗ ସେତକ ।

ନାନା ବୃକ୍ଷଲତା ଥିବାରୁ ରୋଗେ ଔଷଧ ପାଇଁ
ଆଣୁଅଛୁ ଖୋଜି ସେତକ ତା'ର ଲୋଡ଼ାକୁ ରହି ।

ଯେତେ ଜୀବ ସୃଷ୍ଟି ଦେଖୁଛୁ ତା'ର ନାହିଁରେ ସତ୍ତା
ତା ମଧ୍ୟେ ମଣିଷ ସୃଜନ ରହୁନାହିଁ ଯା ପତା ।

ଗୁଳ୍ମରୁ ଆରମ୍ଭି ପାଦପ କରି ପାରିବ ଗଣି
ମାଟି ତଳେ ପୁଣି ରହିଛି ଏଣେ ବିବିଧ ଖଣି ।

ଭିନ୍ନ ଭିନ୍ନ ସ୍ୱର ସୃଜନ ଭିନ୍ନ ଭିନ୍ନ ଜୀବର
ଭବୁକ ବିନା କେ ବୁଝିବ ଲୀଳା ଈଶ୍ୱରଙ୍କର ।

କାକ ପିକ ବେନି ଗଢ଼ାରେ ଦେଖୁ ସମାନ ବର୍ଣ୍ଣ
କର୍କଶ ସ୍ୱରଟି କାକର ଅନ୍ୟେ ମଧୁର ସ୍ୱନ ।

ଜୀବନ ନଥିଲେ ଜୀବନ କା'ର ନଥାନ୍ତା ଭବେ
ସବୁ ଉପଯୋଗୀ ଲୋକର ଦେଖୁଛନ୍ତି ସରବେ ।

ବିଚିତ୍ର ବିଧିର ବିଧାନ କିଏ ପାରୁଛି ବୁଝି
ଅନନ୍ତ କରୁଣା ଯାହାର କେବେ ନପାରୁ ଶୁଝି ।

ପାପ ପୁଣ୍ୟ ଅନବରତ ଅଛି ସୃଷ୍ଟି କାଳରୁ
ବିଚାରି କରିବା କରମ ନ ପାସୋରି ମନରୁ ।

ଶୁଦ୍ଧ ଥିଲେ ହୃଦ ସନ୍ତତ ଶୁଦ୍ଧି ଆସିବ ବଳେ
ନିନ୍ଦା ଅପମାନ ପାଇବା ପଡ଼ ଲୋଭ କବଳେ ।

ବାହାରୁ ଥିବାର ନଦେଖୁ ଧୂଆଁ ନଥିଲେ ନିଆଁ
ପାପେ ଲିପ୍ତ ହେବା କାହିଁକି ନିତି ଦେଖି ଦୁନିଆଁ ।

ନ୍ୟାୟ ଅନ୍ୟାୟକୁ ବିଚାର କରୁଥିବା ମନରେ
ଆପଣା ମହତ୍ତ୍ୱ ଜଗିବା ଥିବା ଯାଏଁ ଭବରେ ।

ଶିବଙ୍କ ମଉଳି ଉପରେ ପାଏ କେତକୀ ସ୍ଥାନ
ମୁକତି ପାଇବା ଆଶାରେ ଈଶେ କରିବା ଧ୍ୟାନ ।

କିଏ କେଉଁଆଡ଼େ ଯାଉଛି ପ୍ରାଣ ଛାଡ଼ିବା ପରେ
ଜାଣିବାକୁ ନାହିଁ ଶକତି କା'ର ମହୀ ମଧ୍ୟରେ ।

ମୋର ମୋର ବୋଲି କହୁଛେ ସିନା ଅନବରତ
କେ ନୁହେଁ କାହାର ଚିନ୍ତିଲେ ଆପେ ଥିବା ଜାଗ୍ରତ ।

୦ ୦ ୦

ଆହେ ପ୍ରଭୁ ଜଗନ୍ନାଥ    ତୁମେ ଅନାଥର ନାଥ
ଭଜୁଅଛି ଲୋକନାଥ ତବ ପୟରେ
ପ୍ରକୋପ ଦେଖି ମଦର    ଗଡୁଛି ଲୋତକ ଝର
କି ହେଲା ଦେଶ ଆମର ଭବନ୍ତୁ ଥରେ
ବୁଲାଇଲେ ନେତ୍ର ସକଳ
ଜାଣିବେ ହୋଇଛି ମଦ ପାନୀୟ ଜଳ ।

ପଡୋଶୀ କଲେଜ ରହି    କିପରି ମଣିଷ ସହି
ଗଲେ ତା'ର ଗନ୍ଧ ବହି ନୀରବ ଆଜି
ନକରି କେ ପ୍ରତିବାଦ    ଆସେ ମନେ ଅବସାଦ
ବଳୁନାହିଁ କି ବିବାଦ ଶିକ୍ଷକ ରଜି
ଭୁଲିଗଲୁ ଗାନ୍ଧୀ ବଚନ
ଶୁଭୁଅଛି ଦୀନ ଘରେ ନିତି କ୍ରନ୍ଦନ ।

ଅଢେଇ ଦିନକୁ ଆସି    ଆଶା ଜଳେ ଭସି ଭସି
କରୁଛୁ କୁକର୍ମ ଲାଗିପଡ ଲୋଭରେ
ନଧରି କଡେ କଉଡ    ଯାଉଛୁ ଭବୁଁ ବାହୁଡ
ହୃଦୟୁ ଧରମ ହୁଡ ଲୁହ ଧାରରେ
କେଉଁ ଜୀବ ପାଇବୁ ପରେ
ମଣିଷକୁ ଅଗୋଚର ସବୁ ଯୁଗରେ ।

⊙ ⊙ ⊙

ଶାସକ ହାତରେ ଲୋକର ଦଣ୍ଡି
ଖାଇବ ଆହାର ପେଟକୁ କଣ୍ଡି
ଦେଉଳେ ଘଣ୍ଟି
ଚଷାର କଣ୍ଟି
ମରନ୍ତ ପ୍ରାଣୀଏ ଖାଇଲେ ଚୁଣ୍ଟି ।

ସୃଷ୍ଟିର ରୀତିକି ଦେଖୁଛ ନିତି
ବଡାଇ ଦେଖାଇ ଲଭୁଛ ପ୍ରୀତି
ରବଣ ପରି
ଜୀବନ ଧରି
ଯାପୁଅଛ କାଳ ମିଛ ଆଚରି ।

କାହାପାଇଁ ଏତେ ଲାଗିଛି ଧନ୍ଦା
ସରିଯିବ ଗୁଡ ଲାଗିଲେ ଜନ୍ଦା
କିଏ କାହାର
କର ବିଚାର
ବୁଲାଅ ଆଖିକି ସାରା ସଂସାର ।

ସର୍ବତ୍ର ବ୍ୟାପିଛି ଆଖି ଯାହାର
ଠକିବାକୁ ତାଙ୍କୁ ସାଧ୍ୟ କାହାର
କର ବିଚାର
ଶୁଦ୍ଧି ଆଚାର
କରି ତରିଯାଅ ମର ସଂସାର ।

ରହିଛି କି ଭବେ କାହା ବୈଭବ
ଦେଖୁନାହିଁ କିରେ କେଉଁ ମାନବ
ସୃଷ୍ଟିର ଗତି
ବିଚିତ୍ର ଅତି
କରନ୍ତୁ ବିଚାର ମାନବ ତତି ।

⊙ ⊙ ⊙

ବିବେକ ବୁଦ୍ଧି ବିଚାର
ମଣିଷ ବ୍ୟତୀତ ଅଛିକି କା'ର
ବାଇମନରେ, ପଚାରିବୁ ବାରବାର ।
ଛାଡଦେଲେ ମଣିଷପ୍ରା
ହରାଇବୁ ସିନା ନିଜ ମହତ୍ୱ
ବାଇମନରେ, ଦୃଷ୍ଟି ଦେବୁ ସୃଷ୍ଟି ତତ୍ତ୍ୱ ।
ଅଢେଇ ଦିନକୁ ଆସି
ସ୍ୱାର୍ଥ ଜଳେ କେବେ ନଯିବୁ ଭସି
ବାଇମନରେ, ଛାଡବୁ କପଟ ରଶି ।
ଆସିଛୁ ଖାଲି ହାତରେ
ଫେରିଗଲେ କିଛି ନଥିବ କରେ
ବାଇମନରେ, ଭାବୁଥା ସଦା ମନରେ ।
ବିଚିତ୍ର ଦୁନିଆଁ ରୀତି
ଉଠୁଛି ପଡୁଛି ମଣିଷ ନିତି
ବାଇମନରେ, ଯେସନ ସିଂଧୁର୍ମି ନୀତି ।

ବୋହି ନେବା ଲାଗି ବିତ୍ତ
ନ ଜାଣିଲେ କେହି ହିତ ଅହିତ
ବାଇମନରେ, ପରଖନ୍ତୁ ନିଜ ଚିତ୍ତ ।

ପ୍ରବୃତ୍ତିର ଅନୁଗତ
ହୋଇ ଛାଡ଼ଦେଲ ଲାଜ ମହତ
ବାଇମନରେ, କାହିଁକି କୁକର୍ମେ ରତ ।

ବିବେକ ବୁଦ୍ଧି ବିଚାର
ମଣିଷ ବ୍ୟତୀତ ଅଛିକି କା'ର
ବାଇମନରେ, ସୁଗୁଣ ସାଧୁ ଆଚର ।

ପାପ ପୁଣ୍ୟ ନିତି କଳି
ଦେଲଣି ଧର୍ମକୁ ନାସ୍ତିକ ଦଳି
ବାଇମନରେ, ଅହିଂସା ପଡୁଛି ବଳି ।

ଏଣ୍ଡି ପୋକର ଜୀବନ
ଦିନରାତି ବସି କରି ଚିନ୍ତନ
ବାଇମନରେ, ନ ରହୁ ପାପରେ ମନ ।

ନାହିଁ କାହାର ସଂଯମ
ଦେଖୁନାହିଁ କେହି ନୀତି ନିୟମ
ବାଇମନରେ, ଠକାମି ହେଲା ଧରମ ।

ଦେଖ ଶାସନ କାଳରେ
ପଡ଼ିଛି ଫାଇଲ ଅବିଚାରରେ
ବାଇମନରେ, ନଚାଲେ କାର୍ଯ୍ୟ ସୁଚାରେ ।

କ୍ଷମତା ନିମିତ୍ତ ଲୋକ
ରହୁଛି ଉପାସେ ପାସୋରି ଭୋକ
ବାଇମନରେ, ହାରିଲେ କରୁଛି ଶୋକ ।

ଔଦ୍ଧତ୍ୟ ଯଉବନର
ଅଢେଇ ଦିନକୁ ଦେଖିଲେ ଡର
ବାଇମନରେ, ସୁଗୁଣ ସାଧୁ ଆଚର ।

ଅଛିକି ଦେଶର ଠେକ
ଗରୀବ ଲୋକର ବୁଡୁଛି ଭେକ
ବାଇମନରେ, ଛାଡୁଛି ଧର୍ମ ବିବେକ ।

ଭଲ ବା ମନ୍ଦ ନଜାଣି
କେଂଚୁଆକୁ ସୁଖ ଗୋଳିଆ ପାଣି
ବାଇମନରେ, ଅଧର୍ମକୁ ଆଣୁ ଟାଣି ।

ଧନୀର ପଡ଼ିଛି ପାଳି
ଗରୀବ ମୁହଁରେ ବୋଳୁଛି କାଳି
ବାଇମନରେ, ପଛରେ ମାରୁଥା ତାଳି ।

ଗାନ୍ଧିଜୀଙ୍କ ଅଭିଶାପ
ସାରା ଦେଶେ ପଢ଼ି ଦିଏ ସନ୍ତାପ
ବାଇମନରେ, ବୃଥା ସିନା ପରିତାପ ।

ସଭ୍ୟଙ୍କ ବିଭିନ୍ନ ଭତ୍ତା
ନୁହଁକି ଅନ୍ୟାୟ କହୁ ଜନତା
ବାଇମନରେ, କରୁଛି ନାଚ କ୍ଷମତା ।

ନପଢ ପର ବୋଲରେ
ନିଜ ବିବେକକୁ ପଚାରି ଥରେ
ବାଇମନରେ, ନିଷ୍ପତ୍ତି ନିଅ ଶେଷରେ ।

ଧନୀର ବଢୁଛି ଧନ
ଦିନୁଁ ଦିନ ଦୀନ ହେଲା ଉଜନ
ବାଇମନରେ, ଗାଆଁରେ କର ଦର୍ଶନ ।

ଠିକା ନେଇ ଠିକାଦାର
କେତେ ଠକୁଅଛି କର ବିଚାର
ବାଇମନରେ, ଦିବସ ହେଲା ଅନ୍ଧାର ।

କଂଟ୍ରୋଲ ହୋଇଛି ଜାରି
କରୁଅଛି ଲାଭ କଳା ବେପାରୀ
ବାଇମନରେ, ମରୁଛି ଗାଆଁ ଭିକାରି ।

ପାଠୁଆ ଚାକିରି ପାଇଁ
ତଳିପା ସରୁଛି ଚୌଦିଗେ ଧାଇଁ
ବାଇମନରେ, ଚାକିରି ଲାଞ୍ଚକୁ ଚାହିଁ ।

ହରିନାମ ତୁଣ୍ଡେ ଧରି
ମିଛ ଛାଡଦେଇ ସତ୍ୟ ଆଚରି
ବାଇମନରେ, ଜୀବନଟି ଯାଉ ସରି ।

ହେଲାଣି ଦୁର ଶାସନ
କିଏସେ କରିବ ଦୁଃଖ ମୋଚନ
ବାଇମନରେ, ଅଛିକି ଗାନ୍ଧୀ ବଚନ ।

ହିଂସା କପଟର ମେଳ
ହୋଇଅଛି ଏବେ ଦୁନିଆଁ ଖେଳ
ବାଇମନରେ, ଭାଂଗିବ ଆସିଲେ ବେଳ ।

ହେଲାଣି ନାରୀ ଆଗୁଆ
ମୋହିତ ହେଲକି ଦେଖି ଫଗୁଆ
ବାଇମନରେ, କହୁଛ ନାହିଁ ପଛୁଆ ।

ଉପାର୍ଜିତ ଧନ ନୁହଁ ଚିର ଦିନ
ପକ୍ଷୀ ଲାଗି ଦିନେ ଉଡ଼ି ଯିବରେ
ଚେତାଇ ଦେଉଛି ନାନା ଉପାଖ୍ୟାନ
ମଣିଷକୁ ସଦା ଭୂମଣ୍ଡଳରେ ।

ଆଜି ଯେ ହୋଇଛି ନିଜ ପରିବାର
ବରଷ କେତୋଟି ଗଲା ପରେ
କିଏ କେଉଁଆଡେ ଗଲାଣି ବାହାରି
ଯାଉଅଛି ରହି ଅଗୋଚରରେ ।

କିଏସେ ଜାଣୁଛି ଯେତେ ଯତ୍ନ କରୁ
ଅବୁଝା ସନ୍ତତ ସୃଷ୍ଟି ରହସ୍ୟ
କାଳର କୁଟୀଳ ଗତିକି ଭାବିଲେ
ହୋଇଯିବ ବାୟା ଲୋକ ଅବଶ୍ୟ ।

○ ○ ○

ଜନ୍ମିଲେ ବିତୃଷ୍ଣା ଧନ ନାମରେ
ଅବଶ୍ୟ ଆସିବ ଶାନ୍ତ ମନରେ
ଦେଖୁଁ ଯାହା ଭବେ ସବୁ ଅସ୍ଥାୟୀ
ହେଉଛି ମଣିଷ ତୁଚ୍ଛା ଆଶାୟୀ
ଭଲ ମନ୍ଦ ନ ବିଚାରି
କରିଲେ କରମ ଅପବାଦ ସଙ୍ଗେ
ହସିବ ପଛେ ଭଗାରି ।

ସ୍ଥାୟୀ କି ଯୌବନ ସ୍ଥାୟୀ କି ଧନ
କରୁଛି ମଣିଷ ନିତ୍ୟ ଦର୍ଶନ
ତଥାପି କାହାର ନାହିଁ ଭାବନା
ଅବା କେତେବେଳେ ନାହିଁ ଶୋଚନା
ସୃଷ୍ଟିର ରୀତିକି ଦେଖି
ବାଟ ବା ଅବାଟ ନଭାବି ମନରେ
ହେଉଛ ସଦା ଉପେକ୍ଷି ।

ନ୍ୟାୟ ବା ଅନ୍ୟାୟ ଧର୍ମ ଅଧର୍ମ
ନବୁଝି ସଂସାରେ ଚାଲିଛି କର୍ମ
ପରିଣାମ ଫଳ ନଚିନ୍ତି ଲଭେ
ଯେ ଯାହା ସ୍ୱାର୍ଥରେ ମତ୍ତନ୍ତ ଭବେ
ଚାଲିଛି ଖେଳ ଯେପରି
ତାକୁ ଚାହିଁ ଦଣ୍ଡ ଦାଇବର ଏଣେ
ମିଳୁଅଛି ସେହିପରି ।

ସାର୍ଥକ କରରେ ନିଜ ଜୀବନ
ଛିଣ୍ଡାଇ ଚିତ୍ତରୁ ଲୋଭ ବନ୍ଧନ
ଯାହା ଯୋଗୁଁ ଲୋକ ଅପବାଦରେ
ନିରନ୍ତର ସଢ଼ୁଅଛି ଭବରେ
ନିଜର କର୍ତ୍ତବ୍ୟ କରି
ଆସୁଛ ଯେପରି ଫେରିବ ସେପରି
ପାପ ପୁଣ୍ୟ ସଙ୍ଗେ ଧରି ।

ଏ ତ କଳିଯୁଗ ମହା ବିଷମ
ଅଛିକି କାହାର ଟିକେ ସଂଯମ
କ୍ଷମତାର ମୋହ କଲାଣି ଅନ୍ଧ
ରୋକିବ ପାଣିକି ପକାଇ ବନ୍ଧ
କେଉଁଠାରୁ ବାଲି ଆଣି
ବିସାରୀ ଜାଲରେ ଯଥା ଛଟପଟ
ହେଉଛି ମଣିଷ ଜାଣି ।

ଅସତ୍ ଉପାୟେ ଧନ ଅରଜି
ଲାଜ ମହତକୁ ଦେଲେ ବରଜି
ପ୍ରବୃତ୍ତି ନିବୃତ୍ତି ପ୍ରତ୍ୟହ କଳି
ଏକକୁ ଆରେକ ଗଲାଣି ବଳି

ଅଛିକି ବିଷୟ ବୁଦ୍ଧି
ବେଳ ଥାଉଁ ଥାଉଁ ନକଲେ ଚିନ୍ତନ
ହେବକି ହୃଦୟ ଶୁଦ୍ଧି ।

ଅତୀତ ବିଷୟ ଭାବନା କର
ସନ୍ତାନ ସନ୍ତତି ନିଜ ଘରର
ପତ୍ନୀ ଅବା ସତ୍ତା ନାହିଁ କାହାର
ବିଚିତ୍ର ସୃଜନ ଭବେ ଧାତାର
ଆଖିରେ ପଡୁଛି ନିତି
ଯେବେ ମନେ ବସି ବିଚାରିଲେ ବାରେ
ହୃଦୟୁ ଯିବ ଅନୀତି ।

ଯେତେବେଳେ ଯାହା ଘଟେ ସଂସାରେ
ନିରତ ଘଟୁଛି ଦୈବ ଇଛାରେ
ପରମେଶ ଦତ୍ତ ବିଷୟ ବୁଦ୍ଧି
କରୁଛିକି ଲୋକ ହୃଦୟ ଶୁଦ୍ଧି
ଭଗବାନ ସ୍ତୁତି ସ୍ତୁତି
ଯାଉ ଏ ଜୀବନ ସୁଖ ଅବା ଦୁଃଖେ
ଦୀନ ସେବା କରି କରି ।

ଯେତେ ଲୋକ ରହି ଥାଆନ୍ତୁ ଘେରି
ଆସିବ କିଏସେ ଗଲେରେ ଫେରି
ଜୀବ ଜୀବନ
ନ କରନ୍ତ କିଏ ନିତି ଦର୍ଶନ ?

ଦେଖୁଛ ଅସ୍ଥାୟୀ ସବୁ ଏ ଭବେ
କରୁଛ କରମ ନଭାବି ଲବେ
ବିବେକ ବୁଦ୍ଧି
ଜୀଇଁଥିବା ଯାଏଁ କରରେ ଶୁଦ୍ଧି ।

ଅତୀବ ଜଟିଳ ଏ ଭବ ଭୂଇଁ
ଯେତେବେଳେ ଆସି ଦେଇଛୁ ଛୁଇଁ
କିଛି ନଆଣି
ଫେରିଗଲେ ଖାଲି ଥିବରେ ପାଣି ।

ଆସୁଅଛୁ ଯଥା ଫେରୁଛୁ ତଥା
ଓଲୋମ ବିଲୋମ ସୃଷ୍ଟିର ପ୍ରଥା
ନଭାବି କିଛି
ଯାଉଛି ଜୀବନ ପଛରେ ଛି ଛି ।

ପ୍ରାଣ ପକ୍ଷୀ ଯେବେ ଯାଉଛି ଉଡ଼
ଆସୁନାହିଁ ଆଉ କେବେ ବାହୁଡ଼
ଦୁନିଆଁ ନୀତି
ନଭବ କାହିଁକି ଶୟନେ ନିତି ।

ଯେତେ ଲୋକ ରହି ଥାଆନ୍ତୁ ଘେରି
ନପାରିବେ ରୋକି ଗଲେରେ ଫେରି
ଜୀବ ଜୀବନ
ନକରୁଛି କିଏ ନିତି ଦର୍ଶନ ?

⊙ ⊙ ⊙

ଦେହ ଗଲା ଶୁଖି ନାହିଁ ମୁଣ୍ଡେ ବାଳ
କେତେବେଳେ ମାଡ଼ ବସିବରେ କାଳ ।
ଠକା ଠକି କରି ଅରଜିଲୁ ଧନ
ହେବକିରେ କେବେ ନିଜ ପ୍ରୟୋଜନ ।
କେବେ ପ୍ରାଣ ପକ୍ଷୀ ପଳାଇବ ଉଡ଼
ଭାବୁଛକି କେବେ ଆସିବ ବାହୁଡ଼ ?
ତୋର ଠକାଠକି ଗୁଣ୍ଡାମି ତୋହର
ସଙ୍ଗେ ଯିବ ତୋର କରି ହରବର ।
ପାରୁନାହୁଁ ଦେଖି ପରଳ ଆଖିରେ
କହିଲେ କଥା ନପଡେ ଶ୍ରୁତିରେ ।
ବଢ଼ ବଢ଼ ଯଥା ଆସୁଛି ଯୌବନ
ଆସୁଅଛି ଜରା ତା'ପରେ ତେସନ ।
ଭାବୁଥିଲେ ଲୋକ ବିଧାତାର ସୃଷ୍ଟି
ନୀତି ଅନୀତିକି ପଡୁଥାନ୍ତା ଦୃଷ୍ଟି ।
ନ ଛାଡନ୍ତା କେବେ ବିଷୟ ଶକତି
ଖୋଜନ୍ତା ଅବଶ୍ୟ ଭକତି ମୁକତି ।
ନ ପଶନ୍ତା କେବେ କପଟ ଚିତ୍ତରେ
ଯାଆନ୍ତା ଜୀବନ ନିରତ ସୁଖରେ ।

ଭୋଗନ୍ତ ଦଣ୍ଡ ତା କୁଟୁମ୍ବ ସହିଏ
ଗାନ୍ଧିଜୀଙ୍କୁ ଦିନେ ମରାଇଲା ଯିଏ ।

ରହିଛି ଦର୍ପଣ ସବୁ ପୁସ୍ତକରେ
ଚରିତ୍ର କିଏସେ କରୁଛି କି ଥରେ ।

ଏ ଦେଶର ମଣି ଗାନ୍ଧିଜୀ କେବଳ
ଚାଲିଛୁ ଅବାଟେ ପାସୋରି ସକଳ ।

ଅଖଣ୍ଡ ଭାରତ କଲୁ ଖଣ୍ଡ ଖଣ୍ଡ
ଏଥିଲାଗି ଦେଶ ଭୋଗେ ନାନା ଦଣ୍ଡ ।



ଅଢେଇ ଦିନକୁ ଆସି
ସ୍ୱାର୍ଥଭଳେ କେବେ ନଯିବୁ ଭାସି
ବାଇମନରେ, ଛାଡ଼ିବୁ କପଟ ରାଶି ।୧।

ଆସିଛୁ ଖାଲି ହାତରେ
ଫେରିଗଲେ କିଛି ନଥିବ କରେ
ବାଇମନରେ, ଏବୁଥା ସଦା ମନରେ ।୨।

ବିଚିତ୍ର ଦୁନିଆଁ ରୀତି
ଉଠୁଛି ପଡୁଛି ମଣିଷ ନିତି
ବାଇମନରେ, ଯେସନ ସିଂଧୁର୍ମି ନୀତି ।୩।

ବୋହି ନେବା ଲାଗି ବିତ୍ତ
ନ ଭାଣିଲେ କେହି ହିତ, ଅହିତ
ବାଇମନରେ, ପରଖନ୍ତୁ ନିଜ ଚିତ୍ତ ।୪।

ପ୍ରବୃତ୍ତିର ଅନୁଗତ
ହୋଇ ଛାଡ଼ଦେଉ ଲାଜ ମହତ
ବାଇମନରେ, କାହିଁକି କୁକର୍ମେ ରତ ।୫।

ବିବେକ ବୁଦ୍ଧି ବିଚାର
ଜୀବମାନଙ୍କର ଅଛିକି କା'ର ?
ବାଇମନରେ, ସୁଗୁଣ ସାଧୁ ଆଚାର ।୬।

ପାପ ପୁଣ୍ୟ ନିତି କଳି
ଦେଲଣି ଧର୍ମକୁ ନାସ୍ତିକ ଦଳି
ବାଇମନରେ, ଅହିଂସା ପଡୁଛି ବଳି ।୭।

ଏଣ୍ଡିପୋକର ଜୀବନ
ଦିନ ରାତି ବସି କରି ଚିନ୍ତନ
ବାଇମନରେ, ନ ରହୁ ପାପରେ ମନ ।୮।

## ଶାସନ

ନେତୃତ୍ୱକୁ ଅବମାନନା କରି ଆମ ମନ୍ତ୍ରୀଏ
ଘୋଡାଉ ଅଛନ୍ତି ଆପଣା ତ୍ରୁଟି ଯେଝାର ଯିଏ ।

ଅତୀତ ଭବିଷ୍ୟ ନଭାବି କରୁଛନ୍ତି କରମ
ନୁହ କେତେବେଳେ ଧୂଦର ଶାସନର ଧରମ ।

ଶୃଂଖଳାକୁ ମାନି ଚଳିବା ନୈତିକତାର ଅର୍ଥ
ଶତ ଯତନରେ ପିଠିକି ଚାହିଁ ନପାରି ବ୍ୟର୍ଥ ।

ଉଚ୍ଚ ପଦଧାରୀ ହାକିମେ ହସୁଥିବେ ନିଶ୍ଚୟ
ନ ପଶିଲା କା'ର ମୁଣ୍ଡରେ ଛାର ବିଷୟଚୟ ।

ଗାନ୍ଧୀ ଉପଦେଶ ମନ୍ତ୍ରୀଏ ଜାଣି ନାହାନ୍ତି ପଦେ
ସୁକର୍ମ କୁକର୍ମ ନଜାଣି ଭାଗି ନିନ୍ଦାପବାଦେ ।

ଶୃଂଖଳିତ ସୈନ୍ୟ ନହେଲେ ଖସିଯାଅ ଗାଦିରୁ
ଖାଲି ହାତ ଥିବ ଅବଶ୍ୟ ଫେରିଗଲେ ମହୀରୁ ।

ଆଖି ଉପରକୁ ଲୋକର ଗାଦି ପାଇଲେ ଥରେ
ଅନ୍ୟାୟ ନ୍ୟାୟକୁ ଛାଡ଼ିବା ନାହିଁ କାହା ଚିତ୍ତରେ ।

ଅର୍ଥ ହିଁ କେବଳ ଦେଖାଏ ଆଜି ବାଟ ଅବାଟ
ବିଚାରୁ ନାହିଁ ଲୋକେ ମନରେ ଦିନେ ବସିବ ହାଟ ।

ବାରବାର କରି ପଢ଼ରେ ଏଣ୍ଡିପୋକ ଜୀବନ
ଶିଖିବା ଆଶାରେ ଲେଖିଲି ଘେନ ମୋ ନିବେଦନ ।

ଏ ଭବ ମଂଚରେ        କେତେ ନାଟ୍ୟକାର
ନାନା ଅଭିନୟ କରି
ଚିରଦିନ ପାଇଁ        ଯାଇଛନ୍ତି ଫେରି
ଅପମାନ ମୁଣି ଧରି ।

ନ ଦେଖି ଚୌଦିଗେ ଈଶ୍ୱରମୟ
ଆଶା ଜାଲେ ଆଜି ମାନବଚୟ
ସେପଟେ କୃଷ୍ଣଙ୍କୁ ଏପଟେ କୃଷ୍ଣ
ଧନାଗମ ପାଇଁ ନୁହ ବିତୃଷ୍ଣ

ନେଇ ପରର ସମ୍ପତ୍ତି ଯେ
ଠିଲେ ନ ବିଚାରି      ପର ଜନମକୁ
ଅର୍ଜନ୍ତି ନିଜ ବିପତ୍ତି ।୧।

ଦଣ୍ଡଳିତା ଧରି ଆୟୁଷ କ୍ଷୟ
ଏଥିପ୍ରତି କା'ର ଅଛି କି ଲୟ ?
ଧାଉଁଛି ମଣିଷ ଆଶା ପଛରେ
ରହି ନିରନ୍ତର ଲୋଭ ଫାନ୍ଦରେ

ନାହିଁ କାହାର ଭାବନା ଯେ
ପରସ୍ୱ ହରଣ      ମହାପାପ ବୋଲି
ଆସିବ କେବେ ଚେତନା ଯେ ।୨।

ଗାନ୍ଧୀ ଉପଦେଶ କେହି ନ ପଢ଼
ଭାଂଗନ୍ତି ଶାସନ ଗଢ଼କି ଗଢ଼
ହେଉଛି ପଇସା ଅଯଥା ଖର୍ଚ୍ଚ
ମନୋରଥ କା'ର ହେବାରୁ ବ୍ୟର୍ଥ

କୋଟି କୋଟି ଋଣ ଘର
ଚାଲିଅଛି ବଢ଼ି      ସେ ହିସାବ ନାହିଁ
ହେଉଛି ହାର ଧିକ୍କାର ।୩।

ଅଗଣିତ ଅର୍ଥ ହେଉଛି ଲୁଟି
ଜନତାର ଆଖି ଯାଇଛି ଫୁଟି
ନେବାରୁ ଆଶ୍ରୟ ଅସାଧୁତାର
ଗରୀବ ବାପୁଡ଼ା ହୁଏ ଶିକାର

ଗଡ଼ାଉଛି ଲୁହ ଧାର
ବେଳ ଥାଉ ଥାଉ      ନ ଖୋଜିଲେ ବାଟ
ଭବିଷ୍ୟତ ଅନ୍ଧକାର ।୪।

ବିଚାର କରନ୍ତୁ ଯେତେ ସାଧୁଏ
ଅବା ହାଣ୍ଡିଶାଳେ ଥିବା ବଧୂଏ
ଯାଇଛି ଶ୍ମଶାନ, ଗଳ୍ପ ଗୋଚର
ଅଛିକି ଗାଆଁରେ କାହିଁ ପଦର

ଯେ ଯାହା ବଳ ଖଟାଇ
ମିଳୁଅଛି ପଟା      କୌଶଳୀକୁ ପର
ରହୁଛି ଦୁର୍ବଳ ଭଇ ଯେ ।୫।

ପ୍ରସବିଲା ଆଶା ସ୍ୱାର୍ଥ ମମତା
ବେନିଙ୍କ ମଧ୍ୟରେ ଥିଲା କ୍ଷମତା
ଦୁର୍ଭାଗ୍ୟରୁ ଦିନେ ଲାଗିଲେ କଳି
କ୍ରୋଧାଗ୍ନିରେ ହୃଦ ଯାଉଛି ଜଳି

କେ ନୁହେ କାହାକୁ ଊଣା
ସହସା କ୍ଷମତା      ସ୍ୱାର୍ଥର ଆଖିକୁ
ଫିଙ୍ଗିଦେଲା ମୁଠେ ଚୂଣା ।୬।

ପ୍ରଭୁ ଜଗନ୍ନାଥ କରୁଣାମୟ
ତବ ଶ୍ରୀଚରଣେ ରହୁ ମୋ ଲୟ
ନଥିବ ଆପଦ ନଥିବ ଭୟ
ହେବା ଯାଏଁ ମୋର ଆୟୁଷ କ୍ଷୟ

ଏତିକି ମୋର ମାଗୁଣି ଯେ
ସରିଯାଉ ଦିନ      ଦୀନ ସେବା କରି
ତବ ନାମ ଗୁଣି ଗୁଣି ।୭।

ମଣିଷ ଜୀବନ      ପାଣିର ଫୋଟକା
ବୁଝନ୍ତି କି କିଏ ଭବେ ?
ବୁଝୁଥାନ୍ତେ ଯେବେ      ଅସାଧୁ ମାର୍ଗକୁ
ଆଶ୍ରନ୍ତେ କି କେହି ଲବେ ।

କେତେବେଳେ କା'ର      ଯାଉଛି ପରାଣ
ଜାଣୁନାହିଁ କେହି ଲବେ
ଜାଣୁଥାନ୍ତା ଯଦି      କଳ୍ପନା ସାଗରେ
ଭସନ୍ତା କି ଜନ ଭବେ ।

ବିଚିତ୍ର ବିଭର ବିଚିତ୍ର ସୃଜନ
ଚଉଦିଗେ ଲୋକ କରୁ ତା ଦର୍ଶନ ।

ଆତ୍ମରକ୍ଷା ଲାଗି ଦଂଶନ କାହାର
କେ ପାଇଛି ନଖ ଦେଖୁ ନିରନ୍ତର ।

ଲାଂଗୁଳେ କାହାର ରହିଅଛି ବିଷ
ପାରୁଛି କି ସହି ତା ଜ୍ୱାଳା ମଣିଷ ।

ଗୋରୁ ଜାତି ସିଂଘ ନ ଦେଖିଛି କିଏ
ତା ଶତ୍ରୁକୁ ସେହି ନିଜେ ତଡ଼ଦିଏ ।

ହାତୀର ହାବୁଡେ ପଡ଼ଲେ ଶୁଣ୍ଢରେ
କରେ ଆକ୍ରମଣ ଆସି ସେ ରଗରେ ।

କେତେ ବୃକ୍ଷଲତା ହୋଇଅଛି ସୃଷ୍ଟି
ପଡୁଅଛି ନିତି ମଣିଷର ଦୃଷ୍ଟି ।

ବିବିଧ ବର୍ଣ୍ଣର ଫୁଟି ଫୁଲ ନିତି
ନିର୍ଗନ୍ଧ ସୁଗନ୍ଧ କା'ର ଶୋଭା ଅତି ।

ନାଗଚମ୍ପା ଫୁଲ ଦେଖିଥିବ ଯିଏ
ଶିବ ସମ ବୋଲି ଭାବି ମୁଗ୍ଧ ସିଏ ।



## ଜନ୍ମ ମରଣ

ବିଚାର ଶକତି ଥାଇ ମଣିଷ
କରି ଅନୀତିକି ପିଉଛି ବିଷ ।

କି ହେବ ତା ଗତି ପର ଜନ୍ମରେ
ଭାବୁନାହିଁ କେବେ ଜୀବନେ ଥରେ ।

ଯଥା ଦିନ ରତି ସଞ୍ଜ ସକାଳ
ଶିଶିର ବସନ୍ତ ନିଦାଘ କାଳ ।

ଯାଉଛି ଆସୁଛି ବିଧି ଇଚ୍ଛାରେ
ତଥା ଜନ୍ମ ମୃତ୍ୟୁ ଏହି ସଂସାରେ ।

ଧନ୍ୟ ଧନ୍ୟ ମଣିଷରେ ଧନ୍ୟ ତୋର ବୁଦ୍ଧି
ମଲାଯାଏଁ ନ କରିଲୁ ଚିତ୍ତ ତୋର ଶୁଦ୍ଧି ।

ଜନମି ଖାଲି ହାତରେ ଗଲେ ଖାଲି ପାଣି (ହାତ)
କାହିଁକି କୁକର୍ମେ ରତ ସବୁ ଜାଣି ଜାଣି ।

ଶଗଡର ଚକ ପରି ଜନମ ମରଣ
ଘୂରୁଅଛି ଅବିରତ ଜାଣୁ କି କାରଣ ।

ସଂଚିବୁ ଜୀବନେ ଯେତେ ସହି ନାନା କ୍ଲେଶ
ଲାଗିବ କି କେତେବେଳେ ତୋର ହିତେ ଲେଶ ।

ଦିନେ ହେଲେ ନ ଭାବିଲୁ ସଂସାରର ରୀତି
କେବଳ ଧନ ବଢ଼ାଇ ଲଭୁଅଛୁ ପ୍ରୀତି ।

କାହାଲାଗି ଜମା କଲୁ ନଚିନ୍ତିଲୁ ଥରେ
ଠକିଛୁ ଭାଇକୁ ସିନା ଘାର୍ଣ୍ଣି ହେବୁ ପରେ ।

ଧନ ଦେଖି ହସୁ ଏବେ କାନ୍ଦବୁ ଅବଶ୍ୟ
ନ ଶିଖିଲୁ ପଦେ କିଛି ଦୁନିଆଁ ରହସ୍ୟ ।

ସଂସାରର ଗତି ଦେଖି ନ ଶିଖିଲେ ଜନ
କି ହେବ ପର ଜନ୍ମରେ କର ତ ଚିନ୍ତନ ।

ଦେଖୁଅଛୁ ନିତି ବାଟେ ଉଠାଣି ଗଡାଣି
ଏହି ଚିହ୍ନ ରଖିଛନ୍ତି ପ୍ରଭୁ ଚକ୍ରପାଣି ।
ଦେଖିଥିବୁ କେତେ ଥର ଢେଉ ସମୁଦ୍ରର
ଉଠିବା ପଡବା ଲାଗିଅଛି ନିରନ୍ତର ।
ନ୍ୟାୟଟିକୁ ଛାଡଦେଲୁ ଅନ୍ୟାୟକୁ ଧରି
ଭାବିଛୁ କି କେବେ ସୁଖେ ଭବୁ ଯିବୁ ତରି ।

ଜାଣୁଛନ୍ତ ଅନ୍ତର୍ଯାମୀ ରହି ତୋ ଚିତ୍ତରେ
ତା'ର ଦଣ୍ଡ ରହିଥିବ ଗଲେ ଅବାଟରେ ।



## ଏଣ୍ଡିପୋକର ଜନ୍ମ ମରଣ

ମାଟ୍ରିକ୍ ପରୀକ୍ଷା ଦେଇ ଆସିଲି ଘରକୁ
ଆଣିଥିଲି ସଙ୍ଗେ କେତେ ଏଣ୍ଡିର ଡିମ୍ବକୁ ।

ଅଠେଇଶି ସାଲ କଥା ପଡୁଅଛି ମନେ
ଗୋଟିଏ ଟାଟରେ ସବୁ ରଖିଲି ଯତନେ ।

ପିଂପୁଡ଼ ନନେଲ ପରି ରଖିଲି ସାଇତି
କଅଁଳ ଜଡା ପତର ଖୋଜୁଥିଲି ନିତି ।

ଜାଣିଥିଲି ଫାଟିବ ତା କୋଉଏ ଦିନରେ
ଡିମ୍ବତକ ଘୋଡାଇଲି ଜଡାର ପତରେ ।

ଜଡା ଅବା କୋବି ପତ୍ର ତାର ଖାଦ୍ୟ ନିତି
ଦେଖିବାକୁ ଏ ବୃତ୍ତାନ୍ତ ବଢ଼ିଲା ମୋ ପ୍ରୀତି ।

କୋଉଏ ଦିନରେ ଫାଟି ଖାଇଲେ ପତର
ପିପୀଲିକା (ପିଂପୁଡ଼) ଠାରୁ ସାନ
ଦେଖିଲି ଆକାର ।

ଡଗ ଡଗ ଚାଲୁଥିଲେ କୋଉଏ ଗୋଡରେ
ଦୁଇ ଇଞ୍ଚ ଲମ୍ବ ହେଲା ବିଂଶତି ଦିନରେ ।

ଏହିଦିନ କିଛି ଖାଦ୍ୟ ନଖାଇ ସେମାନେ
ଡାଳ ଉପରକୁ ଆସି ବୁଲିଲେ ସନ୍ଧାନେ ।

ଜାଣିଥିଲି ଆଗୁ ଲୋଡ଼ା ହେବ ଆମ୍ବଡାଳ
ତରବରେ ଉଠି ଦେଖେ ହେଲାଣି ସକାଳ ।

ଟୋକେଇରେ ଉକ୍ତ ଡାଳ ପୂର୍ବୁ ରଖିଥିଲି
ଗୋଟିଏ ଗୋଟିଏ ନେଇ ତହିଁରେ ଛାଡ଼ିଲି ।

ରହିଥିଲା କେତେ କାଳ ତା'ର ଶରୀରରେ
ଖୋଷା କରି ଲୋଚ ହୋଇ ରହିଲେ ଭିତରେ ।

କୋଡ଼ିଏ ଦିନ ହେବାରୁ ହୋଇ ପ୍ରଜାପତି
ବାହାରିଲେ ଖୋଷା କାଟି
ତହିଁରୁ ସଂପ୍ରତି (ବର୍ତ୍ତମାନ) ।

ଅଣ୍ଡି ର ମାଈର ଯୋଡ ସଙ୍ଗେ ସଙ୍ଗେ ହୋଇ
ତି'ଦିନେ ଦୁହିଁଙ୍କ ପ୍ରାଣ ଗଲା ଡମ୍ବ ଦେଇ ।

ଶହେରୁ ଅଧିକ ଦେବ ଡମ୍ବ ପରିମାଣ
କହେ ଲୋକନାଥ ଜାଣ ଏହାର ପ୍ରମାଣ ।

ଦୟାମୟ ହରିଙ୍କର ଲୀଳା ଚମତ୍କାର
ବୁଝିବାକୁ ସମର୍ଥ କି ଏ ମଣିଷ ଛାର ।

କ୍ଷମତା ଲାଳସା ପୁଣି ଆଶା ଧନ ପାଇଁ
ଜୀବନଟି ଯାଉଅଛି ଅନୀତିରେ ଧାଇଁ ।

ଠକାମି ଭଣ୍ଡାମି ମିଛ ଏବର ଜୀବିକା
ତା'ପଛେ ରହିଛି ଛପି ହୃଦେ ଅହମିକା ।

କୁକର୍ମ ଗର୍ବ ହେତୁରୁ ଦଶାନନ ବଂଶ
ପଢ଼ଛ ପୁରାଣେ ପର ପାଇଥିଲା ଧ୍ୱଂସ ।

ସଦାମ ହୁସେନ ଗର୍ବ ଘଟଣା କାଲିର
ଧନ ଜନ ସରିଗଲା ଫଳ ଅନୀତିର ।

ଯେଉଁ ମଂଜି ଲଗାଉଛ ଫଳୁଛି ସେ ଫଳ
ପାଇବ ପର ଜନ୍ମରେ କୁକର୍ମର ଫଳ ।

ନ୍ୟାୟ ଅନ୍ୟାୟ ବିଚାର ନକଲେ ଜୀବନେ
ପାଇବ କି ଲୋକ ସୁଖ କେବେ ଏ ଭୁବନେ ।

୦ ୦ ୦

( ରାଗ – ରାମକେରୀ )

ସ୍ୱାର୍ଥର ଜୀବିକା ଚାଲିଛି
ଏବେ ଚଉଦିଗରେ
ନ୍ୟାୟାନୁସରଣ ନିମିତ୍ତ
ନାହିଁ କାହା ଚିତ୍ତରେ ।୧।

କ୍ଷମତା ମୋହରେ କେ ଅନ୍ଧ
କେହି ଅର୍ଥରେ ବଶ
ପରମେଶ ଚିନ୍ତା କରିବା
ନାହିଁ କାହା ମାନସ ।୨।

କୃତଘ୍ନତା ବ୍ୟାପି ଗଲାଣି
କ୍ରମେ କ୍ରମେ ଦେଶରେ
ଉପାୟ ବିହୀନ ହୋଇ କେ
ସଢ଼ୁଅଛି କ୍ଲେଶରେ ।୩।

ଗରୀବର ଦୁଃଖ ଯିବକି
ମୂଲ ଦେଲେ ବଢ଼ାଇ
ଜିନିଷ ଦର ଯା ବଢ଼ୁଛି
ଏଥିଲାଗି କେ ଦାୟୀ ।୪।

ପୂର୍ବର ଏକତା ଅଛିକି
ଏବେ ଗାଆଁ ଭିତରେ
ହଣାହଣି କ୍ରମେ ବଢ଼ୁଛି
ପରସ୍ପର ମଧ୍ୟରେ ।୫।

ପିତାମାତା ଠାରେ ଭକତି
ନାହିଁ ସମାଜେ ଆଜି
ନ୍ୟାୟ କରିବାକୁ ଡାକିଲେ
କେହି ନୁହଁନ୍ତି ରାଜି ।୬।

ମାଆର କଷଣ ପିଲାଏ
ଜାଣୁଛନ୍ତି କି ଲବେ
ବୁଝାଇବ ଯାହା ଭରିଯା
କରୁଛନ୍ତି ସରବେ ।୭।

ମଣିଷ ଜନମ ପାଇଲୁ
ଭବେ ଯାହା ଯୋଗରୁ
ଅବିରାମ ଧ୍ୟାନ କରିବା
ନ ପାସୋରି ମନରୁ ।୮।

କେତେ ଅନ୍ଧ ଛୋଟା ବୁଲନ୍ତି
ଦାଣ୍ଡେ ଦେଖୁଛୁ ନିତି
ତା ଦର୍ଶନେ କାହା ମାନସେ
ଉପୁଜଇ କି ଭୀତି ।୯।

ଜନମ ମରଣ ରହସ୍ୟ
ଦେଖି ଦେଖି ସରବେ
ଧରମ ବାଟରେ ଚାଲିବା
ବୋଲି ଭବେ କେ ଲବେ ।୧୦।

ନ୍ୟାୟ ଅନ୍ୟାୟକୁ ତୁଳନା
ନ କରିଲେ ଜୀବନେ
କି ସୁଖ ମିଳିବ କାହିଁରୁ
ଥରେ ଭାବନ୍ତୁ ଜନେ ।୧୧।

ଅସାର କଳ୍ପନା ମାନସ
ଧାଉଁଅଛି ଯେପରି
ଅନ୍ୟ ବିଚାରକୁ ମଣିଷ
ନ ଦେଖୁଛି କିପରି ।୧୨।

ହିଂସା ଜର୍ଜରିତ କେ ହୋଇ
କରୁଅଛି କରମ
ପ୍ରିୟାପ୍ରୀତି କିଏ ଦେଖାଇ
ଛାଡୁଅଛି ଧରମ ।୧୩।

କ୍ଷମତା ନିମିତ୍ତ କିଏବା
ଖୋଜି ନାନା ଉପାୟ
କରି ଯାଉଅଛି ନଭାବି
ଟିକେ ନ୍ୟାୟ ଅନ୍ୟାୟ ।୧୪।

ଲୋକ ଉପକାରେ ଭୂ-ଗର୍ଭେ
ଲୁହା, କୋଇଲା ଚୂନା
ଯୁଗ ଯୁଗ ଧରି ଥିବରେ
କେବେ ନ ହୋଇ ଚୁନା ।୧୫।

ଚଉପାଶେ ଘେରି ଅଛନ୍ତି
ଷଟୁକାର ନିକର
ଆପଣା ସୁବିଧା ପାଆନ୍ତି
ହୁଅନ୍ତୁ ବା ତସ୍କର ।୧୬।

ଜଗଦୀଶ ଦଣ୍ଡ ନଥିଲେ
ସଞ୍ଜ ସଞ୍ଜ ରେଗରେ
ଯାଆନ୍ତାକି ପ୍ରାଣ ଲୋକର
ନିତି ଦେଖୁ ଭବରେ ।୧୭।

କୋଟି କୋଟି ଜୀବ ସୃଜନ
ପୁଣି ବୃକ୍ଷ ଲତାର
କରି ପାରିବ କି ମଣିଷ
କରୁ ବାରେ ବିଚାର ।୧୮।

ତା ମଧ୍ୟେ ଜନମ ପାଇଛି
ଲୋକ ଏହି ସଂସାରେ
କଥା ବା ବିଚାର ଶକତି
ନାହିଁ ଅନ୍ୟ କା'ଠାରେ ।୧୯।

ସେ ଶକ୍ତି ଦୁଇଟି ମଣିଷ
ପାଇ ଥିବାରୁ ଭବେ
ଆପଣାକୁ ବଡ ବୋଲାଇ
ମାତି ଉଠେ ଗରବେ ।୨୦।

ପଢ଼ଣା ଘରର କାହଣା
ନପଡେ ଯା କାନରେ
ପଶୁତୁଲ୍ୟ ସେହି ନୁହଁକି
ସଦା ରସାତଳରେ ।୨୧।

ଜୀବ ମଧ୍ୟେ ଶକ୍ତି ପାଇଛି
ସବୁ ଜାଣିବା ପାଇଁ
ଖଂଜିଲେ ବିଚାର ଶକତି
ପୁଣି ଲୋକଙ୍କୁ ସାଇଁ ।୨୨।

ସେ ଶକ୍ତିକି ଛାଡ଼ ସ୍ୱାର୍ଥରେ
ଲୋକ ଖେଳୁଛି ଖେଳ
ବିଚାର ଅବଶ୍ୟ ହେବରେ
ତା'ର ଆସିଲେ ବେଳ ।୨୩।

କେତେଦିନ ଖେଳ ଖେଳିବା
ରହି ଏହି ମର୍ତ୍ତ୍ୟରେ
କିଏସେ ଏକଥା ଭାବେ କି
କେବେ ଶୁଦ୍ଧ ଚିତ୍ତରେ ।୨୪।

ଅନୀତିରେ ମନ ରହିଲେ
ଦଣ୍ଡ ମିଳେ ଅବଶ୍ୟ
ହେତୁ ରଖିଥାନ୍ତୁ ସରବେ
ଏହା ଭବ ରହସ୍ୟ ।୨୫।

କିରସିନି, ପାଣି, ପେଟ୍ରୋଲ
ଅସରନ୍ତ ଭଣ୍ଡାରେ
ବାର ବାର କରି ହେଜିବୁ
ଏହା କା ଉପକାରେ ।୨୬।

ଲାଗିଅଛି ଯିବା ଆସିବା
ସର୍ବେ ଦେଖନ୍ତି ନିତି
ବୁଝିଲେ ସେକଥା କିଏସେ
ରହନ୍ତା କି ଅନୀତି ।୨୭।

ଆସିଅଛୁ ଖାଲି ହାତରେ
ଫେରୁ ଖାଲି ହାତରେ
ଏ ରହସ୍ୟ କିଏ ଚିନ୍ତେକି
କେବେ ଜୀବନେ ଥରେ ।୨୮।

ଆସିବା ସମୟେ ଆନନ୍ଦ
ଗଲାବେଳେ କ୍ରନ୍ଦନ
ଲାଗିଅଛି ଧାଡ଼ ଏପରି
କରୁ ନିତି ଦର୍ଶନ ।୨୯।

ସୃଷ୍ଟିର ରହସ୍ୟ ବିଚାରି
ଲୋକ କରୁ କରମ
ବୃଥା ସ୍ୱାର୍ଥ ପଛେ ଧାଇଁଲେ
ଛାଡ଼ଯିବ ଧରମ ।୩୦।

ଏ ଭାବନା କାହା ମନରେ
ପଶୁନାହିଁ କିଂଚିତ
ଅବାସ୍ତବ ଚିନ୍ତା ପ୍ରବେଶି
ଘାଂଟେ ମଣିଷ ଚିତ୍ତ ।୩୧।

କିଏ ସୁଖୀ କହୁ ମଣିଷ
ଏହି ମର ସଂସାରେ
ଏବା ଅଛି କାର ମାନସ
ଭଗବତ ଚିନ୍ତାରେ ।୩୨।

ଫୁଅଟିଏ ନାହିଁ ଯାହାର
ଘାଂଟି ହୁଏ ତା ମନ
ଉପାୟ ବିହୀନ ହୋଇ କେ
ଦିନ କରେ ଯାପନ ।୩୩।

ଗାଂଠେ ପିଲା ଥାଇ ଏପଟେ
ନାହିଁ ବଳ ତାହାର
ଭରଣ ପୋଷଣ ଚିନ୍ତାରେ
କରେ କେତେ ବିଚାର ।୩୪।

ମାଇପ ବୋଲରେ କିଏବା
ବାପ ଠାରୁ ଅଲଗା
ହେଉଛି ଦେଖନ୍ତୁ ସମସ୍ତେ
ହୋଉଥିବାରୁ ଅଗା (ବୋକା) ।୩୫।

ଋଗରେ ସଢୁଛି କିଏସେ
ଏଣେ ଅର୍ଥାଭାବରୁ
ହେଉ ନାହିଁ କିରେ ବଂଚିତ
ଉପଯୁକ୍ତ ସେବାରୁ ।୩୬।

ସ୍ୱାର୍ଥେ କବଳିତ ମଣିଷ
ହଟହଟା ସତତ
ତା'ଠାରୁ ବଳିଛି କ୍ଷମତା
ଦେଖୁଅଛି ଜଗତ ।୩୭।

ଧନ ଧନ ବୋଲି ପଲକ
ପଡୁନାହିଁ କାହାର
ମିଳିଲେ କ୍ଷମତା କାହାକୁ
ଆଖି ଉପରେ ତା'ର ।୩୮।

ପ୍ରବୃତ୍ତି ନିବୃତ୍ତି ମନରେ
ରହି ସାରା ଜୀବନ
ଘାଂଟୁଅଛି ଲୋକମାନଙ୍କୁ
ଦେଖୁଅଛି ନୟନ ।୩୯।

ବିଚାର ଶକତି ଯାଇଛି
ଅଛି ସ୍ୱାର୍ଥ କେବଳ
ପରସ୍ପର ମଧ୍ୟେ ନିରତ
ଲାଗିଅଛି କନ୍ଦଳ ।୪୦।

ଉଠାଣି ଗଡ଼ାଣି ବାଟରେ
ପୁଣି ସିଂଧୁମି ନିତି
ଶିଖିଲକି କିଛି ତହିଁରୁ
ଜାଣି ଦୁନିଆଁ ରୀତି ।୪୧।

ଥାଆନ୍ତା ଯଦିବା ସବନା
କେହି ଉପାସେ ଯେବେ
ସନ୍ତାକି କିଏ ଦେଶରେ
ଆଜି ନପାଇ ଭୋକେ ।୪୨।

ପୁଣି ବିପତ୍ନୀକ କେତେକ
କିଏ ପତି ହରଇ
ହୀନିମାନ ହୋଇ ଜୀବନ
କେବେ ଯାଏ ପଳାଇ ।୪୩।

ମୁଂଡ ଗୁଂଡିବାକୁ କାହାର
ନାହିଁ କୁଡ଼ଆ ଖଣ୍ଡେ
ଆସିଲେ ବରଷା କିଏବା
ଚଳି ପାରେ କି ଦଣ୍ଡେ ।୪୪।

ଅଭିଆଡ଼ୀ ଝିଅ ଦେଖନ୍ତୁ
ଗାଆଁ ଗାଆଁକୁ ଯାଇ
ବିଧାୟକ ଭତ୍ତା ନ୍ୟାୟକି
କହୁ ଭୋଟର ଭଇ ।୪୫।

ଶତ ଶତ ଟଙ୍କା ମାସକୁ
ଆମ ମନ୍ତ୍ରୀ ବେତନ
ତେବେ ଗସ୍ତ ଖର୍ଚ୍ଚେ କାହିଁକି
ଲାଗି ରହିଛି ମନ ।୪୬।

ଗରୀବ ଟିକସ ଦେଉଛି
ବୋଲି ଭାବିଲେ ଥରେ
ଖରଚ ନନେଇ ଫରଚ
ହୋଇ ଫେରନ୍ତା ଘରେ ।୪୭।

ଆପଣା ଲାଭକୁ ଧାଉଁଛି
କଳିଯୁଗେ ମଣିଷ
ନଶିଖି ପ୍ରଭେଦ କେଉଁଟି
ଭବେ ଅମୃତ ବିଷ ।୪୮।

ଅହମିକା ହୃଦେ ପ୍ରବେଶି
ଘାଣ୍ଟେ ଅନବରତ
ବିପ୍ଳବ ଶକତି ଥିଲେହେଁ
ଡଗୁ ନାହିଁ ମହତ ।୪୯।

କରୁଥାନ୍ତା ଯଦି କରମ
ଭଲ ମନ୍ଦ ବିଚାରି
ଦୁଃଖ ବା କଷଣ ସଂସାରେ
ନ ରହନ୍ତା କାହାରି ।୫୦।

ଗାନ୍ଧିଜୀଙ୍କ କଥା ପଢ଼ିଲେ
କିଏ ଟେକୁଛି ନାକ
ମାତ୍ର ତାଙ୍କ ଲେଖା ଅମୃତ
ପଢ଼ ଜୀବନ ଯାକ ।୫୧।

କରିଥାନ୍ତା ଯଦି ଭାରତ
ତାଙ୍କ କଥା ପ୍ରକାରେ
ଶୁଣୁଥାନ୍ତା କେତେ ପ୍ରଶଂସା
ଆଜି ଦେଶ ବାହାରେ ।୫୨।

ଦୀନ ପରି କଷାଘାତରେ
ସଢ଼ୁ ନଥାନ୍ତା କିଏ
ନିଶ୍ଚିନ୍ତରେ ସୁଖେ ଦେଶରେ
ଚଳୁଥାନ୍ତେ ସଭିଏଁ ।୫୩।

ଖାଇ ଖାଇ ମାଡ଼ ଭେଟିଲେ
ବହୁବର୍ଷ ଜେଲରେ
ହେତୁ ପକାଇଲେ ସେ କଥା
ଆଜି ଲୋତକ ଝରେ ।୫୪।

ଅହିଂସା ସତ୍ୟ ଏ ଦୁଇଟି
ମନ୍ତ୍ର ପକାଇ ଗଣ୍ଠି
ଲଗି ଲଗି ଚୋର ଜାତିର
ଗାନ୍ଧୀ ଧଇଲେ ତଣ୍ଟି ।୫୫।

ଅପସରି ଗଲେ ଦେଶରୁ
ମାନି ଅହିଂସା ମନ୍ତ୍ର
କାହିଁକିରେ ଏବେ ଲାଗିଛି
ଅନବରତ ତନ୍ତ୍ର ।୫୬।

ପୃଥିବୀର ଶ୍ରେଷ୍ଠ ମାନବ
ଲୋକ ମତାନୁଯାୟୀ
ନଭାଣି ଶାସନ ଅଚଳ
କରୁଅଛ କିପାଇଁ ।୫୭।

ଯାହାହେତୁ ଦେଶ ଆସିଲା
ତାଙ୍କ କଥା ନମାନି
ଇଚ୍ଛା ମତେ କରି ଶାସନ
କେତେ କରୁଛ ହାନି ।୫୮।

ସୃଷ୍ଟିକର୍ତ୍ତାଙ୍କର ବିଚାର
କିଏ ଜାଣୁଛି ଲବେ
ଘଟୁଛି ସଂସାରେ ଯାହାକି
ମାଡ଼ ଆସୁଛି ଭବେ ।୫୯।

ଅତୀତ ଘଟଣାବଳୀରୁ
ନ ଶିଖିଲେ ମଣିଷ
ପ୍ରବେଶିଲେ କର୍ମ କ୍ଷେତ୍ରରେ
ହଟହଟା ଅନିଶ ।୬୦।

ଜାଲରେ ପଡ଼ଲେ ବିସାରି (ମାଛ)
ଛଟପଟ ଯେସନ
ସ୍ୱାର୍ଥଜାଲେ କେହି ପଡ଼ଲେ
ସଦା ହୁଏ ତେସନ ।୬୧।

ଅସାଧୁ ଉପାୟେ ଅରଜି
କିଏ କଲାଣି କୋଠା
କିଏ ଯାଉଅଛି ଦିନଟି
ଉପବାସରେ ଠୋଠା ।୬୨।

ଗରୀବ ବାପୁଡ଼ା ସହୁଛି
ଯେତେ କଷଣ ଭବେ
ତା ଦୁଃଖ ହରଣ ନିମିତ୍ତ
ଚିନ୍ତା କରେ କେ ଲବେ ।୬୩।

ଅଭିଆଡ଼ୀ କନ୍ୟା ଯେତେକ
ରହିଲେଣି ଗାଆଁରେ
ସେଥିପ୍ରତି ଦୃଷ୍ଟି କାହାର
କେବେ ପଡ଼େକି ବାରେ ।୬୪।

କେ ଶୀତ କାଳରେ ସଢୁଛି
କିଏ ଖରା ବରଷା
କାନିରେ ଯେ ଲୁହ ପୋଛଇ
ତା'ର ନାହିଁ ଭରସା ।୬୫।

ବିଜୁଳି ପଂଖାକୁ ପାଇଲେ
ମନ ଉପରେ ତା'ର
କ୍ଷମତା ଆଶାରେ ଲୋକର
ନାହିଁ ଆନ ବିଚାର ।୬୬।

ଦୟାବାନ ନ୍ୟାୟ ସଦ୍‌ଗୁଣ–
ଚୟ ପାଇଛି ଲୋପ
ଏ ଯୁଗ ଅନୀତି ଦର୍ଶନେ
ତହୁଁ ଉପୁଜେ କୋପ ।୬୭।

ଭୂଇଁ ତଳେ ଯେତେ ସମ୍ପଦ
ରହିଅଛି ଗୋପନେ
ଯୁଗ ଯୁଗ ବିତି ଗଲାଣି
ଜାଣି ନାହାନ୍ତି ଜନେ ।୬୮।

ଅନୁଗ୍ରହ ବିନା ବିଧିର
ନାହିଁ ଲୋକର ଗତି
ସମ୍ପଦେ ପାସୋରି ବିପଦେ
ଡାକେ କର ମୁକତି ।୬୯।

ଗାନ୍ଧିଜୀ ବଚନ ନମାନି
ଦେଶବାସୀ କୃତଘ୍ନ
ଅନୀତି ଏଡ଼ିବା ନିମିତ୍ତ
ନାହିଁ କାହାର ଯତ୍ନ ।୭୦।

କୋଟି କୋଟି ଋଣ ଦେଶକୁ
ଦିନେ ଦେବ ବୁଡ଼ାଇ
ଲେଢ଼ ଗୁଡ଼ ଗଲେ କହୁଣି
ଶେଷେ କିହେବ ଧାଇ ।୭୧।

ସ୍ୱାଧୀନତା ଲୋପ ପାଇବା
ହେବା ପରନୁଗତ
ନିଦ୍ରା ସାଗରରେ ବୁଡ଼ିବା
ଥିବ ଆମ ମହତ ।୭୨।

ଜେଲ୍ ଭେଟି ଭେଟି ଜୀବନ
ସାର ଯାଇଛି ଯାର
ତାଙ୍କ ଉପଦେଶ ନମାନି
ଦେଶ କି ଛାରଖାର ।୭୩।
ବଡ ବୋଲି ନିଜେ ନଭାବି
ସତ୍ୟ ଅହିଂସା ବଳେ
ଆଣିଲେ ଦେଶକୁ ଛଡାଇ
ଗୋରା ହାତୁ କୌଶଳେ ।୭୪।
ଗାଆଁ ଗାଆଁ ବୁଲି ଅରଟ
ଧରି ନିଜ ହାତରେ
ସୂତା କାଟିବାର ଶିଖାଇ
ଥିଲେ ଏହି ଦେଶରେ ।୭୫।
ନିଜ ହାତ କଟା ଖଦଡ
ଅଣ୍ଟା ପିଠିରେ ଦେଇ
ଯାଉଥିଲେ ଚଲି ପାଦରେ
କେବେ ଗାଡ଼ି ନ ନେଇ ।୭୬।
ନଥିଲା ସଡକ ଗାଆଁକୁ
ଯାଉଥିଲେ ହିଡରେ
ଏବେ ଯିବାପାଇଁ କାହିଁକି
ମନ ସଦା କାରରେ ।୭୭।

( ରାଗ–ବଙ୍ଗଳାଶ୍ରୀ )

କିଏସେ ଜାଣୁଛି କେଉଁ ମୁହୂର୍ତ୍ତରେ
ଯିବ ଏ ପରାଣ ଛାଡ଼ି
ପଶିଲେ ଅବାଟେ ଗଡାଇବ ଲୁହ
ବାର୍ଦ୍ଧକ୍ୟ ଆସିଲେ ମାଡ଼ି ।୧।
ଧରି ଧରି ସବୁ କରୁଥିଲେ କର୍ମ
ବିବେକ ନିର୍ଦ୍ଦେଶ ମାନି
ମଣିଷ ଜୀବନ ସାର୍ଥକ ହେବରେ
ଦେଶର ନକଲେ ହାନି ।୨।
କ୍ଷଣିକ ସୁଖରେ ସ୍ୱାର୍ଥ ପଛେ ଧାଇଁ
କେ ପାଉଛି ସୁଖ ଭବେ
ଉତ୍‌ଥାନ ପତନ ସୃଷ୍ଟିର ରହସ୍ୟ
ଘଟୁଛି କିଏ କି ଲଭେ ।୩।
ଯେତିକି ପାହୁଣ୍ଡ ଯାଉଛି ଆଗକୁ
ସେତିକି ମରଣ ଦ୍ୱାର
ପାଖେଇ ଆସୁଛି ବୋଲି ନ ଭାବିଲେ
ସେ କି ମଣିଷର ଗାର ।୪।
ଅଗଣିତ ଜୀବ ଜଳେ ଅବା ସ୍ଥଳେ
ଦେଖନ୍ତ ନିତି ସରବେ
ମଣିଷକୁ ଛାଡ଼ି କଥା ବା ବିଚାର
ଶକ୍ତି ପାଇଛି କେ ଲଭେ ? ।୫।
ଏ ଦୁର୍ଲ୍ଲଭ ଶକ୍ତି ପୂର୍ବ ସୁକୃତରୁ
ଦେଇଛନ୍ତି ଭଗବାନ
ଏଣୁରେ ମଣିଷ କର୍ତ୍ତବ୍ୟ କର୍ମରେ
ହେବୁ ସଦା ସାବଧାନ ।୬।
ବିବେକ ପ୍ରହରୀ ଜଗିଅଛି ମୋତେ
ଅବିରାମ ତୋ ଅନ୍ତରେ
ଏତିକି ନ ଶିଖି ହେଉଅଛୁ ଘାଣ୍ଟି
ଗୋଡ଼ାଇ ସ୍ୱାର୍ଥ ପଛରେ ।୭।
ତୁଚ୍ଛ ଧନ ଲାଗି ହେଉ ବିଚଳିତ
ନେବୁକି କିଛି ସଙ୍ଗରେ
ନିଃସ୍ୱାର୍ଥ ସେବାରେ ମନ ବଳାଇଲେ
ପରମ ଗତି ଶେଷରେ ।୮।
ନିତି ଦେଖୁ ଦାଣ୍ଡେ କେତେ କୁଷ୍ଠ ରୋଗୀ
ଅବିରାମ କ୍ଲେଶ ପାଇ
ପୂର୍ବ ପାପ କର୍ମ ଦେଖାଇ ଦିଅନ୍ତି
କୋଟି ବ୍ରହ୍ମାଣ୍ଡର ସାଇଁ ।୯।
ଆଲୁଅ ଅନ୍ଧାର ଦିବସ ରଜନୀ
ପୁଣି ବର୍ଷା ଶୀତ ଖର
ସଞ୍ଜ ବା ସକାଳ ଯାଉଛି ଆସୁଛି
ଦେଖୁଅଛୁ ନିତି ପର ।୧୦।
ଅସଂଖ୍ୟ ଜୀବର ସୃଷ୍ଟିକର୍ତ୍ତା ଯିଏ
ରଖିଲୁକି ଦିନେ ଲୟ

ସ୍ୱାର୍ଥ ପଛେ ଧାଇଁ     ମିଛ ଗାଇ ଗାଇ
କା'ଠାରେ ନରଖି ଭୟ ।୧୧।

ଶଗଡର ଚକ     ଘୂରିଲା ପରାଏ
ଘୂରୁଛି ଜନ୍ମ ମରଣ
ନ ଫେରାଇ ଆଖି     ସୃଷ୍ଟିର ରୀତିକି
ଢେରୁଛି ଲୋକ କଷଣ ।୧୨।

କ୍ଷମତା ମୋହରେ     ମିଛ କହିବାକୁ
ନ ଡରୁଛି କିଏ ଲବେ
ପାପ ଅବା ପୁଣ୍ୟ     ନ ବାଛି ଜୀବନେ
ଉଠନ୍ତି ମାତି ଗରବେ ।୧୩।

ଅଦୃଶ୍ୟ ଶକତି     ନ୍ୟାୟ ନିକିତିକି
ଧରିଅଛି ନିରନ୍ତର
ନଜାଣି ମଣିଷ     ହେଉଛି ବାଉଳି
ରଖି କପଟ ଅନ୍ତର ।୧୪।

ନୋହୁଥିଲେ ଟିପା     କରିବା କରମ
ବୁଲନ୍ତେ କି ପଂଗୁ ଭବେ
ଅବା ନାନା ରୋଗେ     ନ ସହନ୍ତା କିଏ
ନିଶ୍ଚିନ୍ତ ଥାନ୍ତେ ସରବେ ।୧୫।

ପୁଅ ବା ଭରିଯା     ମରଣ ଦୁଃଖରେ
ନ ସହେ କେଉଁ ମଣିଷ
ଏଣୁରେ ସନ୍ତତ     ସନ୍ମାର୍ଗକୁ ଖୋଜି
ଧ୍ୟାୟିବୁ ଈଶ ଅନିଶ ।୧୬।

କୃତଜ୍ଞତା ଭବୁଁ     ଯାଇଛି ଉଭେଇ
ସ୍ୱାର୍ଥଟି ଆଜି ଜୀବିକା
ତମ ଘଷା ତୁଣ୍ଡୁ     ବାହାରେ ସର୍ବତ୍ର
ଛପି ହୃଦେ ଅହମିକା ।୧୭।

ଦେଖୁଅଛୁ ସଦା     ଅଲୋଡ଼ା ବରଷା
କରୁଅଛି କ୍ଷତି ଖତ
ଲୋଡ଼ା ହେବାବେଳେ     ପାଣି ମଧେ ନାହିଁ
ତେଣୁ ବାଛ ଭଲମନ୍ଦ ।୧୮।

ପଶୁ ଆଚରଣ     ନକରୁ ମଣିଷ
ନପସ୍ତୁ କେବେ ଅବାଟେ
ନ୍ୟାୟ ଅନ୍ୟାୟକୁ     ନ ଜଗିଲେ ସଦା
ବସିବ ପିଠିରେ ଛାଟେ ।୧୯।

ମରଣ ଡୋରିଟି     ଗଳାରେଁ ପିନ୍ଧାଇ
କରୁଅଛି ଯେ ସୃଜନ
ସେ ସୃଷ୍ଟିକର୍ତ୍ତାଙ୍କୁ     ପାଶୋରି ମନରୁ
ନ କର ବୃଥା ଚିନ୍ତନ ।୨୦।

ଦେଇଛନ୍ତି ପାଦ     ଚଲିବା ନିମିତ୍ତ
କାର୍ଯ୍ୟ କରିବାକୁ କର
କଥା କହିବାକୁ     ଦେଇଛନ୍ତି ଜିଭ
ଅବଜ୍ଞା ତାଙ୍କୁ ନକର ।୨୧।

ଦେଖୁଛୁ ଦୁନିଆଁ     ରୀତିରେ ମଣିଷ
ଦେଖୁଛୁ ଦୁନିଆଁ ରୀତି
ତଥାପି ଚେତନା     ନ ପଶେ ମନରେ
ରଖିଲୁ ସ୍ୱାର୍ଥରେ ପ୍ରୀତି ।୨୨।

ଆଜୀବନ କିଏ     ପାଉଅଛି ସୁଖ
ଅନିଶ୍ଚିତ ଜୀବନରେ
କନ୍ଦାଇ ପରକୁ     ହିଂସା ପୋଷି ହୃଦେ
ବୁଡୁଛୁ ନିନ୍ଦା ସାଗରେ ।୨୩।

ଚିତ୍ତେ ହଳାହଳ     ମୁହଁରେ ସରଳ
ଦେଖାଇ ହେଲେହେଁ ଭବେ
ନ ଜାଣିଲେ କେହି     ଜାଣୁଛନ୍ତି ଜଣେ
ଚିନ୍ତଲା କି କିଏ ଲବେ ।୨୪।

ପଶି କୃତଘ୍ନତା     ପୁଣି କପଟତା
ଘାରୁଛି ମଣିଷ ମନ
କି ଯିବ ସଙ୍ଗରେ     ଅନ୍ତିମ କାଳରେ
କଲକି କିଏ ଭବନ ।୨୫।

ଅଭେଇ ଦିନକୁ     ଯଉବନ ଶିରୀ
ପଛେ ପଛେ ତାର ଜରା
ଗ୍ରାସି ଅବୟବ     କରୁଛି ଶ୍ରୀହୀନ
ବାଧୁଛି ଶିଶିର ଖରା ।୨୬।

ଶ୍ରବଣ ଦର୍ଶନ     ବିଲୋପ ସାଧନେ
ମଣିଷ ହୁଏ ଅଚଳ

ଛାଡ଼ ନାହିଁ ଲୋଭ    ରହିଅଛି ମଣ୍ଡି
ପ୍ରାଣ ସିନା ଟଳମଳ ।୨୭।
କି ଯିବ ସଙ୍ଗରେ    କରୁଥିଲେ ଚିନ୍ତା
ଯାଇଥାନ୍ତା ଛାଡ଼ ଲୋଭ
ସଭନ୍ତା କି କିଏ    କ୍ଷମତା ଆଶାରେ
ନ ଆସନ୍ତା ମନେ କ୍ଷୋଭ ।୨୮।

ଗାଆଁ ଗାଆଁ କଳି    ଆପଣା ଭିତରେ
ଟଣାଟଣି ଶାସନରେ
କ୍ଷମତା ନିମିନ୍ତ    ଲଗାଇ କନ୍ଦଳ
ଲୁଚିଲ ସ୍ୱାର୍ଥ ପଛରେ ।୨୯।

ଯେ ଦେଶେ ଜନମ    ଗାନ୍ଧିଜୀ ଶଙ୍କର
ବିବେକାନନ୍ଦ ପ୍ରବର
ସେ ଦେଶରେ ଆଜି    ଅନୀତି ଅନ୍ୟାୟ
ବଢୁଅଛି ନିରନ୍ତର ।୩୦।

ନାନା କଥା କହି    ଲୋକଙ୍କୁ ଭୁଲାଇ
ବସିଲେ ଶାସନେ ଦଳେ
ଦିଅନ୍ତ ପାସୋରି    କହୁଥାନ୍ତ ଯାହା
ପଡ଼ ସ୍ୱାର୍ଥର କବଳେ ।୩୧।

ଯେ ଦେଶେ ଜନମ    ଶିବି ହରିଶ୍ଚନ୍ଦ୍ର
ଅକ୍ଷୟ କୀରତି ରଖି
ଯାଇଛନ୍ତି ଚାଲି    ଭବଧାମ ଛାଡ଼
ପୁରାଣ ତାହାର ସାକ୍ଷୀ ।୩୨।

କେତେ କାରଦଣ୍ଡ    ଭୋଗି ଗାନ୍ଧୀ ବୁଢ଼ା
କେତେ ଲାଠିମାଡ଼ ଖାଇ
ବିନା ରକ୍ତପାତେ    ବିନା ଅସ୍ତ୍ର ଘାତେ
ଗୋରାଙ୍କୁ ଦେଲେ ହଟାଇ ।୩୩।

ତାଙ୍କ ସତ୍ୟ କଥା    ଅହିଂସାର ମନ୍ତ୍ର
ଅବା ତାଙ୍କ ଉପଦେଶ
ପାଳିଛି କି କିଏ    କହୁ ତ ଜନତା
କାହିଁକି ଋଣୀ ଏ ଦେଶ ।୩୪।

ନ୍ୟାୟ ଅନ୍ୟାୟକୁ    ଆପେ ନ ବୁଝିଲେ
ରହିଛି ଭବିଷ୍ୟ ଦଣ୍ଡ
ବିପ୍ଳବ ଶକତି    ଛାଡ଼ଲେ ମଣିଷ
ବୋଲନ୍ତ ତାକୁ ପାଷଣ୍ଡ ।୩୫।

ହେଉଛି ବରଷା    ଫଗୁଣ ମାସରୁ
କାର୍ତ୍ତିକ ହେଲାଣି ଶେଷ
ଅକଳନ କ୍ଷତି    ହେଲେହେଁ ଚଷାର
କରୁଛି କେ ଚିନ୍ତା ଲେଶ ।୩୬।

ଖରା ବରଷାରେ    ଶୀତ କାକରରେ
କମଣି କରି ବିଲକୁ
ପାଉଛି ଯାହାକି    କୁଟୁମ୍ବ ବଞ୍ଚାଇ
ବଳନ୍ତା ଦିଏ ଲୋକଙ୍କୁ ।୩୭।

ପାଏକି ପାଉଣା    ଶ୍ରମ ଅନୁସାରେ
କହେକି କାହାକୁ ଦିନେ
ଜୀବନେ କଷଣ    ଯାହା ସେ ଭୋଗଇ
ତାପାଇଁ ଭବେ କେ ମନେ ।୩୮।

ନାନା ଖଦ କଥା    ଶିଖିଛି ପିଲାରୁ
ଶିଖାଇବ କିଏ ତାକୁ
ଦୁଚ୍ଛାକୁ ବାଇଦ    ବଜାନ୍ତ ହାକିମେ
ସାରି ଅପଥା ଟଙ୍କାକୁ ।୩୯।

ବଣ ଜଙ୍ଗଲରେ    ଯେଉଁ ଦେଶ ଭରା
ସେ ହୋଇଛି ଆଜି ଋଣୀ
ଉଣିଶି ହଜାର    କୋଟି କଳନ୍ତର
ହିସାବ କଲେକି ଗୁଣୀ ।୪୦।

ଦୁଇ ଲକ୍ଷ କୋଟି    ଚତ୍ୱାରିଂଶ ସସ୍ର
ହେଲାଣି ଦେଶର ଋଣ
ସେ କଥା କାହାର    ପଶୁନାହିଁ ମୁଣ୍ଡେ
'ଝୁଣରେ ଚଷାକୁ ଝୁଣ' ।୪୧।

ଦି'ପଦ ଗାରେଉ    ଫେରିଲେ ଘରକୁ
ଚଳିବ ନାହିଁ ଶାସନ
ଫାଇଲ୍ ଗୁଡ଼ିକ    ରହିଥିବ ପଡ଼
କରୁ କେହି ଅନୁଧ୍ୟାନ ।୪୨।

ଗଲାବେଳେ ଗୋରା    ଦେଶ ଋଣ ଥିଲା
ସାଢ଼େ ଦୁଇ ସସ୍ର କୋଟି

କଳନ୍ତର ଅର୍ଥ ନଦେଇ ପାରିଲେ
ଦେଖାଇବା କିରେ ତୋଟି ।୪୩।

ଜାପାନ, ରୁଷିଆ ଇଟାଲୀ, ଅଷ୍ଟ୍ରିଆ
ପଶି ଯୁଦ୍ଧେ ହେଲେ ଧ୍ୱଂସ
ନିଜ ଦେଶ ଗଢ଼ ଏ ଦେଶକୁ ଦେଲେ
ଗୁଣ ଦେଖାଇ ସାହସ ।୪୪।

ଯୁଦ୍ଧରେ ଭରତ ପ୍ରବେଶ ନକରି
କରିଛି ବର୍ଣ୍ଣିତ ଗୁଣ
ପୃଥିବୀ ସମ୍ମୁଖେ ହେଲା ଲୋକହସା
ଧିକ ଧିକ ଆମ ଗୁଣ ।୪୫।

ନୁହଁକି ଅଯୋଗ୍ୟ ଏ ଦେଶ ଶାସକେ
ପୁଣି ଅଳ୍ପଜ୍ଞ ଅତି
ଲୋକଙ୍କ ଆଗରେ କି ବୋଲି କହିବେ
କିହେବ ବା ପରିଣତି ? ।୪୬।

ବିଚାର ଶକତି ଦେଇଛନ୍ତି ଈଶ
ବିଚାର କରୁଛି କିଏ ?
ଯେଉଁଆଡେ ମନ ଟାଣୁଅଛି ତେଣେ
ଯାଆନ୍ତି ଲୋକ ସଭିଏଁ ।୪୭।

ସେଥିଲାଗି ଆଜି ପଥଭ୍ରଷ୍ଟ ହୋଇ
ମାନବ କୁକର୍ମେ ରତ
ସ୍ୱାର୍ଥ ଚିନ୍ତା ଛଡ଼ା ଅନ୍ୟ ଚିନ୍ତା ନାହିଁ
ଦେଖୁଛୁ ପୁଣି ସତତ ।୪୮।

ଅହମିକା ଦୋଷ ପଛେ ପଛେ ରହି
ମନକୁ କରେ ବିକୃତ
ତେଣୁ ନ୍ୟାୟାନ୍ୟାୟ ଅବିଚାରେ କାର୍ଯ୍ୟ
ଚାଲିଛି ଅନବରତ ।୪୯।

ଯୁଧିଷ୍ଠିର ଭଳି ସତ୍ୟ ଲୋଭେ ପଡ଼ି
କପଟ ପଶାରେ ହାରି
ଘର ଦ୍ୱାର ଛାଡ଼ କଲେ ବନବାସ
ମନକୁ କେତେ ଧିକ୍କାରି ।୫୦।

ବିଚାର ଶକତି ଛାଡ଼ିଲେ ମଣିଷ
ସହନ୍ତି କ୍ଳେଶ ଏପରି
ଚିନ୍ତା କରି ସଦା କଲେ କାର୍ଯ୍ୟମାନ
କରନ୍ତି ସାହାଯ୍ୟ ହରି ।୫୧।

ସେଥିଲାଗି ଆଜି ପଥଭ୍ରଷ୍ଟ ହୋଇ
କୁକର୍ମେ ମଣିଷ ରତ
ସ୍ୱାର୍ଥ ଚିନ୍ତା ଛଡ଼ା ନାହିଁ ଅନ୍ୟ ଚିନ୍ତା
ଦେଖୁ ଭବେ ଅବିରତ ।୫୨।

ଅହମିକା ଦୋଷ ହୃଦୟରେ ଥାଇ
ମଣିଷ ହେଲା ବିକୃତ
ତେଣୁ ନ୍ୟାୟ ନିଷ୍ଠା ପଛରେ ରହୁଛି
ନୟନେ ପଡେ ନିରତ ।୫୩।

ନିବୃତ୍ତି ମାର୍ଗକୁ ଆସି ଯେ ମଣିଷ
ସୁଖରେ କଟେ ଜୀବନ
କାହା ଦୁଃଖେ କିଏ ହେଉଅଛି ଭାଗୀ
ଜାଣୁଛି ସିନା ସଜ୍ଜନ ।୫୪।

ଲୋଭକୁ ବରଜି କରୁଥିଲେ କର୍ମ
ଶୁଣିବୁ ସଦା ପ୍ରଶଂସା
ଅବାଟରେ ପଶି କରିଲେ ଅନ୍ୟାୟ
ହେବୁ ସିନା ଲୋକହସା ।୫୫।

ଖାଲି ହାତେ ଆସି ଖାଲି ହାତେ ଯିବା
ଏହି ଚିରନ୍ତନ ନୀତି
ନ ଶିଖି ମଣିଷ ଭୁଲୁଛି ତୃଷ୍ଣାକୁ
ପଶି ଅବାଟରେ ନିତି ।୫୬।

ଭବ ଭୂଇଁ ଛାଡ଼ ଗଲାବେଳେ କେହି
ରହିଥିବ ହାତ ଶୂନ୍ୟ
ନ୍ୟାୟ ନିକିତିରେ ତଉଲିଲା ବେଳେ
ସଙ୍ଗେ ଥିବ ପାପ ପୁଣ୍ୟ ।୫୭।

ସର୍ବ ଶକ୍ତିମାନ ପରମେଶ୍ୱରଙ୍କୁ
ଠକି ପାରିବ କେ ଭବେ
ଟିକିନିଖି ବୁଝି ଦେଉଛନ୍ତି ଦଣ୍ଡ
ଭୁଲାଇ ଦେବକି ଲବେ ? ।୫୮।

କ୍ଷମତା ଲାଳସା ଗ୍ରାସିଛି ଯାହାକୁ
ଲଣ୍ଡଭଣ୍ଡ କଥା କହି

ଭୋଟ ନେବା ଲାଗି    ଭୁଲନ୍ତି ଯାହାକୁ
ନିନ୍ଦା ଅପମାନ ସହି ।୫୯।
ପେଟକୁ ନିଅଣ୍ଟ    ହେବାରୁ ଅର୍ଜନ
ଝିଅ ପାଇଁ ବର କରି ନପାରି
ମୁଣ୍ଡ ପୋଡି ପୋଡି    ଯାଉଅଛି ବାପା
ଶୁଣୁଛି କିଏସେ ତା'ର ଗୁହାରି ।୬୦।
ସଂଖ୍ୟାଧିକ ବୋଲି    କହନ୍ତି ଯାହାକୁ
ଖାଉଛିକି ପେଟ ପୂରାଇ ଅନ୍ନ
ଗାନ୍ଧିଜୀ ବଚନ    ନମାନି ଶାସକେ
ଆପଣାର ଲୋଭ ରଖିଲେ ମନ ।୬୧।
ଅଭିଆଡୀ ଝିଅ    ରହିଲେଣି କେତେ
ଗାଆଁ ଗାଆଁ ଗଲେ ପାରିବ ଜାଣି
ଦୁଃଖକୁ ଗରବ    କରନ୍ତି କେତେକ
ସଭ ମଣ୍ଡପରେ ମିଛ ବଖାଣି ।୬୨।
କାହାକୁରେ ଲୋଡା    ସେତୁ ଶୁଭଦିଆ
ଅଭିଆଡୀ ଝିଅ ମାଆର ଦୁଃଖ
ବୁଝୁଛିକି କେହି    ଏଣେ ତେଣେ ଯାଇ
ଚଉକିରେ ବସି ଲଭେ ଯେ ସୁଖ ।୬୩।
ଅନୁଭବୀ ବିନା    ଜାଣି ପାରିବ କେ
ଅଭିଆଡୀ ଝିଅ ମନ ବେଦନା
ପ୍ରସବ ବେଦନା    କେମନ୍ତ କଠିନ
କହି ପାରିବକି ବନ୍ଧ୍ୟା ଲଳନା ।୬୪।
ଆମ ରାଜକୋଷ    କରିଦେଲେ ଖାଲି
ନାନା ମେଳା କରି ରାଜ୍ୟ ଭିତରେ
କୋଟି କୋଟି ଟଙ୍କା    ଇଚ୍ଛାମତେ ଖର୍ଚ୍ଚ
କରି ଭସାଇଲେ ଦୁଃଖ ଜଳରେ ।୬୫।
ଯେତିକି ମଣିଷ    କରୁଛି ଅନ୍ୟାୟ
ସେତିକି ପିଠିରେ ବହୁଛି ମାଡ
ଆଲୁଅ ନଧରି    ଅନ୍ଧାରରେ ଗଲେ
ଦିଶିବ କି କେବେ ଆଗର ଗାଡ ।୬୬।
ଅସରେ ଅସରେ    ବରଷି ଫାଲ୍‌ଗୁନେ
କରିଥିବା ଖାଦ ହେଲା ପୋତିଆ
ଦଇବ ବିଚାର    ନବୁଝି କିଂଚିତ
ଅନ୍ୟାୟ ପ୍ରବେଶେ ସବୁ ଭଟିଆ ।୬୭।
ଆପଣା ପିଠିକି    କେ ଦେଖି ପାରୁଛି
କରୁଥାଉ ଲୋକ କେତେ ଯତନ
ଏଣୁରେ ମଣିଷ    ବିଧିର ବିଧାନ
ଜାଣିବାକୁ ସଦା କରୁ ଯତନ ।୬୮।

⊙ ⊙ ⊙

ଉପକାର ପାଇ ଲୋକ କରେ ଅପକାର
ଚାଲିଅଛି ଏହିପରି ଦୁନିଆଁ ବେଭାର ।୧।

ରେ ମଣିଷ, ବୁଝୁନାହୁଁ ତୋ କରିବା କର୍ମ
ସବୁବେଳେ ଜାଣୁଛନ୍ତି ହୃଦେ ରହି ଈଶ୍ୱର ।୨।

ମାସେ ତଳେ ହୋଇଅଛି ଯେତେ ନଷ୍ଟ ଖାଦ
ନ ଭାବୁଛ ତିଳେ ମନେ ଭଲ ଅବା ମନ୍ଦ ।୩।

କାହାର ତୁ ହାନି କଲେ ଭାବିବୁ ଶେଷରେ
ଅବଶ୍ୟ ଟଳୁଛି ଭବ ସଦା ବିଶ୍ୱାସରେ ।୪।

ସୁନାରୀକି ଦେଇଅଛ ସୁନା ବହୁବାର
ଫେରଉଛି ମୂଲ କେଇ ଯାଇ ଅଳଙ୍କାର ।୫।

ଦେଇନାହିଁ ବୋଲି କେବେ ଶୁଣକି କାଠାରୁ
ନଶିଖି ଟାଉଛ ନିନ୍ଦା କେବଳ ଆଶାରୁ ।୬।

କେହି ନୁହଁ ଦାୟୀ ତୁମ ଅପକର୍ମ ପାଇଁ
ଜାଣୁଛନ୍ତି ସବୁକଥା ବ୍ରହ୍ମାଣ୍ଡର ସାଇଁ ।୭।

ଉଭେଇ ଯାଉଛି କ୍ରମେ ବିଚାର ଶକତି
ଭାବୁନାହିଁ କିପରି କେ ପାଇବ ମୁକତି ।୮।

ଚରିତାର୍ଥ କରିବାକୁ ଆପଣା ନୟନ
ଧାଉଁଅଛି ଖର୍ଚ୍ଚ କରି ଲୋକ ତୀର୍ଥାଟନ ।୯।

ପାପ ପୁଣ୍ୟର ପ୍ରଭେଦ ନଜାଣି ମଣିଷ
ନାନା ରୋଗ ଭୋଗୁଅଛି ଜୀବନେ ଅନିଶ ।୧୦।

ସ୍ୱାର୍ଥ ଚିନ୍ତା ଛଡା କିଛି ନ ରଖୁଛି ମନେ
ତେଣୁ ସେ ଭୋଗୁଛି କଷ୍ଟ ନିରତ ଜୀବନେ ।୧୧।

ପାଖେ ଥାଇ ପବନକୁ ନଦେଖୁ ଯେପରି
ପାପ ନେତ୍ରେ ଦେଖିବ କେ ଶ୍ରୀହରି ସେପରି ।୧୨।

ନାହିଁରେ ବିଶ୍ୱାସ ଆଉ ନାହିଁରେ ବଚନ
ଅତୀତର ପରମ୍ପର ନ ଦେଖେ ଲୋଚନ ।୧୩।

କୋଟି କୋଟି ଖାଦ କ୍ଷତି ଏବର ଘଟଣା
କିଏସେ ବା ଫେରଉଛି ନେଲେ ମୁଗ ଚଣା ।୧୪।

ବୁଲାଇ କହିବ ଯେତେ କ୍ଷତି ହେବ କାର
ରତିରେ ଶୋଇବା ବେଳେ କରିବୁ ବିଚାର ।୧୫।

ଧିକ୍‌ରେ ମଣିଷ ତୋର ଚତୁର ପଣିଆ
ଦେଖି ଅପକର୍ମେ କିଏ ନହେବ ଛାନିଆଁ ।୧୬।

ବିଶ୍ୱାସଘାତକ କେବେ ବିଶ୍ୱାସ ଭାଜନ
ହେବକିରେ ତୋଷିବାକୁ ମଣିଷର ମନ ।୧୭।

ହୃଦୟେ କପଟ ଭରା ତୁଣ୍ଡେ ଚାଟୁ ଭାଷା
ଭାବିଥାଏ ନିବାରଣେ ସ୍ୱାର୍ଥର ପିପାସା ।୧୮।

ଜୀବନେ ଯେ କରୁଅଛି ଆଶା ଉପାସନା
ସେ କାହୁଁ କରିବ କେବେ ଈଶ୍ୱର ଭାବନା ।୧୯।

ପାଇଅଛି ଲୋପ ତାର ବିଚାର ଶକତି
ନୋହିଲେ କି ରହିଥାନ୍ତା ଦୁଷ୍କର୍ମରେ ମତି ।୨୦।

ପାପ ଛଡା ପୁଣ୍ୟ କେବେ ଛୁଇଁନାହିଁ ମନ
ଅନୀତି ଆଶ୍ରୟେ ତା'ର ଯାଇଛି ଜୀବନ ।୨୧।

ମୁହୁରରେ ପଡ଼ ମୀନ ଛଟପଟ ଯଥା
ବିଶ୍ୱାସଘାତକ ଅଣା ତାଶେ ପଡ଼ ତଥା ।୨୨।

ବିଶ୍ୱାସ ଜନ୍ମାଇ କେବେ ଦେଉଅଛି ବିଷ
ତା ସ୍ୱଭାବ ଲୋକ ନେତ୍ରେ ପଡୁଛି ଅନିଶ ।୨୩।

କୃତଘ୍ନତା ଘରେ ଘରେ ଯାଇଅଛି ବ୍ୟାପି
ତା'ର ପରିଣାମ ଲୋକ ନଶିଖେ ତଥାପି ।୨୪।

ସଂସାରର ଖେଳ ସାରି ଦିନେ ଯିବ ଚାଲି
ଦେଖୁଥିବେ ଲୋକମାନେ ହାତ ଥିବ ଖାଲି ।୨୫।

ଜନନୀ ଗରଭୁ ଖସି ପଡନ୍ତେ ମାଟିରେ
ଯାହାଁନ୍ତି ସରବେ କିଛି ନଥାଏ ହାତରେ ।୨୬।

ହୁଅନ୍ତି ଉଦୟ ଅସ୍ତ ଗ୍ରହ ଉପଗ୍ରହ
ନିର୍ବୋଧ ମଣିଷ ଏହା ଦେଖେ ଅହରହ ।୨୭।

ଦିନରେ ଆଲୁଅ ସିନା ରତିରେ ଅନ୍ଧାର
କିଏସେ ବୁଝୁଛି ଭବେ ବିଧାତା ବିଚାର ।୨୮।

ଆସୁଛି ଯାଉଛି ପୁଣି ଖରା ବର୍ଷା ଶୀତ
ପକ୍ଷେ ବଢେ ପକ୍ଷେ ଛିଡେ ବିହାୟସେ ଚଂଦ୍ର ।୨୯।

ଯୌବନର ପରେ ପରେ ଆସୁଅଛି ଜରା
କାହିଁ କିଛି ବ୍ୟତିକ୍ରମ ନିତି ଦେଖୁ ପର ।୩୦।

ଉଆଁସ ପୂର୍ଣ୍ଣମୀ ରାତି ଅନ୍ଧାର ଉଜ୍ଜ୍ୱଳ
ବିଧାତା ନିୟମ ସଦା ସବୁ ସୁଶୃଙ୍ଖଳ ।୩୧।

ରାଜନୀତି କରି କେବେ ନଅର୍ଜ କଳହ
ଭଗବତ ଚିନ୍ତା କର ମନେ ଅହରହ ।୩୨।

ଅନ୍ୟାୟକୁ କେତେବେଳେ ନଦିଅ ପ୍ରଶ୍ରୟ
ଦେଖୁଛନ୍ତି କର ଯାହା ପ୍ରଭୁ ଦୟାମୟ ।୩୩।

ଆପଣା ହୃଦୟେ ପ୍ରଭୁ ରହିଛନ୍ତି ଜାଣ
ରହିଛିକି କେବେ ଭବେ କାହାର ବା ତ୍ରାଣ ? ।୩୪।

କାଲି କଥା ଆଜି ନାହିଁ ଦେଖି ନିରନ୍ତର
ପୋଷୁଛୁ କିପରି ସ୍ୱାର୍ଥ ମନରେ ତୁମର ।୩୫।

ଶରତର ପଛେ ପଛେ ଆସଇ ହେମନ୍ତ
ରାଜନୀତି ବଦଳିବା ଦେଖୁଛ ତେମନ୍ତ ।୩୬।

ଆପଣା ଜାତିକି ଧରି ଚଳିବ ଶାସନ
ଜାଣିଲେ କି ଓଡ଼ଶାର ଅନ୍ୟ ମନ୍ତ୍ରୀଗଣ ।୩୭।

ତ୍ରିଂଶ ଆଉ ଏକ ଲୋଡା ବୁଝିବାକୁ କ'ଣ
ତନ୍ମଧ୍ୟରୁ ଅନ୍ୟ ଜାତି ଅଠରଟି ଜଣ ।୩୮।

ଚଳିଛି ଏପରି ଦେଶେ ଶାସନ ଅନ୍ୟାୟ
ଚରିଆଡେ ଏବେ ଶୁଭେ ଫମ୍ପା ସମବାୟ ।

ଦେଉଛନ୍ତି ଯେତେ ଋଣ ବାବୁମାନେ ବସି
ବାହାର କର ପ୍ରଥମେ ହିସାବକୁ କସି ।୪୦।

ଦେଶଯାଙ୍କ ଭାଲ୍ ଋଣ ନିଶ୍ଚୟ ନିଶ୍ଚୟ
ଏଥିପାଇଁ ଲୋକେ ଅର୍ଦ୍ଧି ହୁଅନ୍ତି ଅଥୟ ।୪୧।

ଋଣ ବହି ଧରି ଦେଖ ଗାଆଁ ଗାଆଁ ଯାଇ
ଅସାଧୁ ତନଖି କଲେ ଦେବରେ ଘୋଡ଼ାଇ ।୪୨।

⊙ ⊙ ⊙

ପାଶେ ଥାଇ ପବନ ଅଦୃଶ୍ୟ ଯଥା
ଦିଶିବେ ନାହିଁ ପ୍ରଭୁ ଲୋକଙ୍କୁ ତଥା ।୧।

ଜାଣନ୍ତି ଅନ୍ତର୍ଯାମୀ ମଣିଷ ମନ
ତାଙ୍କୁ ଠକିବା ଲାଗି କିଏ ଭଜନ ।୨।

ସର୍ବତ୍ର ରହି ସବୁ ଦେଖନ୍ତି ନିତି
ଚଳାଉଛନ୍ତି ଏହି ବିଶାଳ କ୍ଷିତି ।୩।

ପରମ ବନ୍ଧୁ ସେହି ଆପଦ କାଳେ
ଭଜିବା ତେଣୁ ତାଙ୍କୁ ସଞ୍ଜ ସକାଳେ ।୪।

ସେହି ସିନା ଜୀବର ଜୀବନ ତରୀ
ଭଜିଲେ ସେ ତରୀକି ଯିବାରେ ତରି ।୫।

ଅବାଟେ ଗଲେ ବାଟ ଦେବେ ଦେଖାଇ
ହୃଦେ ରଖିଲେ ଯିବ ଦୁଃଖ ପଳାଇ ।୬।

କରମ ଅନୁଯାୟୀ ମିଳୁଛି ଫଳ
ବୁଝନ୍ତି କି ଏକଥା ଲୋକ ସକଳ ।୭।

ଜାଣୁଥିଲେ କିଏସେ ତାଙ୍କର ସ୍ଥିତି
ରହନ୍ତା କି ସଂସାରେ ଏତେ ଅନୀତି ।୮।

ଲୋକର ଭଲ ମନ୍ଦ ନାହିଁ ବିଚାର
ତେଣୁରେ ଶୁଭୁଅଛି ତୁଚ୍ଛା ମୁଁ କାର ।୯।

ଭବିଷ୍ୟ ଦଣ୍ଡ ଅଛି ବୋଲି ନଜାଣି
ଦେଖାଉଅଛି ଲୋକ ଆପଣା ଠାଣି ।୧୦।

ସ୍ୱାର୍ଥରେ ମଜିଅଛି ଯାହାର ମନ
ପଡ଼ବ କି କାନରେ ସାଧୁ ବଚନ ।୧୧।

ଘୋଡ଼ାଇ ଦେଇଅଛି ମନକୁ ଆଶା
ତେଣୁ ନାହିଁ କାହାର କୋମଳ ଭଷା ।୧୨।

ଏ ଦେହ ପଚୁଅଛି ନାନା ରୋଗରେ
କାରଣ ତା'ର କିଏ ଭବେକି ଥରେ ।୧୩।

ଜନ୍ମ ମରଣ ଜରା ଦେଖୁଛ ନିତି
ନଭବ ତେବେ କିମ୍ପା ଦୁନିଆଁ ରୀତି ।୧୪।

ଲୁଚଇ ହିଂସା ଚିତ୍ତେ କରିଲେ କର୍ମ
ଜବାବ ତା'ର ଦେବ କେବଳ ଧର୍ମ ।୧୫।

ପରର ନେଇ କିଏ ହୋଇଛି ବଡ଼
ସ୍ଥିର ଚିତ୍ତରେ ଭବୁଁ ହେଲେହେଁ ଜଡ଼ ।୧୬।

ଉଠିବା ପଡ଼ିବାଟା ଦେଖି ନିରତ
ଷଡ଼୍ରିପୁ ଦମନରେ ହୁଅ ଜାଗତ ।୧୭।

ଅନ୍ୟାୟକୁ ଯାହାର ନାହିଁ ଖାତର
ତେବେ ଶବ ଦର୍ଶନେ କିମ୍ପା କାତର ।୧୮।

ଏ ବର୍ଷର ବରଷା କଲେ ଭବନା
ଆସିବ ପର ମନେ ତା'ର ଚେତନା ।୧୯।

ବିଘ୍ନରଜ ନିକର କଲେ ଅନ୍ୟାୟ
ଅଛିକି ରୋକିବାକୁ ତା'ର ଉପାୟ ।୨୦।

ସିଇଲେ ଯିବୁ କାହିଁ ମୁହୂର୍ତ୍ତେ ପରେ
ଶୁଭିବ ତୋ ମରଣ ଚଉଦିଗରେ ।୨୧।

ନିତି ଦେଖୁଛୁ ଏହା ଦୁନିଆଁ ରୀତି
ତେଣୁ ସ୍ୱାର୍ଥକୁ ସଦା କରିବୁ ଭୀତି ।୨୨।

ଦେଖିବ ଜଗତକୁ କୁଟୁମ୍ବ ପରି
ସୁଖରେ ଭବଧାମୁଁ ଯିବୁରେ ତରି ।୨୩।

ଘଡ଼କ ପାଇଁ ସିନା ଲୁହ ଆଖିରେ
ତାପରେ ଯାହା ଘଟେ ଦେଖୁ ମହୀରେ ।୨୪।

କୁଟୁମ୍ବ ବୋଲି ଯାକୁ ମଣୁ ମୋହର
ଆଖିଟି ବୁଜିଦେଲେ ସେକି ତୋହର ।୨୫।

ତୋ ପଛେ ନାହିଁ କେହି ଯିବୁଟୁ ଏକା
କରିଥିଲେ କୁକର୍ମ ପିଙ୍ଗିବେ ଠେକା ।୨୬।

ସ୍ୱାର୍ଥ ପଛରେ ଧାଇଁ କେ ପାଏ ସୁଖ
ଧର୍ମରେ ଥିଲେ ମତି ହରଷ ମୁଖ ।୨୭।

x x x x x

ଧିକରେ ମଣିଷ ଧିକ ତୋ ଜୀବନ
ଭବ ଲୀଳା ଦିନେ ନକଲୁ ଚିନ୍ତନ ।୧।

ମୋର ମୋର ବୋଲି କଟାଉ ସମୟ
ନ ସୁମରିଲୁ ଦିନେ ପ୍ରଭୁ ଦୟାମୟ ।୨।

ଆସି ଖାଲି ହାତେ ଯାଉ ଖାଲି ହାତେ
ଅବାଟରେ ଗଲେ ପଡୁଅଛୁ ଖାତେ ।୩।

ଜନମିଲୁ ଯିନା ଆଣିନାହୁଁ କିଛି
କହିବାକୁ 'ମୋର' ଶୁଣୁଅଛୁ ଛି ଛି ।୪।

'ତୋର' ବୋଲି ଯାହା ଅର୍ଜିବୁ ଜୀବନେ
ତୋର ଅବା କା'ର ଜାଣିବୁ ଭବନେ ।୫।

ଯେତେଦିନ ଯାଏଁ ରହିବୁ ଅନ୍ଧାରେ
ନ ଦିଶିବ ବାଟ ପଡ଼ିବୁ ଖାତରେ ।୬।

ଧରିଛି ଆଲୁଅ ବିତ୍ତର ଶକତି
ଦେଖାଉଛି ବାଟ ଦେବାକୁ ମୁକତି ।୭।

କହିବ ସେ ଶକ୍ତି ନ୍ୟାୟ ବା ଅନ୍ୟାୟ
ତେବେ ବୁଝି ତାକୁ କରିବ ଉପାୟ ।୮।

ନାନା ଦଣ୍ଡ ଢେଗ କରୁଛି ମଣିଷ
ନଭବେ କିପରି ପାଇବ ଆଶିଷ ।୯।

ରହିଛନ୍ତି ବ୍ୟାପି ପ୍ରଭୁ ଭଗବାନ
ଜାଣୁଛନ୍ତି ନିତି ତୋର କାର୍ଯ୍ୟମାନ ।୧୦।

ପକାଇଲୁ ଗଣ୍ଠି ସ୍ୱାର୍ଥକୁ ଜୀବନେ
ନକରି ଭବନା ଆପଣା ମୋଚନେ ।୧୧।

ଜନମି ମରିବୁ କେତେ ଥର ଭବେ
ଏ ରହସ୍ୟ କେବେ ଜାଣିଛୁକି ଲବେ ।୧୨।

ଅନୀତି ପଛରେ ରହିଅଛି ଦଣ୍ଡ
ବୁଝି ପାରିବକି କେବେହେଁ ପାଷଣ୍ଡ ।୧୩।

ପ୍ରଭୁ ଭଗବାନ ଦିଅନ୍ତୁ ସଦ୍‌ବୁଦ୍ଧି
ଜୀବନେ ମଣିଷ କରୁ ଚିତ୍ତ ଶୁଦ୍ଧି ।୧୪।

ଆମୋଦ ପ୍ରମୋଦେ ସମୟ ବିତାଇ
ନ ଯାଉ କାହାର ଜୀବନ ପଳାଇ ।୧୫।

ଦୁଛା କଳ୍ପନାରେ ବଳାଉଛୁ ମନ
ବାସ୍ତବ ବିଷୟେ ନ କରି ଚିନ୍ତନ ।୧୬।

ନିତି ଶୁଣୁଅଛ ମରଣର ରଡ଼
ଦୁଆର ମୁହଁରେ ଶବ ଘଡ଼ ଘଡ଼ ।୧୭।

ଗଲାବେଳେ ଦେଖ ହାତ ଥିବା ଶୂନ୍ୟ
ନ ବିତ୍ତର ତିଳେ ଦିନେ ପାପ ପୁଣ୍ୟ ।୧୮।

କାହିଁକି ପାଇଛୁ ବିତ୍ତର ଶକତି
ନଭବୁ କିପରି ପାଇବୁ ମୁକତି ।୧୯।

ଅବା କେତେ ଦିନ ଭବେ ତାର ସ୍ଥିତି
ଦେଖୁଅଛୁ ସଦା ଦୁନିଆଁର ରୀତି ।୨୦।

ଯାହା ପାଇଁ ଏତେ ହେଉଅଛୁ ଘାଣ୍ଟି
ଛଡ଼ାଇ ନେବେ ସେ ହାତେ ଥିବା ପାଣ୍ଠି ।୨୧।

ଭାଂଗିଥିବ ବଳ ନ ପାରିବୁ ଉଠି
ନଇଁଥିବ ଅଣ୍ଟା ବଙ୍କା ଥିବ ପିଠି ।୨୨।

ଠକିବା ଭଣ୍ଡିବା ଆଜିର ଜୀବିକା
କରେ ସର୍ବନାଶ ବ୍ୟାପି ଅହମିକା ।୨୩।

ନ୍ୟାୟ ଅନ୍ୟାୟକୁ ଡର ନାହିଁ କା'ରୁ
କ୍ଷମତା ପଇସା କେବଳ ବିତ୍ତର ।୨୪।

ଭାବୁଥାନ୍ତେ ଯଦି ଲୋକ ଏ ଦେଶର
ହୋଇଥାନ୍ତା କିବେ ଦୁର୍ନୀତିରେ ଭର ।୨୫।

ପଶୁଛନ୍ତି ଲୋକେ ନାନା ଅନୀତିରେ
ଅହେଉ ଦିନକୁ ରହି ଏ ମହୀରେ ।୨୬।

କେତେ ମହାଜନ କେତେ ତ୍ୟାଗ କରି
ଆଦର୍ଶ ଦେଖାଇ ଭବୁଁ ଗଲେ ତରି ।୨୭।

କାଳିର ବିଷୟ ଗାନ୍ଧୀଜୀ ଆଦର୍ଶ
ପାସୋରିଲେ ସର୍ବେ ନଚିନ୍ତି ଆମର୍ଶ ।୨୮।

କ୍ଷମତା ଧନରେ ହେଉଛନ୍ତି ବାଇ
କହୁଛନ୍ତି ମିଛ ତୁହାଇ ତୁହାଇ ।୨୯।

ସବୁ ଦେଖି ଦେଖି ଦୁନିଆଁ ବେଭାର
ପଡୁଛି ମଣିଷ ବନ୍ଧନେ ଆଶାର ।୩୦।

ନ ପାଉଛି କିଏ ଜୀବନେ କଷଣ
ବିଚାରକ ଯହିଁ ସ୍ୱୟଂ ନାରାୟଣ ।୩୧।

ଲଗିଛି ଧରାରେ କେତେ ଧରାଧରି
ପିଟିଯାଏ ଦୋଷୀ ମିଛକୁ ଆଚରି ।୩୨।

ସ୍ୱାର୍ଥ ମଣିଷର ମୋଡ଼ିଦିଏ ତଂଟି
ଦେଉଳରେ ଯେତେ ବାଜୁଥାଉ ଘଣ୍ଟି ।୩୩।

x x x x x

ଉପର ହାକିମ କଲେ ଅନ୍ୟାୟ
ତଳର ହାକିମ ଦେବକି ନ୍ୟାୟ
ଧନ୍ୟ ବିଚାର
ସତେକି ଓଲଟି ଗଲା ସଂସାର ।୧।

ଶୁଣିଲେ ସନ୍ତତ ବିବେକ ଡାକ
ସୁଖରେ କଟିବ ଜୀବନ ଯାକ
ଧାନୁଁ ଅଗାଡ଼
କାଢ଼ିଦେଇ ସବୁ ଦିଅ ସଜାଡ଼ ।୨।

ଅଗାଡ଼କି ରଖି ବିକିଲେ ଧାନ
କି ହେବ ପଛରେ କର ସନ୍ଧାନ
ସଂସାର ରୀତି
ଦେଖିଲେହେଁ ସଦା ବଢ଼େ ଅନୀତି ।୩।

ଅନ୍ତର୍ଯାମୀ ରହି ସଦା ଚିତ୍ତରେ
କହନ୍ତ ଯାହାକି ପଡୁ କାନରେ
ଗଲେ ଅବାଟେ
ବାଜିବ ଅବଶ୍ୟ ପିଠିରେ ଛାଟେ ।୪।

କେତେଦିନ ପାଇଁ ଜୀବନ ଖେଳ
ବିଚାରି ବିଚାରି ସରିବ ବେଳ
ମନ ଇଚ୍ଛାରେ
ନକର କରମ ଜନ୍ମି ସଂସାରେ ।୫।

କେତେ ଖାଲ ଢିପ ଅଛି ବାଟରେ
ନ ଜାଣିଲେ ଚାଲି ହଇରାଣରେ
ପଡ଼ ମଣିଷ
ଯାଉଛି କପଣ ଦିଶେ ଅନିଶ ।୬।

କାହା ବଡ଼ପଣ ରହିଛି ଭବେ
କାଲିକି କେ ଚିନ୍ତା ଜୀବନେ ଲଭେ
ଆଣି ଆଗରେ
ଓଳେମ ବିଳେମ ସଦା ମର୍ତ୍ତ୍ୟରେ ।୭।

ସ୍ୱାର୍ଥକୁ ଜୀବିକା କେତେକ କରି
ଅଧମିକା ଡୋରି ଭିତରେ ଧରି
କି ହେବ ଟାଣି
ପଡ଼ିଲେ ଛିଣ୍ଡୁଛି ବାଟ ନ ଜାଣି ।୮।

ଆସିଅଛୁ ଏକା ଯିବାରେ ଏକା
ସୁକର୍ମ ନକଲେ ପିଙ୍ଗନ୍ତି ଟେକା
ଦୁନିଆଁ ରୀତି
ଭାବିଲେ ମନରେ ଲାଗଇ ଭୀତି ।୯।

ସୁଖ ବା ଦୁଃଖରେ ଯାଉଛି ଦିନ
ଦେଇଛନ୍ତି ଲେଖି ଆଗରୁ ଇନ
ଭବିଷ୍ୟ କଥା
ବୃଥା ଭାବନାରେ ନ ଘୂରୁ ମଥା ।୧୦।

କିଏ ଜାଣିଥିଲା ଆସିବ ବଢ଼
କେତେ ଜୀବଜନ୍ତୁ ପାଣିରେ ପଡ଼
ମଣିଷ ସହ
ଭାସିଯିବା କ୍ଳେଶ ହେଲା ଦୁଃସହ ।୧୧।

ଯେତେ ଘରଦ୍ୱାର ଗଲା ଭୁଷୁଡ଼
ଆସିବ ନାହିଁରେ ଆଉ ବାହୁଡ଼
କେଉଁ ପାଂଜିରେ
ଅଛିକିରେ ଯାହା ଗଲା ଧୋଇରେ ।୧୨।

ଲାଗିଲା ଇରାକେ ଭୀଷଣ ଯୁଦ୍ଧ
ଜାଣିଲେ କି କିଏ ଜ୍ୟୋତିଷ ବୁଧ
ତେଣୁ ଭବିଷ୍ୟ
ଅଜଣା ରହିବ ଭବେ ଅବଶ୍ୟ ।୧୩।

ବିଚିତ୍ର ସଂସାର ବିଚିତ୍ର ସୃଷ୍ଟି
ଅଜଣା ଆଗରୁ ଏଭଳି ବୃଷ୍ଟି
ଧାତା ବିଚାର
ପାରିବକି ବୁଝି ମଣିଷ ଛାର ।୧୪।

ଦେଖୁଛି ମଣିଷ ଯୋଗ ଅଯୋଗ
ଧାତା ଲେଖିବାଟା କରିବ ଭୋଗ
ଏହା ଅବଶ୍ୟ
ପାରିବ ଜାଣିକେ ସୃଷ୍ଟି ରହସ୍ୟ ।୧୫।

ଅଳେଡାରେ ମେଘ ଦିଏ ଅଜାଡ଼
ବସିଅଛି ଗଛେ ପକ୍ଷକୁ ଝାଡ଼
କେତେକ କୁଆ
ବରଷାକୁ ତାଙ୍କ ନାହିଁ ପରୁଆ ।୧୬।

ବାୟା ଚଢ଼େଇଟି ବସା ଭିତରେ
ରହିଅଛି ଏଣେ ମହା ସଜରେ
ଖଟିଖିଆର
କହିଲେ ନସରେ ଦୁଃଖ ତାହାର ।୧୭।

ମାସ ମାସ ଧରି ବିଲରେ ଚଷା
ଲାଗିଥିଲା ସହି ଖର ବରଷା
କପାଳ ମନ୍ଦ
ପାଣିରେ ସଢ଼ିଲା ସବୁ ତା ଖନ୍ଦ ।୧୮।

ବର୍ଷାକାଳ ହେଲା ଛେଳିକି କାଳ
ଗଡୁଛି ମହିଷ ଦେଖି ଜମାଳ
ପ୍ରମୋଦ ଭରେ
ଓଳେମ ବିଳେମ ସଦା ଭବରେ ।୧୯।

ଘୁଙ୍କ ଠେକି ଠେକି ଘଡ଼କି ଘଡ଼
ଶୁଭୁଛି କେକାର ବଣରେ ରଡ଼
ଶୁଣି ଆକୁଳ
ପଶିଲେ ବିଳରେ ଉରଗକୁଳ ।୨୦।

ବିଶ୍ୱାସ ଜନ୍ମାଇ କେ ଦିଏ ବିଷ
ନ ଜାଣିଲେ କେହି ଜାଣନ୍ତ ଈଷ
ଲୋଭ ଆଶାରେ
ଚାଲିଛି ଏପରି ଖେଳ ସଂସାରେ ।୨୧।

ବିଲରେ ହେଲାଣି ଆଂଠୁଏ ଜଳ
ଆନନ୍ଦେ ରବନ୍ତ ଦର୍ଦ୍ଦୁର ଦଳ
ନାଦ ବିକଟ
ଆସିବାରୁ ଧଣ୍ଡ ସର୍ବେ ଚମ୍ପଟ ।୨୨।

ସ୍ୱର୍ଣ୍ଣପ୍ରସୂ ଦେଶ କି ହେଲା ଆଜି
ଏଥିଲାଗି ଦାୟୀ ଶାସକ ରାଜି
ଗାନ୍ଧିଜୀ ପରେ
କି ହେଲା ଏ ଦେଶ ଭବନ୍ତୁ ଥରେ ।୨୩।

କ୍ଷମତା ନିମିତ୍ତ ଟଣା ଓଟରା
ଲାଗିଅଛି ନିତି ଦେଖୁଛି ଧରା
ଲାଗିଛି ମନ
ଉଚ୍ଚାସନେ ଗଲେ ଅର୍ଜିବେ ଧନ ।୨୪।

ଉଭେଇ ଯାଇଛି ନ୍ୟାୟ ମହତ
କଲମ ଧଇଲେ ମିଛକୁ ସତ
କରି କେତେକ
ଦେଖାଇ ହୁଅନ୍ତ ଆପଣା ଟେକ ।୨୫।

ଶୋଷୀ ବାଟୋଇଟି ଧାଇଁଲା ପରି
ମରୀଚିକା ପଛେ ଲୋକ ସେପରି
ଅର୍ଥ ଲୋଭରେ
ପାଉଛି କଷଣ ପଡ଼ି ଖାଲରେ ।୨୬।

ଶାସନ କାଳଟି ଦୁର୍ନୀତି ଭରା
ସୁଧାରିବାକୁ ତା ହେଲେ ତତ୍ପର
ଜନ ମଙ୍ଗଳ
ଗାନ୍ଧିଜୀ ସ୍ୱପନ ହୁଏ ବିଫଳ ।୨୭।

ଏ ଦେଶ ସ୍ୱାଧୀନ ଯାହା ଯୋଗରୁ
କିପରି ପାସୋରି ଗଲା ମନରୁ
ଧିକ ଏ ଦେଶ
ଅଛିକି ବିଚାର ଶକତି ଲେଶ ।୨୮।

ନ ଘବଇ କେହି କି ହେବ ପରେ
ନିତି ଦେଖିଲେହେଁ ସର୍ବେ ଦାଣ୍ଡରେ
ଲୀଳା ଉବର
କରନ୍ତୁ ବିଘରି, ଶୁଦ୍ଧ ଚିତ୍ତର ।୨୯।

ନଭେମ୍ବର ଘରି ନବେ ସାଲକୁ
ହେତୁ ରଖିଥିବ ଯୁଗ ଯୁଗକୁ
ଅସୀମ କ୍ଷତି
କେ ବୁଝିପାରିବ ବିଧାତା ମତି ।୩୦।

ବନେ ରହୁଥିବା ପ୍ରାଣୀ ନିବହ
ଗୋରୁ ଛେଳି ମେଣ୍ଢା ମଣିଷ ସହ
ପାଣି ସୁଅରେ
ପଶିଗଲେ ଯାଇ ସିନ୍ଧୁ ଗର୍ଭରେ ।୩୧।

ଆସିଗଲା କିରେ ପ୍ରଳୟ କାଳ
ଜଳାର୍ଣ୍ଣବ ହେଲା କେଦାର ମାଳ
ବାଲି ଅଜାଡ
ଫୁଟେ ବହଳରେ ଯାଇଛି ମାଡ଼ ।୩୨।

କେତେ ଘରଦ୍ୱାର ହୋଇଛି ଚୂନା
କେ କଳିପାରିବ ଯା ଗଲା ସୁନା
ଦେଖି ଅନୀତି
ଦେଉଛନ୍ତି ଦଣ୍ଡ ବିଧାତା ନିତି ।୩୩।

ଯମ ଦୂତମାନେ ବାଟ ଓଗାଳି
କରନ୍ତି ହିନସ୍ତା ଦିଅନ୍ତି ଗାଳି
ପାପୁଁ ଓହରି
ଫେରିଯାଅ ଭବୁଁ ନ୍ୟାୟାନୁସରି ।୩୪।

କିଏ ସେ ସଂସାରେ ନୁହଁଇ ଚିର
ଆଜି ଉଚ୍ଚାସନେ କାଲି ଫକୀର
ଦୁନିଆଁ ରୀତି
ଜାଣି ଶୁଣି କିମ୍ପା ବଢେ ଅନୀତି ।୩୫।

କିଏସେ କହିବ ଆଂଗୁଠି ଧରି
ଲେଖାଇ ନ ଦେବ କଲମ ଧରି
ପୁଚ୍ଛି ବିବେକ
କରୁଥିଲେ କର୍ମ ରହିବ ଟେକ ।୩୬।

ପ୍ରବୃତ୍ତି ଜୀବନେ ନିରତ କେହୁ
ନିବୃତ୍ତିକି ସଦା ରଖିବ ହେତୁ
କିଏ କାହାର
କରିବ ବିଘର ଥରକୁ ଥର ।୩୭।

ରିଲିଫ ବଣ୍ଟନ ଘଲିଲା କ୍ରମେ
ଧଳାକୁ କଳାରେ କଲେ ବିଭ୍ରମେ
ହେଲା ଚହଳି
ଗାଆଁରେ ଗାଆଁରେ ବଢଲା କଳି ।୩୮।

ପାତର ଅନ୍ତର ହେଲା ଏ ବଣ୍ଟା
କାଦୁଏ ପ୍ରବେଶି କୁଦିଲେ କଣ୍ଟା
କେତେକ ଲୋକ
ଏଣେ ମୂଳିଆଣି କରୁଛି ଶୋକ ।୩୯।

⊙ ⊙ ⊙

( ରାଗ–ଚୋଖି )

ନ୍ୟାୟକୁ କରି ଆଶ୍ରୟ ଚଳନ୍ତୁ ମାନବ ଚୟ
ଗୁରୁଜନ ଠାରେ ଭୟ ରଖି ଜୀବନେ
ରହିଛି ନ୍ୟାୟ ନିକିତି ତୁଳାତୁଳି ହୁଏ ନିତି
ନାହିଁ ତହିଁ ପ୍ରିୟାପ୍ରୀତି ଚିନ୍ତ ଶୟନେ
ନ ପଡ ଆପଣା ଲୋଭରେ
ରହିଅଛି ଜଗୁଆଳ ସଦା ଦେହରେ ।୧।

ଉପକାର ଅପକାର କଲେ ଜୀବନେ କାହାର
ନ ଘବିଲେ ବାରବାର ତା ପରିଣାମ
ଧରୁଛି ବିଷମ ଗତି କିପରି ନ ଜାଣେ ମତି
ଘବନ୍ତୁ ମଣିଷ ଜାତି ତା ଅବିରାମ
ମରଣର ଡୋରିକି ଧରି
କେତେଦିନ ଠକିବରେ ପାପ ଆଚରି ।୨।

କପଟ ରଖି ହୃଦରେ ଧାଉଁଛୁ ନିଜ ଲୋଭରେ
ଦେଖିଲେ ହେଁ ନିଜ ଘରେ ଅନୀତିମାନ
କିଏ ଜାଣୁନାହିଁ ବୋଲି ଭବୁଛ ଚିତ୍ତ ନ ଖୋଲି
ଭରି କଲେ ନିଜ ଡୋଲି ଅସାବଧାନ
ହେଉଅଛ ପ୍ରତି ଦଣ୍ଡରେ
ପରିଣତ ହେବ ନିଶ୍ଚେ ଦିନେ ପଣ୍ଡରେ ।୩।

କାର୍ଯ୍ୟାବଳୀ ପ୍ରଭୁଙ୍କର        ଅନୁଭବି ନିରନ୍ତର
ଦୋଷୀକୁ କ୍ଷମା ଆଚର ମଣିଷ ଧର୍ମ
ଅନ୍ୟାୟ କରି ବର୍ଜନ        ମନକୁ କରି ଦମନ
ନିରଳସ ହୋଇ ଜନ କରୁ ସୁକର୍ମ
ଲୋଡ଼ ସଦା ମୁକ୍ତି ସରଣୀ
ଚଳିଲେ ଅନବରତ ଖୁସି ଧରଣୀ ।୪।

ଦୁର୍ନୀତି ହେଲା ପ୍ରବଳ        କାର ନାହିଁ ମନୋବଳ
ଶାସନର କଉଶଳ ପଡେ ଲୋଚନେ
ସ୍ୱାର୍ଥଟି ହେଲା ଜୀବିକା        ଚକିରୀରେ କିଣା ବିକା
ଧାବୁଅଛି ଅହମିକା ମାନସ ଧନେ
ଗାନ୍ଧିଜୀକି ମାରି କେତେକ
ବୁଡାଇଲେ ହରିଜନ ଗରୀବ ଭେକ ।୫।

ତାଙ୍କର ଆମର୍ଶାବଳୀ        ନ ପଢ଼ ଶାସକ ଆଜି
କରନ୍ତ ଦୁଚ୍ଛା ଗୁରଜି ନିଜ ବଡାଇ
ଦେଖାଇ ଦୁଅନ୍ତ ଥୋକେ   ବସି ବିଜୁଳି ଆଲୋକେ
ମରୁ କେ ଉପାସେ ଭେକେ ଅନ୍ନ ନ ପାଇ
କଲବଲ ନିଶି ଦିବସ
ତିନିମାସ ପଢ଼ଆରେ କଟେ ବରଷ ।୬।

ଚୁଣ୍ଡାମିର ଅତ୍ୟାଚର        ଡକାୟତି କାରବାର
ଅଛିକି ଆଶା କାହାର ଧନ ଜୀବନେ
ଧନୀର ବଢ଼ିଲା ଧନ        ଗରୀବ ହେଲା ଉଚ୍ଛନ୍ନ
ନମିଳେ ମୁଠାଏ ଅନ୍ନ ଏବ ଶାସନେ
ଅନ୍ୟାୟକୁ କଲେଣି ଗଂଠି
ଏଣେ ପାଣି ମଦେ ଟାଇଁ ଶୁଖୁଛି ତଂଟି ।୭।

ନ ମାନି ଗାନ୍ଧୀ ବଚନ        ଚଳିଛି ଦେଶ ଶାସନ
ଦୀନ ହେଲା ହୀନିମାନ ବଢେ ଲୁଣ୍ଠନ
ଆସୁଛି ଅନ୍ଧାର ଘୋଟି        ଉଣ ଦୁଇଲକ୍ଷ କୋଟି
ହାଉକାର ଧରେ ଚୋଟି କର ଭବନ
ହେଲାଣି ଠିକଣା ସମୟ
ଦେଖନ୍ତୁ ଚୌଦିଗେ ଲୋକେ ଈଶ୍ୱରମୟ ।୮।

ଅନ୍ୟାୟ କାର୍ଯ୍ୟକ୍ରମରେ        ଦେଖାନ୍ତ ବିକ୍ରମ ନରେ
ବିଶାଳ ଭବ ଭୂମିରେ ଶେଷେ ନିଧନ
ଶୁଣନ୍ତ ସିନା କେବଳ        ନରଦ୍ରୋ ଓ ଧନ ବଳ
ଅଥବା ବାହୁର ବଳ ଦେଖେ ନୟନ
ରହିଛିକି କା'ର ଗରବ
ପୂରଣ ପୂରୁଁ ଆରମ୍ଭି କହୁ ମାନବ ।୯।

କହୁଛି କଥା ଗୋଟିଏ        ଶୁଣନ୍ତୁ ନର ନାରୀଏ
ନିଗଳର ବୋହୂଟିଏ ବଡ ନଦୀକି
ଡେଇଁଗଲା ଭସି ଭସି        ଋଷିକୁଲ୍ୟା ଜଳ ରାଶି
କଳ କଳ ନାଦେ ଆସି ଠେଲି ମାଇକି
ବିପରୀତ ପଟେ ଛାଡ଼ିଲା
ଯାଉ ଯାଉ ଜଳେ ରବି ବିମ୍ବ ଦେଖିଲା ।୧୦।

ପିନ୍ଧବା ଲୁଗା ଅଣ୍ଟାର        ରହିଛି ହାତରେ ତା'ର
କରି ରବି ନମସ୍କାର ଧୀବରଗଣ
ପୁରସ୍ତମପୁରବାସୀ        ଧରିବା ଲାଗି ପ୍ରୟାସୀ
ହୋଇ ନଦୀରେ ପ୍ରବେଶି ଜଣକୁ ଜଣ
ଡଙ୍ଗାଟିଏ ନେଇ ନିକଷା
ଧରିଥିଲେ କଉଶଳେ ତାକୁ ସହସା ।୧୧।

ଗାଆଁକୁ ଗଲା ବାରତା        ଜିପ୍ ଧରି ତା ଭରତା
ଯିବାରୁ ତାର ବନିତା ଫେରିଲା ଗ୍ରାମେ
ପଡ଼ିଲା ଏବେ ଚହଳ        ଖେଳିଗଲା କୋଳାହଳ
ଆନନ୍ଦେ ହେଲେ ବିହ୍ୱଳ ହାଲିଆ ଶ୍ରମେ
ସ୍ତମ୍ଭୀଭୂତ ଲୋକ ନିଚୟ
ଚୌଦିଗେ ଦେଖନ୍ତୁ ସର୍ବେ ଈଶ୍ୱରମୟ ।୧୨।

ନୁହିଁଇ କେ ଭବେ ଚିର        ନିଖୁଣ ଥିଲା ଶରୀର
କାହିଁକି ମନ ଅସ୍ଥିର ହୁଏ ଲୋକର
କି ଘଟିବ କାଲି ଭବେ   ଜାଣେ କେ ତହିଁରୁ ଲବେ
ସ୍ୱାର୍ଥରେ ବସ ସରବେ ଲୀଳା ଭବର
ଶିଖିଲକି କିଏ ତହିଁରୁ
କି ନେବ ସଙ୍ଗରେ ଗଲେ ମର୍ତ୍ତ୍ୟ ଭୂଇଁରୁ ।୧୩।

ଜୀବରେ ବଡ ବୋଲାଇ ମଣିଷ ଜନମ ପାଇ
ବିଗ୍ୱର ଶକତି ଥାଇ କରେ ଅନୀତି
ସ୍ୱାର୍ଥରେ ସନ୍ତତ ମନ ନ କରି ଅନ୍ୟ ଘବନ
କଲେହେଁ ସବୁ ଦର୍ଶନ ଦୁନିଆଁ ରୀତି
ଜଡଅଛି ମାୟା ମୋହରେ
ପାପ ପୁଣ୍ୟର ବିଗ୍ୱର ନାହିଁ ହୃଦରେ ।୧୪।

ଜଗ ମାଢ଼ବସେ ଆସି ଯଉବନେ କାନ୍ତ ନାଶି
ଅବୁଝା ମାନବରାଶି ଖସୁଛି ବଳ
ବିଧିର ଯେତେ ନିୟମ ଦେଖୁଛି କେ ବ୍ୟତିକ୍ରମ
ଦିବସ ରଜନୀ ସମ ସଦା ନିର୍ମଳ
ଅଖି ଆଗେ ଦିଶୁଛି ନିତି
ଧିକରେ ମଣିଷ ରଖୁ ସ୍ୱାର୍ଥରେ ପ୍ରୀତି ।୧୫।

ଅସଂଯତ ଲୋକମନ ଆଶାର କ୍ରମ ବର୍ଦ୍ଧନ
କରୁଛି ଅବଲୋକନ ଆଜି ସଂସାରେ
ତୋଷାମଦ ପ୍ରିୟାପ୍ରୀତି ଗ୍ୱଲିଛି ଦେଶେ ସଂପ୍ରତି
ପୂର୍ବର ଆଦର୍ଶ ନୀତି ନାହିଁ କା'ଠାରେ
ଅହଂଭବ ବ୍ୟାପି ସର୍ବତ୍ର
ବିନଷ୍ଟ ହେଉଛି କ୍ରମେ ଲୋକ ଚରିତ୍ର ।୧୬।

ପାଇଥିଲେ କେବେ ଯୋଗ
ଗ୍ୱଖୁଥିଲେ ଦେବ ଭୋଗ
ନକରେ କେ ଅଭିଯୋଗ ତା'ର ରନ୍ଧଣା
ମସଲା ମସଲି ନାହିଁ ତର୍କାରୀକି ପାଣି ଗ୍ୱହିଁ
ଦେଉଛି ରନ୍ଧବା ଧଇ ଅତି ଠିକଣା
ଦେବଦ୍ୱକୁ ଦିଏ ଦେଖାଇ
ସେ ରନ୍ଧା ଖାଇଲେ ଯାଏ ରୋଗ ପଳାଇ ।୧୭।

x x x x x

ଓଲୋମ ବିଲୋମ ଦୁନିଆଁ ନୀତି
ମଣିଷ ଦୃଷ୍ଟିରେ ପଡୁଛି ନିତି
ନ ଭବଇ କେହି ଆପେ ସେ କଥା
ପାସୋରି ଯାଇଛି ପୂର୍ବର ପ୍ରଥା

ସ୍ୱାର୍ଥରେ କେବଳ ମତି ଯେ
ଧନ ଅରଜିବା ଧନ ସାଇତିବା
ଜୀବିକା ହେଲା ସଂପ୍ରତି ।୧।

ସମୁଦ୍ର ଢେଉକୁ ଗ୍ୱହିଁ କିପରି
ଉଠୁଛି ପଡୁଛି ଗର୍ଜନ କରି
ଉଠାଣି ଗଡାଣି ବାଟେ ସେପରି
ବିଧାତା ଭିଆଣ ସଦା ଏପରି
କୋଟିପତି ଆଜି ଯିଏ
ଦାଣ୍ଡର ଭିକାରୀ ହେଉନାହିଁ କିରେ
କେତେଦିନ ପରେ ସିଏ ।୨।

ଧନ୍ୟ କଳିଯୁଗ ଧନ୍ୟ ମଣିଷ
ଅମୃତକୁ ଛାଡ ପିଅନ୍ତି ବିଷ
ଗ୍ୱଲିଛି ଶାସନ ଧରଧରିରେ
ନ୍ୟାୟ ସତ୍ୟ ଯେତେ ଦଳି ପାଦରେ
ଧନ୍ୟ ଧନ୍ୟ ବୁଝାମଣା
ଅବାଟରେ ପଶି ଦୁନିଆଁ ରୀତିକି
କିଂଚିତ ନଭବି ବଣା ।୩।

ନ୍ୟାୟ ନିକିତିଟି ହେବାରୁ ଭରି
ପଡୁଅଛି ଖସି ହାତୁଁ କାହାରି
ଅନ୍ୟାୟ ନିକିତି ଉଶ୍ୱାସ ଅତି
ତନ୍ମାଇ ବିଶ୍ୱାସ ମଂଥୁଛି ମତି
କି ହେଲା ଦୁନିଆଁ ରୀତି
ଧର୍ମ ଅଧର୍ମକୁ ନ କରି ଭବନା
ଯାଇଛି ପାସୋରି ନୀତି ।୪।

ବସା କରେ ଆଶା ହୃଦେ ଯାହାର
ନ ପଶେ କାନରେ କଥା କାହାର
ବାଟ ବା ଅବାଟ ନପଡେ ଜଣା
ପଡୁଅଛି ଡେଇଁ ଦେଖିଲେ ଖଣା
ବାଟୋଇ ଧାଇଁଲା ପରି
ତୃଷାତୁର ହୋଇ ମୃଗତୃଷ୍ଣା ପଛେ
ହିଂସ୍ର ଜନ୍ତୁଙ୍କୁ ନଡରି ।୫।

ଅଛନ୍ତ ଏ ଭବେ କେତେ ଚତୁର
ଧନ ଲାଗି ଦିନରାତି ଆତୁର
ବିଧାତା ଭିଆଣ ନିରତ ଦେଖି
ଲଭ ମହତକୁ ସଦା ଉପେକ୍ଷି
ମନୁ ଛାଡ଼ ସଦାଚାର
ଦୁନିଆଁର ରୀତି ସବୁ ଦେଖି ନିତି
ନ ଆସେ ମନେ ବିଚାର ।୬।

ଆସିବା ଯିବାଟା ଲାଗିଛି ନିତି
ହସ ପଛେ କାନ୍ଦ ଦୁନିଆଁ ରୀତି
ଯେ ଯାହା ସ୍ୱାର୍ଥରେ ଜଡ଼ ସରବେ
ନ ଭାବଇ ଦିନେ କିଏସେ ଲଭେ
ଜଞ୍ଜାଳ ଭିତରେ ରହି
ଦୁର୍ଲ୍ଲଭ ଜୀବନ ଯାଉଅଛି ସରି
ବିବିଧ କଷଣ ସହି ।୭।

ହେବାରୁ ଅଦିନେ ମେଘ ବରଷା
ମୁଣ୍ଡେ ହାତ ଦେଇ ବସିଛି ଚଷା
ଏଣେ ଗଜା ହେଲା ଖଳାରେ ଧାନ
ଏଭଳି ସଂସାରେ ବିଧି ବିଧାନ
ଯେତେକ ଖେଦ ଚଷାର
ଅଲୋଡ଼ା ବରଷା କଲା ସିନା କ୍ଷତି
ନାହିଁ କିଛି ଦୋଷ କା'ର ।୮।

ଲୋକେ କରୁଥିବା ଅନୀତିମାନ
ଭେଟିବେ କି ନାହିଁ କର ସନ୍ଧାନ
ଦେଖୁଛ ଦାଣ୍ଡରେ ବୁଲେ ଭିକାରି
କହିବ କି କିଏ ମନେ ବିଚାରି
ଏ ଦଣ୍ଡ ଦେଉଛି କିଏ
ଦୁର୍ଲ୍ଲଭ ଶକତି ବିଚାରକୁ ପାଇ
ନ ଭାବ କିମ୍ପା ଟିକିଏ ।୯।

ଅଲୋଡ଼ା ବରଷା ଲୁଣକୁ ଖାଇ
ନିର୍ଶ୍ଚିନ୍ତେ ବସିଲା ଆକାଶେ ଚାଇ
ଶାସକ ଉପରେ ପଡେ ଚଡକ
ପୁଣି ଶୁଭୁଅଛି ଲୋକ ଧମକ
ଅସ୍ଥାୟୀ କ୍ଷମତା ପଦ
ପାଇଗଲେ ଗତି ଯେପରି ଆକାଶେ
ନ ଦିଶେ ଗୋଟିଏ ତାର ।୧୦।

ଗଛରୁ କୁସୁମ ପଡ଼ଲେ ଝଡ଼
ମିଳିଗଲା ସବୁ ମୂଳରେ ପଡ଼
ତଥା ଜନ୍ମ ମୃତ୍ୟୁ ଯିବା ଆସିବା
ତେଣୁ ମହାରାଗ ପନିପରିବା
ଲାଗିଛି ସଂସାରେ ନିତି
ସବୁ ଚିନ୍ତା କରି କହିଲେ କଥାଟି
ଆସଇ ମାନସେ ପ୍ରୀତି ।୧୧।

ନାନା ମସଲାରେ ଭରିତ ମୁଣ୍ଡ
କରନାହିଁ କେବେ ଅଯଥା ତୁଣ୍ଡ
ଦେଇଛନ୍ତ ପ୍ରଭୁ ବୁଦ୍ଧି ବିଚାର
ଆପେ ଆପେ ଲୋକ ଶିଖୁ ଆଚାର
କେତେ ଦିନ ପାଇଁ ଭବେ
ନ ଚିନ୍ତଲେ କେହି ବେଳ ଥାଉଁ ଥାଉଁ
ନ ମିଳିବ ସୁଖ ଲଭେ ।୧୨।

କାହିଁ ରମାୟଣ ମହାଭାରତ
ହେଉଥିଲା ବୋଲା ଅନବରତ
ପୁଣି ଭାଗବତ ମଝି ଦାଣ୍ଡରେ
ଚାଲୁଥିଲା ଚର୍ଚ୍ଚା କି ଆନନ୍ଦରେ
ସେ ଦିନ ଯାଇଛି ଆଜି
ଏକତା ଅଭାବ ପୁଣି ଧର୍ମଭାବ
ଦେଶକୁ କରିଛି ପାଜି ।୧୩।

ମଦ ଠାରୁ ବଳି ନିଶା ସ୍ୱାର୍ଥର
ସେ ନିଶା ପିଇଲେ ଆପଣା ପର
ବୁଝିବ ଶକତି ଥିବା ଲୋକର
ପାଉଛି କଷଣ ଥରକୁ ଥର
ଭାବନା ଶକ୍ତି ଅଭାବ
ଅହଂଭାବ ଆଜି ଘୋଡାଇ ଦେଇଛି
ଚିତ୍ତ ଉତ୍ତମ ସ୍ୱଭାବ ।୧୪।

ଦିନକୁ ଦିଅଣା ମଜୁରୀ ପାଇ
ଚଳୁଥିଲା ସୁଖେ ମୂଲିଆ ଭଇ
ନଥିଲା କନ୍ଦଳ ନଥିଲା ଗୋଳ
ଅସାର ଚିନ୍ତାରେ ନହୋଇ ଭୋଳ
ଯାଉଥିଲା ସୁଖେ କାଳ
ପରସ୍ପର ମଧ୍ୟେ ରହିଥିଲା ସ୍ନେହ
ନଥିଲା ଏତେ ଜଞ୍ଜାଳ ।୧୫।

ଯେତିକି ପାଠୁଆ ହେଲା ମଣିଷ
ପୂରଇଲା ସେତେ ଠକାମି ବିଷ
ଦେଲେ ପୋଡ଼ ଜାଳି ପୁରାଣମାନ
ପାଶ୍ଚାତ୍ୟ ଭାଷାକୁ ଦେଲେ ସମ୍ମାନ
ନ ରହିଲା ସରଳତା
ନୂଆଁ ଯୁଗ ବୋଲି ହେଉଛନ୍ତି ଟେକି
ହୃଦେ ପୋଷି କପଟତା ।୧୬।

ବିଦେଶୀ ପାଠକୁ ଶାଠ ବିଦେଶୀ
ମଣ୍ଡାକୁ ତୁଣ୍ଡରେ ଦେଲେଣି ଲେଶି
ପାନ ସିଗାରେଟ୍ ବଡ ଆଦର
ଛାଡୁଛନ୍ତି ଧୂଆଁ ଥରକୁ ଥର
କୁକୁଡା ପକ୍ଷୀରେ ମନ
ଲଖିଗଲା ପର ନୂଆଁ ସଭ୍ୟତାରେ
ନ୍ୟାୟକୁ କରି ବର୍ଜନ ।୧୭।

ସ୍ୱାର୍ଥକୁ ଜୀବିକା କରି କେତେକ
ବୁଡାଇ ଦେଲେଣି ଗରୀବ ଭେକ
ଧର୍ମକୁ ଆଡେଇ ଧନ ଅର୍ଜନେ
ପେଷିଲେ ଅନିଶ ପାପାଶା ମନେ
ଏହି ପର କଳିଯୁଗ
ଦାନ, ଧର୍ମ, ନ୍ୟାୟ ସତ୍ୟ ଅହିଂସାକୁ
ବର୍ଜନ୍ତ ମାନବ ଯୁଗ (ସମୂହ) ।୧୮।

ଶାସନେ ଅନ୍ୟାୟେ ଆମୂଳଚୂଳ
ପାଇବକି କେହି ଥଳ ବା କୂଳ
ଯା କାନେ ନପଶେ ମରଣ ରଡ଼
ନିତି ଦାଣ୍ଡେ ଶୁଣି ଘଡ଼କି ଘଡ଼
ସେ କାହୁଁ ଜାଣିବ ନ୍ୟାୟ
ଇଚ୍ଛା ରଖି ଏଣେ ଟାଣିଲେ ମନକୁ
ଜିଣିବ ଆପେ ଉପାୟ ।୧୯।

ବିଧାତା ବିଧାନ ରହସ୍ୟମୟ
ଏଥିପ୍ରତି କା'ର ଅଛିକି ଲୟ
ନ ବିଚାରି କିଏ ନୀତି ଅନୀତି
ଧନ ଧନ ବୋଲି ସନ୍ତତ ପ୍ରୀତି
ଭାବିବାକୁ ନାହିଁ ବେଳ
ପ୍ରବୃତ୍ତି ନିବୃତ୍ତି ପ୍ରଭେଦ ଜାଣିଲେ
ବୁଝିବ ସଂସାର ଖେଳ ।୨୦।

ଲାଗିଅଛି ଧାଡ଼ ଜନ୍ମ ମରଣ
ଦେଖୁଛି ମଣିଷ କ୍ଷଣକୁ କ୍ଷଣ
ବୁଝିଲା କି ପଦେ କେବେ ତହିଁରୁ
ଛାଡ଼ ପଳେଇଲେ ଭବ ଭୂଇଁରୁ
କିଏସେ ଥିବ ସଙ୍ଗରେ
ବେଳ ଥାଉଁ ଥାଉଁ ନଭାବି ଏତିକି
ହେଉଛି ଧନ ମୋହରେ ।୨୧।

ଦେଖୁଛୁ ଫଳୁଛି ସେହି ଫଳଟି
ଲଗାଇବା ଫଳ ଉଠି ଗଛଟି
ତେଣୁରେ ମଣିଷ ତୋ କର୍ମ ଯେତେ
ଫଳିବ ଅବଶ୍ୟ ସେ ଫଳ ସେତେ
ବିଚାର ପାପ ପୁଣ୍ୟର
ନକଲେ ଭୋଗିବୁ ଅନ୍ୟ ଜନ୍ମ ପରେ
ବୁଝୁଛିକି ତୋ ଅନ୍ତର ।୨୨।

ଯେ ପଶୁଛି ଭଇ ଅଣବାଟରେ
ପଡୁଛି ଅବଶ୍ୟ ସେହି ଖାଲରେ
ତୋର ଅନ୍ତରାତ୍ମା ତୋହର ସାକ୍ଷୀ
ଥାଉ ତୋ ମନଟି ତହିଁରେ ଲକ୍ଷି
ପାଇବୁ ଜୀବନେ ସୁଖ
ପର ବୋଲେ ପଡ଼ି କରିଲେ କରମ
ଭୋଗିବୁ ଜୀବନେ ଦୁଃଖ ।୨୩।

ନିର୍ମଳ ନଥିଲେ ନିଜ ଅନ୍ତର
ଖାଇବୁ କଟଡା ଥରକୁ ଥର
ତୋର ଅସମୟେ କେ ତୋର ସାହା
ବିଷ୍ଟରିବୁ ଅନବରତ ତାହା
ଶ୍ରେଷ୍ଠ ଜୀବନକୁ ପାଇ
ପଶୁପରି ଆଚ- ରଣ କରୁଥିଲେ
ଲଭିବୁ କି କେବେ ତ୍ରାହି ।୨୪।

ଧିକରେ ମଣିଷ ବୁଦ୍ଧି ତୋହର
କରିଲୁ କି କେବେ ଶୁଦ୍ଧି ଅନ୍ତର
ଅସତ୍ୟ ଅନିତ୍ୟ ବିଷୟେ ମାତି
ରହିଅଛୁ ମର୍ତ୍ତ୍ୟ ଦିବସ ରାତି
ଅବିରତ ସୃଷ୍ଟି ରୀତି
ଦେଖି ଦେଖି ଆହା ପଶି ଅଣବାଟେ
ଗଲା ତୋ ଜୀବନ ବିତି ।୨୫।

ଭସିଯିବୁ ନାହିଁ ସ୍ୱାର୍ଥ ଜଳରେ
ଡୁବାଇ ଦେବ ସେ ଅଧା ବାଟରେ
କେତେଦିନ ପାଇଁ ଆସିଛୁ ଭବେ
କରିଲୁ କି ଚିନ୍ତା ଜୀବନେ ଲବେ ?
ଆସିଛୁ ଖାଲି ହାତରେ
ଯିବବା ଖଣ୍ଡକ ଯିବକି ସଙ୍ଗରେ
ରଖିଥା ହେତୁ ମନରେ ।୨୬।

ଦେଖାଇ ଅଛନ୍ତି ପରମେଶ୍ୱର
ଉଠାଣି ଗଡାଣି ସ୍ଥଳ ଝଗର
ପୁଣି ଜଳ ଭରେ ସିଂଧୁ ମଧ୍ୟରେ
ପଡେ ଉଠେ ଢେଉ କେତେ ବେଗରେ
ଅବିରାମ ଏ ନର୍ତ୍ତନ
ଦେଖିଲେ ହେଁ ପୁଣି ନ ବିଷ୍ଟରି କିଛି
ସ୍ୱାର୍ଥକୁ ଯାଉଛି ମନ ।୨୭।

x x x x x

ସଦା ଦେଶ ପ୍ରୀତି ରଖି ମନରେ
କରିଯାଅ କର୍ମ ନିରଳସରେ ।୧।

ସ୍ୱାର୍ଥ ଆଶା କେବେ ନ ରଖ ଚିତ୍ତେ
ଚିନ୍ତା କର କେହି ଅଛି କି ବିତ୍ତେ ।୨।

ପାତର ଅନ୍ତର କଲେ ବେଭରେ
କଟାଇବ ଦିନ ଶେଷେ ଦୁଃଖରେ ।୩।

ବିବେକ ଡାକକୁ ଶୁଣ ସନ୍ତତ
କରିବ କରମ ଜଗି ମହତ ।୪।

ଓଲୋମ ବିଲୋମ ସଂସାର ରୀତି
ଶୁଣନାହିଁ ନିନ୍ଦା କରି ଅନୀତି ।୫।

ଅଚେଇ ଦିନକୁ ଏ ବସାଘର
ରଖନାହିଁ ଭେଦ ଆପଣା ପର ।୬।

ନୂଆଁ ସଭ୍ୟତାକୁ ନୂଆଁ ସମାଜ
ଦେଖାନ୍ତୁ ସରବେ ନ ବହି ଲାଜ ।୭।

କିଏସେ ଶିକାର ନହେବ ଭବେ
ନ ପାଉଛି କିଏ ଜୀବନେ ଲବେ ।୮।

ଛାଡୁନାହିଁ ଲୋଭ ମରିବା ଯାଏଁ
ଧନ ପ୍ରାପ୍ତି ପାଇଁ ନିରତ ଧାଏଁ ।୯।

କିଏ ନ ଜାଣୁଛି ଯିବା ଆସିବା
କାହାର ହାତରେ କିଛି ନଥିବା ।୧୦।

ଛଳୁଥିବା ନିତି ନ୍ୟାୟ ଅୟନେ
ଦୀନ ସେବା କରି ସାର ଜୀବନେ ।୧୧।

ପରମେଶ ଲୀଳା ବିଚିତ୍ର ଅତି
ବୁଝି ପାରିବେ କି ମାନବ ତତି ।୧୨।

ଲାଗି ରହୁଅଛି ଯେତେ ବିପତ୍ତି
ଭବିଲା କି ଦିନେ କାହାର ମତି ।୧୩।

କ୍ଷମତା ସ୍ୱାର୍ଥର ଫାନ୍ଦରେ ପଡ଼
ଚାଲିଛି ବିଷ୍ଟର ଘଡ଼କି ଘଡ ।୧୪।

ବଢୁଛି ଅକର୍ମ ଚଉଦିଗରେ
ଜାଣି ଜାଣି ତୁନି ହୁଅନ୍ତି ନରେ ।୧୫।

ଅବାନ୍ତରେ ନାନା ଯୁକତି କରି
କେ ଲଭେ ଆନନ୍ଦ ପାପ ଆଚରି ।୧୬।

ରଖିବାକୁ ସଦା ଆପଣା ଟେକ
ହରଇ ବସନ୍ତ ନିଜ ବିବେକ ।୧୭।

ବିଧିର ଶକତି ଦଳି ପାଦରେ
ଲଭ ଛାଡ଼ିବାକୁ କୁଣ୍ଠା ମନରେ ।୧୮।

ଏ ଅପୂର୍ବ ଶକ୍ତି ମଣିଷ ଛଡ଼ା
ଅଛି କି କାହାର ଯେ ହୁଏ ଗଢ଼ା ।୧୯।

କ୍ଷମତା ପଛରେ ଧାଇଁଛି ସ୍ୱାର୍ଥ
ନେବା ଲାଗି ଇଚ୍ଛା ପର ପଦାର୍ଥ ।୨୦।

ଯେତେ ମିଳିଲେହେଁ ବଢୁଛି ଆଶା
ବର୍ଣ୍ଣିବାକୁ ଏଣେ ନ ଦିଶେ ଭଷା ।୨୧।

⊙ ⊙ ⊙

କଂଟ୍ରୋଲକୁ କରି ଢାରି
ଚୋଉଛନ୍ତ ଲଭ କଳା ବେପାରୀ
କଳା ପିକରେ
ଶୁଣିବ କେ ତୋ ଗୁହାରି ।୧।

କେତେ ହେଲା ହୁନା ଦର
ଅଛି କି ନାକରେ ଦଣ୍ଡି ତୋହର
କଳା ପିକରେ
ମହନ୍ତଙ୍କୁ ଲଗେ ଡର ।୨।

ନ ପାଇ ଟିକିଏ ତେଲ
କରୁଥାଆ ବସି ପିଲକୁ ଗେଲ
କଳା ପିକରେ
କହିଲେ ଭେଟିବୁ ଜେଲ ।୩।

ଆମେ ଢାଁଉଁ ଅବା ମରୁ
ହଜାର ହଜାର ଗଲଣି ଘରୁ
କଳା ପିକରେ
କାହିଁକି ତୁ ଏତେ ଡରୁ ।୪।

ପଡ଼ କ୍ଷମତା ମୋହରେ
ଚଳିଛି ଶାସନ ଗୁଳି ମୁନରେ
କଳା ପିକରେ
କି ହେଲା ହିଂଦୁ ଦେଶରେ ।୫।

ଅହିଂସା ଯାହାର ମନ୍ତ୍ର
ଲିଭଇ ଦେଲା କି ଏ ଗଣତନ୍ତ୍ର
କଳା ପିକରେ
ଚଳିଅଛି ସଦା ତନ୍ତ୍ର ।୬।

ଚଉଳ ଡାଲି ପିଠଆ
ତା ସଙ୍ଗେ ମିଶିଲ କାଠ ନଡ଼ଆ
କଳା ପିକରେ
କଳା ବେପାରୀ ବନ୍ଧୁଆ ।୭।

ପୁଚୁଣା ସଭ୍ୟଙ୍କୁ ଭତ୍ତା
ଯଥାର୍ଥ କି ଦେବା କହୁ ଜନତା
କଳା ପିକରେ
ରହିବ କି ଆମ ସତ୍ତା ।୮।

ଆମ ଠିକାଦାର ଘଇ
ଗୋଟିକୁ କୋଡ଼ିଏ ବାଲି ମିଶାଇ
କଳା ପିକରେ
କରନ୍ତ କାମ ସଜାଇ ।୯।

ପଇସା ଧରି ହାତରେ
ଓଲଟା ନକଲେ ଭେଟ ବେଳରେ
କଳା ପିକରେ
ଭୋଗିବୁ ଦୁଃଖ ଶେଷରେ ।୧୦।

ଲକ୍ଷ ଲକ୍ଷ ଯାଏ ସରି
ଗରୀବ ଟିକସ ଦେଉଛି ମରି
କଳା ପିକରେ
ରହିବା କି ଆଉ ଡରି ।୧୧।

ବ୍ୟବହାର୍ଯ୍ୟ ଦ୍ରବ୍ୟ ଯାହା
ହେଲା କେତେ ଗୁଣ ଜାଣୁ କି ତାହା
କଳା ପିକରେ
ଭେଟ ହେବ ତୋର ସାହା ।୧୨।

ବଂଧୁ ବାଂଧବ ଭିତରେ
ଚଳିଛି ଶାସନ ଗୁଳି ମୁନରେ
କଳା ପିକରେ
କହିଲେ ଠେଙ୍ଗା ମୁଣ୍ଡରେ ।୧୩।

ଗଣତନ୍ତ୍ର ବୋଲି ଝୁରି
ଟଙ୍କା ତନ୍ତ୍ର ମାରି ପଛରୁ ଚୁରୀ
କଳା ପିକରେ
ଦେଖାଉଛି ବାହାଦୁରୀ ।୧୪।

ଲାଞ୍ଚ ମିଛ କାରବାର
ବଢ଼ୁଛି କି ନାହିଁ କର ବିଚାର
କଳା ପିକରେ
ଗୁଣ୍ଡାମିରେ ନାରଖାର ।୧୫।

ଅଛି କି ଗାନ୍ଧୀ କଂଗ୍ରେସ
ଯହିଁରେ ନଥିଲା କାଳିମା ଲେଶ
କଳା ପିକରେ
କି ହେଲା ସୁନାର ଦେଶ ।୧୬।

ଧଇକି ମାରୁଛି ଭଇ
ରହିବାକୁ ଆଇ ଚପୁଡ଼ା ଖାଇ
କଳା ପିକରେ
ଆମ ହାତେ ଭୋଟ ଥାଇ ।୧୭।

ପାଠୁଆଙ୍କ ବୁଝାମଣା
ଶୁଣି ଶୁଣି ଆମେ ହେଲୁଣି ବଣା
କଳା ପିକରେ
ଦେବା ଜବାବ ଠିକଣା ।୧୮।

କେତେ ଛାତ୍ର ଗଲେ ମରି
କେ ଦେଲା ରିପୋର୍ଟ ତଦନ୍ତ କରି
କଳା ପିକରେ,
ଚଳିଅଛି ଧରଧରି ।୧୯।

ପଦ କ୍ଷମତା ମୋହରେ
ଯେତେ ପାପପୁଣ୍ୟ କର ଦିନରେ
କଳା ପିକରେ
ଲେଖିବ ବସି ରତ୍ରରେ ।୨୦।

ଗ୍ରାମେ ଗ୍ରାମେ ସୁରାପାନ
ବଢ଼ୁଛି କି ନାହିଁ କର ସନ୍ଧାନ
କଳା ପିକରେ
ଲୋକ ଆଜି ହୀନିମାନ ।୨୧।

ହେବାକୁ ଘୁନା ବାରଣ
ଚଳିଲା ପ୍ରଚାର ନିଶି ଦିବସ
କଳା ପିକରେ
ବଜାରେ ଆଜି କେତେଶ ।୨୨।

ସାଧୁଏ ଦେଖି ଏ କଥା
ଲାଜେ ନୁଆଁଇଲେ ତଳକୁ ମଥା
କଳା ପିକରେ
ଅଛିକି ଦେଶେ ଏକତା ।୨୩।

ପଇସାର ବଡ଼ପଣ
ଦେଖାଇ ହୁଅନ୍ତି ମାଲିକ ଗଣ
କଳା ପିକରେ
ଏକତା ଭାଂଗିବ ଟାଣ ।୨୪।

ଶାସନକୁ ଗଲେ ପୁଣି
ସବୁ ସୁବିଧାରେ ଦେବେରେ ଝୁଣି
କଳା ପିକରେ
ଚଳିବୁ ମୋ କଥା ଶୁଣି ।୨୫।

ନାରୀ ଧର୍ଷଣ ସାଙ୍ଗକୁ
ଛାତ୍ର ହତ୍ୟା ଥିବ ଯୁଗ ଯୁଗକୁ
କଳା ପିକରେ
କଳଙ୍କ ଇତିହାସକୁ ।୨୬।

ଲାଞ୍ଚ ଦେଲେ ଭିତାପଟ
ପଇସାକୁ ଧରି କର ଓଲଟ
କଳା ପିକରେ
ମହରଗେ ଛଟପଟ ।୨୭।

ବିଚିତ୍ର ଭୋଟ ବେଭର
ମାରିବୁ ମୋହର କରି ବିଚାର
କଳା ପିକରେ
ନପଡ଼ ବୋଲେ କାହାର ।୨୮।

ଦେଖିବୁ ଗାଆଁ ଭିତରେ
ପାଣି ମଦେ ପାଇଁ ଲୋତକ ଝରେ
କଳା ପିକରେ
ଲେଖା ଯାହା କପାଳରେ ।୨୯।

ଫୁଲୁଣିଆ କଥାମାନ
ଶୁଣିବୁ ଦାଣ୍ଡରେ ଡେରିଲେ କାନ
କଳା ପିକରେ
ହେଲୁଣିକି ହୀନିମାନ ।୩୦।

ମାମୁଁ ଭଣଜା ବେଭର
ଶୁଣିଛୁ ପୁରଣେ ବାରକୁ ବାର
କଳା ପିକରେ
ଅନ୍ୟାୟ ଲାଗି ସଂହାର ।୩୧।

ବଣ ସବୁ ପଦା କରି
ବୋହୁଛନ୍ତ ଲୋକେ ମନ୍ତ୍ରୀକି ଧରି
କଳା ପିକରେ
ତୋଳିବୁ ଘର କିପରି ।୩୨।

ହେଲୁକି ତୁ ଏବେ କାଲ
ନାରୀ ଧର୍ଷଣରେ ଲାଗିଛି ପାଲ
କଳା ପିକରେ
ପକାଇଥା କାନେ ତାଲ ।୩୩।

କି କହିବି ଏବ ରୀତି
ଶୋଷଣ ମାରଣ ଧର୍ଷଣ ନିତି
କଳା ପିକରେ
ନ ରଖିବୁ ମନେ ପ୍ରୀତି ।୩୪।

ଲାଞ୍ଚ ମିଛ ଗଲ ବଢ଼
ଗରୀବ ବାଁପୁଡ଼ା ପିଂଧୁଛି ଧଢ଼
କଳା ପିକରେ
କେ ହଲାଏ ହାତେ ଘଢ଼ ।୩୫।

ଜାଲିଆତି କାରବାର
ଅଛିକି ନମ୍ବର ନୂଆ ମୁଦ୍ରାର
କଳା ପିକରେ
ଦେଖି କରନ୍ତୁ ବିଚାର ।୩୬।

କୋରିଆ ଦେଶେ ତିଆରି
ହେଉଛି କାହିଁକି କହ ବିଚାରି
କଳା ପିକରେ
ଯାଉଛି ମୂଲ ବାହାରି ।୩୭।

ଦେଶର ଅବସ୍ଥା ଯାହା
କବି ଲୋକନାଥ ଲେଖିଲେ ତାହା
କଳା ପିକରେ
ସାକ୍ଷୀ କରି ଚଉବାହା ।୩୮।

ବିଚିତ୍ର ଏ ରଜନୀତି
ଶୁଣିଲେ ଦେଖିଲେ ଲାଗୁଛି ଭୀତି
କଳା ପିକରେ
କି ହେଲା ଦେଶର ରୀତି ।୩୯।

ସ୍ୱାଧୀନତା ସଂଗ୍ରାମର
ନଜାଣି କେତେକ 'ସ' ଅକ୍ଷର
କଳା ପିକରେ
ରଣାଙ୍ଗନେ ଆଗଭର ।୪୦।

କ୍ଷମତାରେ ହୋଇ ବଶ
ଶାସନେ ପ୍ରବେଶି କଲେଣି ଧ୍ୱଂସ
କଳା ପିକରେ
ପ୍ରକୃତି ଯା'ର ତାମସ ।୪୧।

ଚାଲିଛି କେତେ ବିଚାର
ନ ଭବି ଦେଶର ଋଣ ବେଭର
କଳା ପିକରେ
କେବଳ ବଶ ଆଶାର ।୪୨।

ଗାନ୍ଧିଜୀଙ୍କ ଅଶ୍ରୁଧାର
ପଡୁଛି ଦେଶରେ ବାରକୁ ବାର
କଳା ପିକରେ
ତେଣୁ ଲୋକେ ନାରଖାର ।୪୩।

ନ ମାନି ଗାନ୍ଧୀ ବଚନ
ଇଚ୍ଛା ଅନୁସାରେ ଚଳେ ଶାସନ
କଳା ପିକରେ
ଗରୀବ ହେଲା ଉଚ୍ଛନ୍ନ ।୪୪।

ମଦ ଭଟି ଗାଆଁ ଗାଆଁ
ବୁଲିଗଲେ ଥରେ ହେବୁ ଛାନିଆଁ
କଳା ପିକରେ
କି ହେଲା ଆଜି ଦୁନିଆଁ ।୪୫।

୦ ୦ ୦

## ମଦ

ବିକ୍ରେତା ହେଉଛି ଧନୀ ମଦ୍ୟପ ଉଜ୍ଜଡ
ମଦ ପିଇ ସରିଯାଏ ଯେତେ ଉପାର୍ଜନ ।

କାହିଁକି ଏହି ଅଭ୍ୟାସ କମିଯାଏ ଆୟୁ
କେତେବେଳେ ଉଡ଼ଯାଏ କା'ର ପ୍ରାଣବାୟୁ ।

ଉଚ୍ଚ କୁଳେ ଜନ୍ମ ପାଇ ହୀନରୁ ନୀଚର
ମଦ ପାଣି ପିଇଦେଲେ କି ସୁଖ ଲୋକର ।

କୁଟୁମ୍ବରେ ଗଣ୍ଡଗୋଳ ମଦୁଆ ଦାଣ୍ଡରେ
ଯାଉଛି ସମ୍ମାନ ସିନା ଜୀବନ କାଳରେ ।

କିଏ କେତେ ନିନ୍ଦା କରେ ତୋହର ପଛରେ
ଦିନେହେଲେ ପଡ଼ଥିବ ଅବଶ୍ୟ କାନରେ ।

ଏତେ ଅଲାଜୁକ ହେଲୁ, ନାରୀ ଠାରୁ ହୀନ
ଶୁଣି ନିନ୍ଦା ଅପମାନେ ଯାଉଅଛୁ ଦିନ ।

ଦେଇଛନ୍ତି ପରମେଶ ବିଚାର ଶକତି
ଅକର୍ମେ ପଶି କେବେ କି ପାଇବୁ ମୁକତି ।

ପ୍ରାଣୀ ମାତ୍ରେ ପାଉଛନ୍ତି ଜୀବନ ମରଣ
ଏଣ୍ଡି ପୋକର ରହସ୍ୟ କଲୁ କି ସ୍ମରଣ ।

ସୃଷ୍ଟି କାଳରୁ ରହିଛି ଭଲ ମନ୍ଦ ବାଣୀ
ରହୁଅଛୁ ପଶୁପରି ସବୁ ଜାଣି ଜାଣି ।

ଧିକ ଧିକ ତୋ ଜନମ ଧିକ ତୋ ଜୀବନ
ପଶୁ ପରି ଆଚରଣ ନ କଲୁ ଚିନ୍ତନ ।

ମଣିଷ ଜନମ ପାଇ ମଣିଷର କର୍ମ
କଲେ ସିନା ରହିଥିବ ପାଖେ ତୋର ଧର୍ମ ।

ଅବାଟେ ପଶିଲେ ଥୁଆ
ହେଉଅଛି ଦଣ୍ଡ (ଈଶ୍ୱର)
ବୁଝିବ କି କେତେବେଳେ
ଜଗତେ ପାଷଣ୍ଡ (ନାସ୍ତିକ) ।

ବିଂଶ ସାଲୁ ମଦ ଦେଶୁଁ ଉଠାଇବା ପାଇଁ
କାଗଜେ ରହିଲା ସିନା ଉଠାଗଲା ନାହିଁ ।

ଯାହି ଯାହି ମଦ ବିକା ଚାଲିଛି ଦେଶରେ
ଗାନ୍ଧିଜୀଙ୍କ ପରାମର୍ଶ ଅଛି ପୁସ୍ତକରେ ।

ମାଗୁ ଭିକ ଅବା ଯେତେ ମଣିଷ ଦେଶର
କହିଛନ୍ତି 'ମଦ ଉଠୁ' ବୋଲି ବାରମ୍ବାର ।

ଯାହୁଁ ଯାହୁଁ ଗଲା ବିତି ସତୁରି ବରଷ
ସେ ବିଷୟ ଚେତୁ ନାହିଁ କାହାର ମାନସ ।

ଦେଶର ମଙ୍ଗଳ ପାଇଁ ଚିନ୍ତା ଥିଲେ କା'ର
ବହୁଦିନୁ ଉଠିଥାନ୍ତା ମଦ କାରବାର ।

ଶାସକ ମଦ୍ୟପି ହେଲେ ଶାସିତର କ୍ଳେଶ
ଏ କଥା କାହାର ମନେ ପଶୁନାହିଁ ଲେଶ ।

ହଜାର ହଜାର ପ୍ରାଣ ଯାଉଛି ବୃଥାରେ
କୋଟି କୋଟି ଟଙ୍କା କ୍ଷତି ବସ ଚାଳନାରେ ।

କେତେ ଟଙ୍କା ଆସୁଅଛି ମଦ ନିଲାମରେ
କେତେ ଟଙ୍କା କ୍ଷତି ଏଣେ ବସ୍ ଚାଳନାରେ ।

ଏ ହିସାବ କରୁଥିଲେ ଶାସକ ଦେଶର
ବହୁକାଳୁଁ ଉଠିଥାନ୍ତା ମଦ କାରବାର ।

ନ ଜାଣି ଘୋଟକ ଚଢ ଧଇଲେ ଲଗାମ
ଆରୋହୀର ମୃତ୍ୟୁ ସିନା ତା'ର ପରିଣାମ ।

x x x x x

ଭଗବାନ ନାମ କରି କୀର୍ତ୍ତନ
ବଳ ଥାଉ ଥାଉ ଯାଉ ଜୀବନ
ନେବା ପାଇଁ ଲୋକ ସଦା ତତ୍ପର
ଦେବାପାଇଁ ଭବେ କେ ଆଗଭର ?

ବିଚିତ୍ର ସଂସାର ରୀତି
ଦେଖି ଦେଖି ପୁଣି ଭାବି ଭାବି ମନେ
ଆସୁଛି ନିରତ ଭୀତି ।

ଉପକାର ପାଇ ଅପକାରରେ
ନିରନ୍ତର ଆଶା ପୋଷି ମନରେ
ହୁଅନ୍ତି କୃତଘ୍ନ ଛାଡ଼ଣ ଲାଜ
ଧନ୍ୟ ଧନ୍ୟ ଧନ୍ୟ ନବ୍ୟ ସମାଜ

ଭୁଲି ଅତୀତର କଥା
ନ୍ୟାୟକୁ ବରଜି ଅନ୍ୟାୟେ ପଶନ୍ତି
ଲିଭିଛି ଏ ଦେଶ ପ୍ରଥା ଯେ ।

କିଏ ଜାଣୁଅଛି କେଉଁ ମୁହୂର୍ତ୍ତରେ
ତା'ର ପ୍ରାଣବାୟୁ ଯିବରେ ଉଡ଼
ଥଳି ଥଳି ଟଙ୍କା ଅଜାଡ଼ିଲେ ଅବା
ଆସୁଛି କି କିଏ ଆଉ ବାହୁଡ଼ ?

ପଶୁ ପକ୍ଷୀ ଅବା କୀଟ ଜନ୍ମ ପାଇ
କିଏ କେଉଁଆଡ଼େ ସଳୁଛି ଯାଇ
ଶ୍ରେଷ୍ଠ ଜୀବନଟି ହେଉଛି ଅସାର
ସଂସାର ରହସ୍ୟ ନ ବୁଝି ଭଲ ?

ହାତରେ ନଥାଏ ଅଣ୍ଟାରେ ନଥାଏ
ଅରଜିବା ଧନ ପାହୁଲଟିଏ
ତେବେ କାହା ପାଇଁ ପାପାଶାରେ ଧାଇଁ
ନିନ୍ଦା ଶୁଣୁଛନ୍ତି ନର ନାରୀଏ ?

ପ୍ରଭୁ ହେ ! ବିଚିତ୍ର ତୁମର ସୃଜନ
ଏ ଘଡ଼ର କଥା ସେ ଘଡ଼କି ନାହିଁ
କଳକି କିଏ ସେ ଚିନ୍ତନ । (ଘୋଷା)

x x x x x

ନଡ଼ଆ ଭିତରେ ପାଣିକି ଟିଆରି
ତା ପରେ ସୃଜନ ଧବଳ ରସ
ପଣସ ଭିତରେ ମଂଜିଟି ଉପରେ
ଦେଇଛ ଘୋଡ଼ାଇ ହଳଦୀ କସ
ପ୍ରଭୁ ହେ ! ଏହିପରି ଏହିପରି
ଦେଖୁଅଛି ନିତି ମାଗ ଧର୍
ପ୍ରଭୁ ହେ ! ନୁହଁକି ବିଚିତ୍ର ସୃଜନ ?
ବିବେକକୁ ଛାଡ଼ ସ୍ୱାର୍ଥର ପଛରେ
ମଣିଷର ଦେଖ ଧାବନ ।

○ ○ ○

## ନଡ଼ଆ ଗଛ

ଶାଖାହୀନ ସିନା ନଡ଼ଆ ତରୁ
ଗଣ୍ଡି ମୋଟ ହୋଇ ଅଗଟି ସରୁ ।
ଦୀର୍ଘ ପତ୍ର ଯୁକ୍ତ ବାହୁଙ୍କା ସାନ
ଜାଣେଣି କାଠକୁ ତା ପ୍ରୟୋଜନ ।
ପତ୍ରରୁ ଖଡ଼କା କରି ବାହାର
ଭଡ଼ା ଭଜି ଲାଗି ତା ବ୍ୟବହାର ।
ବାୟା ଚଢ଼େଇଟି ହେଲେହେଁ ସାନ
ପ୍ରଭୁଙ୍କ ନାମକୁ କରିଣ ଗାନ ।
ନଡ଼ଆ ପତର ଚିରି ଅଣ୍ଡରେ
ବାନ୍ଧୁଅଛି ବସା କଉଶଳରେ ।
ବର୍ଷା ପବନକୁ ନାହିଁ ଖାତର
ପୂର୍ବ ତପସ୍ୟାରୁ ପାଇଛି ବର ।
କେଶର ଭିତରୁ ଫୁଟଇ ଫୁଲ
କେଉଁ ଗଛ ହେବ ତା ସଙ୍ଗେ ତୁଲ ।
କ୍ରମେ ହେଉଅଛି ଗୋଟମା କସି
କେବେ କେବେ କିଛି ପଡ଼ଇ ଖସି ।
ବଡ଼ ହେଲେ ତାକୁ ବୋଲୁ ପଇଡ଼
ମାତ୍ର ନୁହଁଇ ତା ବଂଶ କରିଡ଼ ।
ରହିଛି ଭିତରେ ବିଶୁଦ୍ଧ ଜଳ
ବହୁ ରୋଗୀଙ୍କର ହୁଏ ସମ୍ବଳ ।
ସେ ଜଳରୁ ପୁଣି ସୁସ୍ୱାଦୁ ରସ
ହେଉଛି ଉତ୍ପନ୍ନ ତୋଷେ ମାନସ ।
ବିଚିତ୍ର ସୃଜନ ବିଚିତ୍ର ସୃଷ୍ଟି
ଏଥିପ୍ରତି ପଡୁ ଲୋକର ଦୃଷ୍ଟି ।
ସବୁ ଗଛ ଠାରୁ ଉଚ୍ଚେ ଅଧିକ
ଏ ଗଛର ଗୁଣ ବୁଝୁ ନାସ୍ତିକ ।
ତୁଚ୍ଛାକୁ ଦେଖାନ୍ତି ଲୋକେ ଗରମା
ନ ଜାଣି ନ ଭାବି ଈଶ ମହିମା ।

x x x x x

ଆସିଅଛୁ ଖାଲି ପାଣିରେ (ହାତରେ)
ହସୁଛନ୍ତି ପିଲେ ଖୁସିରେ ।
ଫେରୁଅଛୁ ଶୂନ୍ୟ କରରେ
ଝରୁଛି ଲୋତକ ନେତ୍ରରେ ।
ବିଚିତ୍ର ଦୁନିଆଁ ରହସ୍ୟ
ମନେ ପଡୁଥିବ ଅବଶ୍ୟ ।

ଗୋଟିଏ ମାଆର-ସନ୍ତାନ
ପାଆନ୍ତିକି ଏକା ସମ୍ମାନ ।

ପୂର୍ବ ପାପ ପୁଣ୍ୟ ଫଳରୁ
ଭୋଗୁଛୁ ମନୁଷ୍ୟ ଜନ୍ମରୁ ।

କିଏ ରୋଗୀ କିଏ ନିରୋଗ
କେତେବେଳେ ତା'ର ବିୟୋଗ ।

କିଏ ଜାଣୁଅଛି ଆଗରୁ
ଜାଣିଥିଲେ ଗାନ୍ଧୀ ପୂର୍ବରୁ ।

ନ ପଢ଼ ଗାନ୍ଧିଜୀ ଜୀବନୀ
କଷଣ ଭୋଗୁଛି ଅବନୀ ।

ପଢ଼ାଅ ପିଲାଙ୍କୁ ହସାଇ
ଗାନ୍ଧିଜୀ ଆଦର୍ଶ ଶିଖାଇ ।

ଦେଖୁଛ ଦୁନିଆଁ ରୀତିକି
ଛାଡ଼ୁଛ ଦେଶର ପ୍ରୀତିକି ।

ପାଇଥିଲା ଧ୍ୱଂସ ଜର୍ମାନ,
ଋଷିଆ, ଇଟାଲୀ, ଜାପାନ ।

ନିଜ ଦେଶ ଗଢ଼ ଆମକୁ
କୋଟି କୋଟି ଦେଲେ ଋଣକୁ ।

ନୁଆଁଇ ମସ୍ତକ ଆମର
ଗୌରବ ଯାଇଛି ଦେଶର ।

ଧିକ ଧିକ ଆମ ଶାସନ
ଛୟାଳିଶି ବର୍ଷ ପୂରଣ ।

ତିନି ଲକ୍ଷାଧିକ ଋଣରେ
ବୁଡ଼ିଲା ଅଛୁଛି ମନରେ ।

⊙ ⊙ ⊙

ଆଜି ଅଛ କାଲି ମୃତ୍ୟୁ ଦୁନିଆଁର ନୀତି
ଦେଖୁଛନ୍ତ ଜନଗଣ ଜୀବନରେ ନିତି ।

କିହେବ ପଢ଼ିଲେ ଗୀତା ଅଥବା ପୁରାଣ
ଭବିଲା କି ଦୁଃଖେ ଯିବ କିପରି ପରାଣ ।

ଜୀଇଁଥିବା ପାଏ ରୋଗ ରହିଛି ଲୋକକୁ
କିପରି ପାଇବ ରକ୍ଷା ପଚାର ମନକୁ ।

କ୍ଷମତା ଅଥବା ଆଶା ପୋଷିଲେ ହୃଦୟେ
ସରିବ କି ଦିନଗତି କାହାର ନିର୍ଭୟେ ।

ନାନା ଚିନ୍ତା ମାଡ଼ବସି ଘାଣ୍ଟୁଛି ମନକୁ
କରିଯାଅ କର୍ମ ଭବେ ପୁଚ୍ଛି ବିବେକକୁ ।

କହନ୍ତି ମହାତ୍ମା ଗାନ୍ଧୀ ବିବେକ ଈଶ୍ୱର
ଚାଲୁଥାଅ କର୍ମ ପଥେ ଭବି ନିରନ୍ତର ।

କେତେଦିନ ଚାଲିବରେ ଅନ୍ୟାୟ ପଥରେ
ଆପଣା କର୍ତ୍ତବ୍ୟ ଦୃଢ଼ ଏ ମର ଭବରେ ।

ନ୍ୟାୟ ଅନ୍ୟାୟ ବିଚାର ଈଶ ଦରବାରେ
ସରବେ କରନ୍ତୁ ହେତୁ ଚିତ୍ତେ ବାରେ ବାରେ ।

ପାପ କର୍ମ ଲିପ୍ତ କେତେ ଦିନ ଭବେ
ବିବେକକୁ ପଚାରିଲେ ଜାଣିବେ ସରବେ ।

ବିବେକ ହିଁ ଭଗବାନ ଏହି ଗାନ୍ଧୀ ବାଣୀ
ପାସୋରୁଛ ମନୁ ସବୁ ଜାଣି ଜାଣି ।

ପାପାର୍ଜିତ ଧନ କା'ର ରହିନାହିଁ ଭବେ
ଚାହିଁଆଡେ ନୟନକୁ ବୁଲାଅ ସରବେ ।

⊙ ⊙ ⊙

## ବନ୍ଦନା

ଉଠ ଉଠ ମାଆ ଭଉଣୀ
ଉଠ ପାହିଲା ରାତି
ଉଡ଼ିଲେଣି ଏବେ ଆକାଶେ
କୁଆ ଜଗଲପାତି ।୧।

ନିଜ ନିଜ ଧନ୍ଦା ଧରିବା
ଚିନ୍ତି ପରମେଶ୍ୱର
ଯାହାର ଆଦେଶ ପାଳଇ
ଧ୍ରୁବିଶାଳ ସାଗର ।୨।

ଦିନ ପରେ ଗତି ଆସଇ
ଯା'ର ଆଦେଶ ପାଇ
ଚଂଦ୍ର ସୂର୍ଯ୍ୟ ଘୂରି ବୁଲନ୍ତ
ସଦା ଆକାଶେ ଥାଇ ।

ନାନା ଜାତି ଫୁଲ ଫୁଟୁଛି
ନାନା ବରଣ ଧରି
ସୁଖ ଦୁଃଖ ଲୋକ ଭୋଗୁଛି
ନିଜ କର୍ମ ଆଦରି ।

ଉଠୁଛି ପଡୁଛି ମଣିଷ
ଯା'ର ବିଧାନ ବଳେ
ହସୁଛି ବା କେବେ କାଂଦୁଛି
ନିଜ କରମ ଫଳେ ।

କାର୍ଯ୍ୟବ୍ୟସ୍ତ ଅନବରତ
ଯା'ର ନାହିଁ ବିଶ୍ରାମ
ସ୍ମରୁଥିବି ଚିତ୍ତ ଭିତରେ
ମୋଦେ ମୁଁ ଅବିରମ ।

ଋତୁ ପରେ ଋତୁ ଆସୁଛି
ନିତି ପଡେ ନୟନେ
ଭୁଲିବି କିପରି ତାହାଙ୍କୁ
ଏହି ଛାର ଜୀବନେ ।

ଚୋଲପ ମଲ୍ଲୀ କି ତୁଳନା
କେବେ କଳଜି ବସି
ବିତରି ସୁରଭି ଦିନକେ
ଗଛୁଁ ପଡୁଛି ଖସି ।

ବୁଝାଇ ଦେଉଛି ଲୋକକୁ
ଭବେ ଅଳ୍ପ ସମୟ
ରହି ଖସିଯାନ୍ତି ସକଳ
ନେଇ ଚିର ବିଦାୟ ।

ବିଚିତ୍ର ସୃଜନ ଦର୍ଶନ
କରି ମାନବତତି
ମରୀଚିକା ପଛେ ଦଉଡ଼
ଦୁଚ୍ଛା ଦିନ ସାରନ୍ତି ।

ଅଗଣିତ ବୃକ୍ଷଲତା ଯେ ସର୍ଜନା କରି
ପ୍ରାଣୀ ହିତେ ଦେଖ ଧରା ରଖିଅଛି ଧରି ।
ଶିଖଣ୍ଡିନୀ (ଦ୍ରୌପଦୀ) ଅର୍ତ୍ତନାଦ
ପଡନ୍ତେ ଶ୍ରୁତିରେ
ସହସ୍ର ସହସ୍ର ବାସ ଦେଲା ଯେ ଅଚିରେ ।
କୁମ୍ଭୀମୁଖୁଁ (କୁମ୍ଭୀର) ଉଦ୍ଧରିଲା
କୁମ୍ଭୀକୁ (ହାତୀ) ଯେ ଖରେ
ଗର୍ବ ଗଞ୍ଜନ କେତନ ସଦା ଯା ହସ୍ତରେ ।
ନୃସିଂହ ବରାହ ରୂପ କରିଯେ ଧାରଣ
କରିଥିଲେ ହିରଣ୍ୟର ବକ୍ଷ ବିଦାରଣ ।
ଇଂଦ୍ରାଦି ଦେବତା ବୃନ୍ଦ ଯାହାଙ୍କୁ ଅନିଶ
କରୁଛନ୍ତି ସେବା ନିତି ସେ ମୋ ପ୍ରାଣଈଶ ।
ତାରିବେ ଭବସାଗରୁ ବୋଲି କରି ଆଶା
ବନ୍ଦୀ ତାଙ୍କ ଚରଣାବ୍ଜେ
ମେଣ୍ଟୁ ମୋ ପିପାସା ।

ଯୌବନ ଭଂଗିମା କେତେ ଦିନ ପାଇଁ
ଯା'ର ପଛେ ପଛେ ଜରା ଆସେ ଧାଇଁ ।
ଦିଶଇ ବିକୃତ ଯେତେ ଅବୟବ
କରିଦିଏ ଚୂର୍ଣ୍ଣ ଚୂର୍ଣ୍ଣେ ଗର୍ବ ତବ ।
ଯାହାକୁ ଚିଆରୁଥିଲ ତୁମେ ଦିନେ
ସେ ତ ଶୁଣୁନାହିଁ ତୁମ କଥା ଚିନେ ।
ଦେଖ ଚଉଦିଗେ କୃତଘ୍ନତା ପଶି
ଲୋକର ମହତ୍ତ୍ୱ ଦେଉଛି ବିଧ୍ୱଂସି ।
ବିଶ୍ୱାସଘାତକ ଟେକିଲେଣି ମୁଣ୍ଡ
ମିଛ ଗଢିବାକୁ ନ ଡରେ ଯା ତୁଣ୍ଡ ।
ଓଲୋମ ବିଲୋମ ସତତ ଦୁନିଆଁ
ଟିକକ କଥାରେ ଜଳୁଅଛି ନିଆଁ ।
ହେଲେ ଅଳହୁଆ ଦୁଃଶ୍ଚିନ୍ତା ପ୍ରବେଶ
ନ ଆସଇ ନିଦ ନୟନକୁ ଲେଶ ।
ଉପୁଜି ତହିଁରୁ ନାନାବିଧ ରୋଗ
ଆଣଇ ଅବଶ୍ୟ ପ୍ରାଣେ କ୍ଲେଶ ଭୋଗ ।

ସେତେବେଳେ ସବୁ ମଣିବ ଅସାର
ବୃଥା ହେବ ଯେତେ ତୁମ କାରବାର ।

କା'ର ଲୀଳାଭୂମି ନୁହଇ ସଂସାର
କରନାହିଁ କେବେ ବିଳୁଆ ବିଚାର ।

ହାତେ ମାପି ଦେଇ ଚଳିବ ଖଣ୍ଡେ
ବିଚରିବ ସଦା ଜୀବନଟା ଦଣ୍ଡେ ।

ଭୋଗ ବିଳାସରେ ଦିଅନାହିଁ ମନ
ମହତେ ଖଟାଅ ଉପାର୍ଜିତ ଧନ ।

ଗ୍ରାସିଅଛି ଯା'କୁ ମାୟା ମୋହ ଭବେ
ଅଛିକି ତାହାର ହୃଦେ ଶାନ୍ତ ଲବେ ?

ଆପଣା ଛିଦ୍ରକୁ ଘୋଡାଇ ଜୀବନେ
ନ ଖୋଜ ପରର ଛିଦ୍ର କେବେ ମନେ ।

ଦିନର କରମ ବିଚାର ଶୟନେ
ଭୁଲ ଥିଲେ କର ଯତ୍ନ ସଂଶୋଧନେ ।

କର୍ତ୍ତବ୍ୟ କର୍ମରେ ନହୁଅ ବିମୁଖ
ଅଭିଳାଷ ଥିଲେ ପାଇବାକୁ ସୁଖ ।

ବିଚିତ୍ର ନିରତ ଦୁନିଆଁ ବେଭର
ହୃଦ ଦେଖି ଦେଲୁଁ ହୁଅ ହୁସିଆର ।

ଟାଣୁଅଛି ଯା'କୁ ସ୍ୱାର୍ଥର ଦଉଡ
ପବିତ୍ର କଥା ସେ ଯାଉଅଛି ହୁଡ ।

ଯାହାକୁ ମଣୁଛ ହୃଦୟର ମଣି
ସେହି ପରିଣାମେ ତୁମ କାଳ ଫଣୀ ।

ଘାରଇ ଯାହାକୁ ଅବିରଳ ଲୋଭ
ଅକର୍ମ କରଣେ ନାହିଁ ତାର କ୍ଷୋଭ ।

ଧନ ଧନ ବୋଲି ଲୋକ ହୋଇ ବାଇ
କୁଳର ଗୌରବ ଦିଅନ୍ତ ବୁଡାଇ ।

ଧନ ଲାଗି ହୃଦେ ଜନ୍ମିଲେ ନୈରାଶ୍ୟ
କଳେବର ଜୀର୍ଣ୍ଣ କି ବିବର୍ଣ୍ଣ ଆସ୍ୟ ।

ବହି ଯାଉଅଛି ଜୀବନର ସୁଅ
ଗଡାଉଛି ନିତି କିଏ କେତେ ଲୁହ ।

ପରସ୍ୱ ହରଣେ ନଜର ସତତ
ନ ଚିନ୍ତେ କିଏସେ ଭୂତ ଭବିଷ୍ୟତ ।

ପକାଇଛି ସ୍ୱାର୍ଥ ଜାଲ ଚରିଆଡେ
ଛପି ରହି ଏଣେ ଲାଳସା ଉହାଡେ ।

ଶଠତା ଲଗାଇ ମସ୍ତକେ ମୁକୁଟ
ଦେଉଅଛି ଖଂଜି ନାନା ନଟକୁଟ ।

ପୁଣ୍ୟର ତଉଲ ପାପ ନିକିତିରେ
କେବେ ବାହାଦୁରୀ ଦେଖାଏ ପ୍ରୀତିରେ ।

ଦେଖାଉଛି ହିଂସା କେତେ ଅଭିନୟ
ନିରତ ମନକୁ କରୁଛି ଅଥୟ ।

କୃତଘ୍ନତା ଚିପି ଦେଉଛି ସଂସାର
ଚଉଦିଗେ ମାଡ଼ ଯାଉଛି ଅନ୍ଧାର ।

ହାଟ ବାଟ ଘାଟେ ମିଥ୍ୟାର ପସରା
ବାନ୍ଧ ବସିଅଛି ସଦାଗର ଧରା ।

ଚତୁର ପଣରେ ଜଟିଆ ଲଗାଇ
କୁଟୀଳତା କରେ ନିରୀହକୁ ବାଇ ।

ଯାଉଛି ଜଗତୁଁ ଉଭେଇ ବିଶ୍ୱାସ
ସକଳ ହୃଦୟେ ଉପୁଜଇ ତ୍ରାସ ।

ହେଉଅଛି ଚୂନା ଦାଉ ଗରବର
ତୁଚ୍ଛାରେ କିଏ ବା ହୁଏ ଫରଫର ।

କିଏ ବା ଧନର ବଢମା ଦେଖାଇ
କହୁଅଛି କଥା ତୁହାଇ ତୁହାଇ ।

କାନକୁହା କେତେ ଟେକିଲେଣି ମୁଣ୍ଡ
ବିଛୁଡ଼ର ଶୁଣ୍ଢ ପରି ତାଙ୍କ ତୁଣ୍ଡ ।

ଦେଖାଇ ହୁଏ କେ ନିଜ ବାହୁବଳ
ପରିଣତି ଯା'ର ବିଷମୟ ଫଳ ।

ଭାଗ୍ୟ ପ୍ରତିକୂଳ ହେଲେ ମଣିଷର
ଅନୀତିରେ ପଶି ସିନା ନିରନ୍ତର ।

୦ ୦ ୦

କୃଷ୍ଣ ହେ, ତୁମ ଲୀଳା ବିଚିତ୍ର (ଘୋଷା)

ଦେବକୀ ଗର୍ଭରୁ          ବନ୍ଦୀଶାଳେ ଜନ୍ମି
ନନ୍ଦ ରଜା ଘର କଲ ପବିତ୍ର ।
କୃଷ୍ଣ ହେ ....

ଯମୁନା କୂଳରେ          ଗୋପୀଙ୍କ ମେଳରେ
କଲ ଜଳକେଳି ବାହ୍ମି ବହିତ୍ର ।
କୃଷ୍ଣ ହେ ....

ତୁମ ପଦାଘାତେ          ଶକଟା ଅସୁର
ଲଭିଲ ମରଣ ନୁହକି ଚିତ୍ର (ଆଶ୍ଚର୍ଯ୍ୟ) ।
କୃଷ୍ଣ ହେ ....

ଧରିଥିଲ ତୁମେ          ଅଂଗୁଳି ଅଗରେ
ଗୋବର୍ଦ୍ଧନ ଗିରି ନୁହକି ଚିତ୍ର ।
କୃଷ୍ଣ ହେ

ତୁମ ରୂପ ଦେଖି          ତୁମ ମାମୁଁ ମଲ
ଅର୍ଜୁନ ସଙ୍ଗରେ ବସିଲ ମିତ୍ର ।
କୃଷ୍ଣ ହେ ....

ଏକୁଟିଆ ଯୁଦ୍ଧେ     ବିନାଶିଲ ଚୈଦ୍ୟ (ଶିଶୁପାଳ)
ଧୂଆଁ ବାଣ ଛାଡ ଘୋଡାଇ ମିତ୍ର (ସୂର୍ଯ୍ୟ) ।
କୃଷ୍ଣ ହେ ....

ନେଇଛ ପରଣ          ବଳିଷ୍ଠ ବଳିର
ପାଦେ ଚିପି ଦେଇ ନୁହ କି ଚିତ୍ର ।
କୃଷ୍ଣ ହେ ....

ନଖରେ ବିଦାରି          ହିରଣ୍ୟକୁ ମାରି
ରଖିଲ କୀରତି ନୁହ କି ଚିତ୍ର ।
କୃଷ୍ଣ ହେ ....

କବି ଲୋକନାଥ          କରୁଅଛି ଅଳି
ବଦଳୁ ଦେଶର ଲୋକ ଚରିତ୍ର ।
କୃଷ୍ଣ ହେ ....



# ଷଷ୍ଠ - ସ୍ତବକ

ନାଗଲିଙ୍ଗ ଫୁଲ ଦର୍ଶନ କରି ଯେ
ବିଧାତା ବିଧାନ ନ ଘବେ ଲବେ,
ଅମନୁଷ୍ୟ ବୋଲି କାହାକୁ କହିବା
ପଶୁ ପକ୍ଷୀଠାରୁ ହୀନ ସେ ଭବେ ।

# ଚେତନାବଳୀ-୨

ପାଶ୍ଚାତ୍ୟ ଶିକ୍ଷାକୁ ପାଶ୍ଚାତ୍ୟ ସଭ୍ୟତା
ତା ସଙ୍ଗେ ମିଶିଲା ଏବର କ୍ଷମତା ।

ଗୁରୁଜନ ପ୍ରତି ଟିକେ ନାହିଁ ଭକ୍ତି
ପାଳଗୋଛା ପରି ବାହାରୁଛି ଯୁକ୍ତି ।

କୃତଘ୍ନତା ଆସି ଘରେ ଘରେ ପଶି
କୃତଜ୍ଞତା ସ୍ଥାନ ଦେଇଅଛି ଧ୍ୱଂସି ।

ଉପକାର ଲାଗି ଯାଉନାହିଁ ମନ
ଅପକାର ହୃଦ କରୁଛି ମନ୍ଥନ ।

ବିଧାତା ବିଧାନ ଛାଡ଼ଦେଇ ବଳେ
'କ୍ଷମତା ହାସଲ' ଇଚ୍ଛନ୍ତି କୌଶଳେ ।

ତେଣୁ ରମଣୀଙ୍କ ସ୍ଥାନ ସଂରକ୍ଷଣ
ଶାସକ ଗୋଷ୍ଠୀଏ କଲେଣି ଭୂଷଣ ।

ଗାନ୍ଧୀ ଉପଦେଶ ଶାସକେ ନଜାଣି
ଅଯଥାରେ କଳି ଆଣୁଛନ୍ତି ଟାଣି ।

କେତେ ହଣାହଣି କେତେ ମରାମରି
ଚାଲିଛି ଦେଶରେ ଦେଖୁଛୁ ଯେପରି ।

ଅଳ୍ପ ଦିନେ ଦେଶ ପଡ଼ବ ଭୁଷୁଡ଼
ଏ ଦେଶର ପାଠ ନ ଯାଅବେ ବୁଢ଼ ।

ମଇଳା କାଢ଼ବା ଏଣେ କ୍ଷୀର ଦେବା
ବାସନ ମାଜିବା ପୁନଶ୍ଚ ରାନ୍ଧବା ।

ଏ କାର୍ଯ୍ୟ କେବେହେଁ ନୁହଁ ପୁରୁଷର
ହେଲାକିରେ ବୁଦ୍ଧି ଭ୍ରଂଶ ଶାସକର ।

ଗାନ୍ଧୀ ଉପଦେଶ ଲୋଡ଼େ ଦେଶ ଆଜି
ଉଠନ୍ତୁ ଉଠନ୍ତୁ ଦେଶ ଛାତ୍ରରାଜି ।

ନୈତିକତା ହାନି କରିଛି କ୍ଷମତା
ଏକଥା କହିବ ଆଜି ବୃକ୍ଷଲତା ।

କ୍ଷମତା କ୍ଷମତା କରୁଅଛି ବାୟା
ମଦ ପାଣି ଟଙ୍କା ଶାସକର ଛାୟା ।

ଅତୀତରେ କେତେ ସଂଭ୍ରାନ୍ତ ରମଣୀ
ଯାଇଛନ୍ତି କୁଳୁ ଜାଣିଛି ଧରଣୀ ।

ଗାନ୍ଧଜୀ ଆମର୍ଶେ ବୋଲୁଅଛ କାଳି
କି ହେବ ଶେଷରେ ଜନ୍ମଦିନ ପାଳି ।

ଏ ଦେଶ ଧର୍ମରେ ଲଗାଇ କାଳିମା
ଦେଖାଇ ହେଉଛ ଆପଣା ବଡ଼ିମା ।

ବାଜୁ ବାଜୁ ଦେଶେ କୃଷ୍ଣଙ୍କର ଶଙ୍ଖ
ନ ଲଗାଅ ହିଂଦୁ ଧର୍ମରେ କଳଙ୍କ ।

ମର୍ଯ୍ୟାଦା ଯାଇଛି କେତେ ନାରୀଙ୍କର
ହିସାବ ଅଛିକି ଶାସକ ଗୋଷ୍ଠୀର ।

ପାସୋରି ଯାଇଛି ଅତୀତ ଘଟଣା
ଅବାଟରେ ପଶି ହେଉଅଛ ବଣା ।

ଆପଣା ଗୌରବ ନ ରଖିଲେ ଆପେ
ହେଉଛି ନିଷ୍ଫଳ ପଛେ ପରିତାପେ ।

କ୍ଷମତା ଲୋକକୁ ଆଣୁଛି ଓଟାରି
ଚାଲିଛି କୌଶଳ କିଛି ନ ବିଚାରି ।

ଅଛିକି କାହାର ମଣିଷ ପଣିଆ
ଏ ଆଚାର ଦେଖି ହସୁଛି ଦୁନିଆଁ ।

ନୁହଁ ବଡପଣ ବିଚାର ହୀନତା
ପ୍ରକାଶ ପାଉଛି କେବଳ ଲଘୁତା ।

କରୁଅଛି ଅନ୍ଧ ଆଜି ଏ କ୍ଷମତା
ଯାଉଅଛି ଲିଭି ହିନ୍ଦୁର ସଭ୍ୟତା ।

ଆଜି କୋଟିପତି କାଲିକି ଭିକାରି
ଏଥିପ୍ରତି ଦୃଷ୍ଟି ନପଡେ କାହାରି ।

ଆଜି ଯେ ଶାସକ କାଲି ସେ ଶାସିତ
ଓଲେମ ବିଲେମ ସର୍ବତ୍ର ବିଦିତ ।

ଭିକାରିକି ମୁଠେ ଦେବାପାଇଁ ଭାତ
ହାଣ୍ଡିକି କାହାର ଯାଉନାହିଁ ହାତ ।

ଗଲଣି ଉଭେଇ ଆସ୍ତିକତା ଆଜି
ବ୍ୟାପୁଛି ଚୌଦିଗେ ନାସ୍ତିକତା ରାଜି ।

ପୂର୍ବ ସିଦ୍ଧି ଯାହା ଅଛିକି ଦେଶରେ
ନୈରାଶ୍ୟ ପବନ ବହୁଅଛି ଖରେ ।

ନାସ୍ତିକତା ଯାଇ ବସୁଛି ଉପରେ
ଆସ୍ତିକତା ଖସି ରହିଲାଣି ଘରେ ।

ଅଛି କି ଭାବନା ଦେଶ ଲାଗି କାର
ଚଳିଛି କେବଳ କ୍ଷମତା ବିଚାର ।

ବ୍ୟର୍ଥେ ପରିଣତ ହୋଇଛି ଯୋଜନା
ତା'ର ସଫଳତା କରେ କେ କାମନା ?

ଆତ୍ମଘାତ କରୁଅଛି ଦିନୁଁ ଦିନ
କେହି ନ ଜାଣିଲେ ଜାଣୁଛନ୍ତି ଜନ ।

ନିମକ ହାରମ ନୁହଁକି ଏ ଦେଶ
ନମାନି ବଚନ ମହାତ୍ମାଙ୍କ ଲେଶ ।

ଆଫ୍ରିକାରୁ ତାଙ୍କୁ ଆଣିଲେ ଡକାଇ
କି ଯଶ ପାଉଛ ତାହାଙ୍କୁ ମରାଇ ।

ସର୍ବସ୍ୱ ବରଜି କେତେ ମାଡ ଖାଇ
କେତେ ସହିଥିଲେ କାରାଗାର ଯାଇ ।

ସତ୍ୟ ଅହିଂସାରେ ଆଣିଥିଲେ ଦେଶ
ତାଙ୍କ ଚିହ୍ନ କାହିଁ ଅଛିକିରେ ଲେଶ ।

ଅନୀତି ପସର ଦେଇଅଛ ବାଢ଼
ସତ୍ୟ ଅହିଂସାକୁ ଦେଇଛ ଉପାଡ଼ ।

ଚଉଦିଗେ ଦେଖି ସିନା ହଣାହଣି
ଅବା ମଦ୍ୟପାନେ ଲାଗେ ଝୁଣାଝୁଣି ।

ତାଙ୍କ ଉପଦେଶ ତାଙ୍କ ନିର୍ବାଚନ
ଜାଣିଛକି ପଦେ ଏବର ଶାସନ ।

କାହିଁ ଗଣ୍ଡଗୋଳ ବୃଥା ଖର୍ଚ୍ଚ ଅର୍ଥ
ଶାସକେ ସେସବୁ କରିଛନ୍ତି ବ୍ୟର୍ଥ ।

କୋଟି କୋଟି ଟଙ୍କା ସରୁଛି ଦେଶର
ପଡ଼ୁନାକି ଦୃଷ୍ଟି କେବେ ଶାସକର ।

ଗାନ୍ଧିଜୀ ନାଆଁରେ ଲଗାଇ କଳଙ୍କ
କଷା ଯାଉଅଛି ଅଙ୍କ ପରେ ଅଙ୍କ ।

କିଏ ନ ଦେଖୁଛି ବିଧାତା ବିଧାନ
ପ୍ରତି ମୁହୂର୍ତ୍ତରେ ଏ ସାରା ଜୀବନ ।

ତଥାପି ମଣିଷ ନଭାବି କିଂଚିତ
ରଖୁଛି କିପରି କୁକର୍ମରେ ଚିତ୍ତ ।

ଏ ଜାତି ମହତ୍ତ୍ୱ ଏ ଜାତିର ଧର୍ମ
ଯାଇଛି ପାସୋରି ଆଶ୍ରୟି କୁକର୍ମ ।

ଗାଉଅଛି ଗୀତ ଆମ୍ବଡାଳେ ପିକ
ସୁଲଳିତ କଣ୍ଠେ ବୋଲି ଧିକ ଧିକ ।

ଆସି ଖାଲି ହାତେ ଯାଉ ଖାଲି ହାତେ
ଧୂଳି ପକାଉଛୁ ଖାଉଥିବା ଭାତେ ।

ନ ବୁଝିଲେ ଜାଣି ଏତିକି ମଣିଷ
ପାଇବକି କେବେ ବିଧାତା ଆଶୀଷ ।

କି ବୋଲିବେ ଜନେ ଭବୁଁ ଗଲେ ଫେରି
ଅବା ପାଶେ କେହି ରହିଥିଲେ ଘେରି ।

ଏତିକି ବିଚାରି କରୁଥିଲେ କର୍ମ
ପାଖେ ପାଖେ ଥିବ ଅବିରମ ଧର୍ମ ।

ଏବ ନିର୍ବାଚନେ ଗାଆଁ ଭଗ ଭଗ
କେତେ ପ୍ରାଣହାନି ହେଲେ କେ ସଜାଗ ?

କୋଟି କୋଟି ଅର୍ଥ ହୁଏ ଅପବ୍ୟୟ
ଏଥିଲାଗି ଦାୟୀ ଶାସକ ନିଚୟ ।

ବିନା ଅପବ୍ୟୟେ ଦେଶ ନିର୍ବାଚନ
ହେବା ଲାଗି ପଗ ମହାତ୍ମା ଲେଖନ ।
ନୀତି ନିୟମକୁ ଦେଇଛନ୍ତି ଲେଖି
ଚଳିଛି ଶାସନ ତାହାକୁ ଉପେକ୍ଷି ।
ରହିନାହିଁ ଟାଣ ସୃଷ୍ଟିରେ କାହାର
ଏତିକି ମଣିଷ ନକରେ ବିଚାର ।
ରହିଥିଲା ଯିଏ ଦୋତାଲା କୋଠାରେ
ଦେଖୁନାହଁ କିଆଁ ଆଜି କେଉଁଠାରେ ?
ନ ବୁଝିବ ଯିଏ ନିଜର ଅନ୍ୟାୟ
ଶିଖାଇବ କିଏ ତାହାକୁ ଉପାୟ ।
ନେବ ନାହିଁ କିଛି ଯିବବେ ବାହାରି
କର ନିତି କର୍ମ ସୃଷ୍ଟିକି ବିଚାରି ।
ମଣିଷ ଜୀବନ ପାଚିଲା ପତର
କେବେ ଫେରିଯିବ ଲୋକ ଅଗୋଚର ।
ଗାନ୍ଧିଜୀ ଆଦର୍ଶ ଗାନ୍ଧୀ ଉପଦେଶ
ନାହିଁ ଏ ଦେଶରେ କେଉଁଠାରେ ଲେଶ ।
ଠକି ନେଇ ନେଇ ଘର ହୁଏ ପୂର୍ଣ୍ଣ
ଭାବୁନାହଁ କେବେ ଦିନେ ହେବ ଚୂର୍ଣ୍ଣ ।
ଆଣିଛୁ କଅଣ ନେବୁ ବା କଅଣ ?
ନଭାବି ଦେଖାଉ ସଦା ବଡପଣ ।
କେଉଁଠାରୁ ଆସି କେଉଁଠାକୁ ଯାଉ
ପୁଚ୍ଛି ବୁ ମନକୁ ବେଳ ଥାଉ ଥାଉ ।
ଏକୁଟିଆ ଆସି ଯାଉ ଏକୁଟିଆ
ଦେଖୁଅଛି ଧନୀ ଦେଖୁଛି ମୂଲିଆ ।
ଦେଖୁଛି ଶାସକ ଦେଖୁଛି ଶୋଷିତ
କ୍ଷମତାରେ ଥାଇ ତୁଚ୍ଛା ପୁଲକିତ ।
ଦେଖୁଛୁ ଆଲୋକ ଦେଖୁଛୁ ଅନ୍ଧାର
ଓଲେମ ବିଲୋମ ବିଧାତା ବିଚାର ।
ଜୀବ ଶ୍ରେଷ୍ଠ ବୋଲି ବାଜୁଛି ବାଇଦ
ରହି ନାହିଁ କା'ର ନିରତ ସମ୍ପଦ ।

ଦଇବ ହାତରେ ମଣିଷର କଂଟି
ପଳାଇବ ଦିନେ ରଖିଥିଲେ ସଂଚି ।
ଠକିଲେ ପରକୁ ଠକାମିରେ ପଡ
ଆସିଲେ ତା ବେଳ କରୁଥିବ ରଡ ।
ରହିଛି ବିବେକ ରହିଅଛି ବୁଦ୍ଧି
ବେଳ ଥାଉ ଥାଉ ଚିତ୍ତ କର ଶୁଦ୍ଧି ।
ପୂର୍ବ ସୁକୃତରୁ ମଣିଷ ଜନମ
ଭାବୁନାହଁ କେହି ହେବାକୁ ଅଧମ ।
ଦେଖିଛ ଯାହାକୁ ବାଟରେ ଘାଟରେ
ରଡ ଶୁଭିଲାଣି ତା'ର ମରଣରେ ।
ଧନ ପାଇଁ ଆଜି କେତେ ଟଣାଟଣି
ଭାଇ ଭାଇ ମଧ୍ୟେ ଦେଖୁ ହଣାହଣି ।

⊙ ⊙ ⊙

ପାଇଛ ବିବେକ ବିଚାର ବୁଦ୍ଧି
ଚିତ୍ତକୁ ସନ୍ତତ କରିବ ଶୁଦ୍ଧି ।
କପଟ ଆଚାର ନିରତ ମଦ
ନ ହେଲେ ବରଷା ଯେସନ ଖଦ ।
ସ୍ୱାର୍ଥକୁ ମନରୁ ଦିଅ ଫୋପାଡ଼
ଯଥା ଚଷା ଖଦୁଁ ଘାସ ଉପାଡ଼ ।
ସହନୀୟ ଶକ୍ତି ନାହିଁ ଯାହାର
ମଣିଷ ଜନମ ବୃଥା ତାହାର ।
ଗାଆଁ ଦଳ ଦଳ ନାହିଁ ଏକତା
ଦେଖିଲେହେଁ ଲୋକ ନାହିଁ ମମତା ।
ଦେଖିଛ ସରବେ ପାତି ମାଙ୍କଡ
ନୁହଁକିରେ ତା'ର ସାହସ ବଡ ?
ନଡରେ ମଣିଷ ନଡରେ ହାତୀ
ନଡରେ କୁରଙ୍ଗ ନଡରେ କାତି ।
ତାହାର ଏକତା ନାହିଁ କାହାର
ତା'ର ରଙ୍ଗ ନୁହଁ ସାନ ଆକାର ।

⊙ ⊙ ⊙

ଜନ୍ମ ହେବା ଦିନୁଁ ମଣିଷ
ଆସି ଖାଲି ହାତରେ
ନାନା ଅଭିନୟ କରୁଛି
ସଦା ଭବ ମଞ୍ଚରେ ।୧।

କିଶୋର, ଯୌବନ, ଜରାକୁ
ଲୋକ କରୁଛି ଭୋଗ
କା'ର ପ୍ରାଣବାୟୁ ଯାଉଛି
ଆସି କୌଣସି ରୋଗ ।୨।

ଯୌବନ ଗରିମା ନଥାଏ
କଲେ ପ୍ରବେଶ ଜରା
ନାନା ଅପବାଦ ସହୁଛି
ନିତି ଦେଖୁଛ ପରା ।୩।

ବଳ ବୁଦ୍ଧି ପୁଣି ଶକତି
ଏଣେ ଟଳେ ଲୋକର
ଅଶାନ୍ତ ବହ୍ନିର ଶିକାରେ
ପଡେ ଥରକୁ ଥର ।୪।

କେବେ କେବେ ମନେ ପଡ଼ଲେ
ଭବି କଥା ପୂର୍ବର
ଆପେ ଆପେ ଖସି ପଡ଼ୁଛି
ନେତ୍ରୁ ଲୋତକ ଝର ।୫।

ନଥାଏ କୁଟୁମ୍ବ ଆଦର
କିଏ ନଶୁଣେ କଥା
ବିଚିତ୍ର ରହସ୍ୟ ଦେଖିଲେ
ହୃଦେ ଲାଗଇ ବ୍ୟଥା ।୬।

ତେଣୁରେ ମଣିଷ ବିଚାରି
ସଦା ଚଳିବୁ ଭବେ
ଭବିଷ୍ୟକୁ ଦୃଷ୍ଟି ନଦେଲେ
ହଟହଟା ମାନବେ ।୭।

ସୃଷ୍ଟିକର୍ତ୍ତା ଦେଇ ଅଛନ୍ତି
ବୁଦ୍ଧି ପୁଣି ବିବେକ
ଜୀଇଁଥିବା ଯାଏଁ ରଖନ୍ତୁ
ଯିଏ ଯାହାର ଟେକ ।୮।

ନିନ୍ଦା ଅପବାଦ ନଶୁଣି
ଫେରିଯିବୁ କିପରି
ଏ ଚିନ୍ତା ସତତ ଆସିଲେ
ଯିବ ସହଜେ ତରି ।୯।

କେତେବେଳେ ପର ଦ୍ରବ୍ୟକୁ
ଟିକେ ଆଶା ନ କରି
କରମ କରିବୁ ଜୀବନେ
ସଦା ଭଜନା କରି ।୧୦।

ମଣିଷ ଜୀବନ ପାଇଛ
ଯାହା ଯୋଗୁଁ ଭବରେ
ସେ ନାମ ଛାଡ଼ଲେ ହୃଦରୁ
ରହିଥିବ ପଙ୍କରେ ।୧୧।

ରବି ଇନ୍ଦୁ ଠାରୁ ଆରମ୍ଭି
ସୁବିଶାଳ ସାଗର
ଯାହାର ଆଦେଶ ପାଳନ୍ତି
ହୁଏ ଦୃଷ୍ଟି ଗୋଚର ।୧୨।

ପାତିର ଏକତା ଦେଖିଲେ
ସର୍ବେ ହେବ ଚକିତ
ବିଧିର ବିଧାନ ରହିଛି
ଯୁଗେ ଯୁଗେ ବିଦିତ ।୧୩।

ନାଗଲିଙ୍ଗ ଫୁଲ କହୁଛି
ସବୁ ସୃଷ୍ଟି ରହସ୍ୟ
ଏକଥା ମଣିଷ ଭବିଲେ
ଚିତ୍ତ ଶୁଦ୍ଧି ଅବଶ୍ୟ ।୧୪।

ମହାବଳ ବାଘ ଡରୁଛି
ଦେଖି ବଳିଆ ବଣେ
ଚିନ୍ତା କରୁ କେବେ ମଣିଷ
ଘର ଅନ୍ଧାର କଣେ ।୧୫।

○ ○ ○

ଅଢେଇ ଦିନକୁ ଆସି
ଭବ ଜଳେ କେବେ ନଯିବୁ ଭସି
ବାଇମନରେ, ଛାଡବୁ କପଟ ରଶି ।

ପ୍ରାଣ ପକ୍ଷୀ ଗଲେ ଉଡ଼
ଫେରି କି ଆସିବ ଆଉ ବାହୁଡ଼
ବାଇମନରେ, ନଯାଉ କେ ଏହା ଛୁଡ଼ ।

ଧଇଲେ ବିଧାତା ନାମ
ମୁକତି ପାଇବ ଅବଶ୍ୟ ଧାମ (ଶରୀର)
ବାଇମନରେ, ହେତୁ ରଖ ଅବିରମ ।

⊙ ⊙ ⊙

ମରଣ ଦଉଡ଼ ବାନ୍ଧ ବେକରେ
ପାଉଛ ଜନମ ଭବ ମଞ୍ଚରେ
ପ୍ରାଣୀ ସକଳ
ନ ଦେଖୁଛି କିଏ ତା ଅବିରଳ ।

ତଥାପି ମଣିଷ ସ୍ୱାର୍ଥ ଜାଲରେ
ହେଉଅଛି ଘାଣ୍ଟି ଅଜାଣତରେ
ନ ଭବି ଲବେ
ସବୁ ଦେଖିଲେହେଁ ନିରତ ଭବେ ।

କଳ୍ପନା ଜଡ଼ିତ ହେଲେ ମଣିଷ
ଭୋଗୁଥିବ ଦୁଃଖ ଭବେ ଅନିଶ
ଶିଖି ମଣିଷ
ରଖୁଥାଉ ଚିହ୍ନି ଅମୃତ ବିଷ ।

⊙ ⊙ ⊙

ନାଗଲିଙ୍ଗ ଫୁଲ ଦର୍ଶନ କରି ଯେ
ବିଧାତା ବିଧାନ ନ ଭାବେ ଲବେ,
ଅମନୁଷ୍ୟ ବୋଲି କାହାକୁ କହିବା
ପଶୁ ପକ୍ଷୀଠାରୁ ହୀନ ସେ ଭବେ ।

ପାଇଛ ବିବେକ ବିସ୍ତର ବୁଦ୍ଧି
ଚିତ୍ତକୁ ସନ୍ତତ ରଖିବ ଶୁଦ୍ଧି ।

କପଟ ଆଷର ସନ୍ତତ ମଦ
ନ ହେଲେ ବରଷା ଯେସନ ଖଦ ।

ଆଧୁ ଭଲ ବୁଦ୍ଧି ଚିତ୍ତର ଶୁଦ୍ଧି
ଜାଣି ଜାଣି ଲୋକ ନ ଲୋଡ଼ୁ ଋଦ୍ଧି ।

ହାତ ଖାଲି ଥାଇ ଆସିଛୁ ଭବେ
ନ ଜାଣନ୍ତି କିଏ ଦେଖି ସରବେ ।

ଯେତେଦିନ ଥିବା ବଂଚି
ରଖିଥିବା କିଛି ସଂଚି ।
ଅସମୟେ କିଏ କା'ର
ଭବୁ ମନ ବାର ବାର ।
ସ୍ୱାର୍ଥେ ହେଲେ କେହି ବଶ
ରହୁଛିକି କାହା ଯଶ ।
କ୍ଷଣ ସ୍ଥାୟୀ ଏ ଜୀବନ
ଯିବକି ସଙ୍ଗରେ ଧନ ।
ରୋଗରେ ପଡ଼ିବ ଯେବେ
ହେଉଅଛି ଲୋଡ଼ା ସେବେ ।
କରିବାକୁ ଖର୍ଚ୍ଚ ମନ
ଅର୍ଜିଥିଲେ ସେହି ଧନ ।
ନିଜେ ରଖିଥିଲେ ସଂଚି
ମିଳିବ କି ସେବେ କଂଚି ।

ମରଣ ଦଉଡ଼ ବାନ୍ଧ ବେକରେ
ହୁଅନ୍ତି ଜନମ ଭବ ମଂଚରେ
ପ୍ରାଣୀ ସକଳ
ନ ଦେଖୁଛି କିଏ ତା ଅବିରଳ ।

ତଥାପି ମଣିଷ ସ୍ୱାର୍ଥ ଜାଲରେ
ହେଉଅଛି ଘାଂଟି ଅଜାଣତରେ
ନ ଭବେ ଲବେ
ସବୁ ଦେଖିଲେହେଁ ନିରତ ଭବେ ।

ଆପଣା ଗୁରୁରୁ ନ ଶିଖେ ଯିଏ
ମଣିଷରେ ଲେଖା ହୁଏ କି ସିଏ
ପଢ଼ ଲୋଭରେ
ଯାପଇ ଜୀବନ ଅତି ଦୁଃଖରେ ।

କଳ୍ପନା ଜଡ଼ିତ ହେଲେ ମଣିଷ
ହେତୁଥିବ ଦୁଃଖ ଭବେ ଅନିଶ
ଭବନ୍ତୁ ଜନେ
ଚିନ୍ତନ୍ତୁ ଈଶଙ୍କୁ ସଦା ଜୀବନେ ।

କେତେ ଚିନ୍ତା ଆସି ପ୍ରବେଶ ମନେ
'ନୀରବରେ ମାତେ ଚଂଦ୍ର ଦର୍ଶନେ
କୃଷ୍ଣ ଶୁକ୍ଳରେ
ଭବିନାହିଁ କେହି ଜୀବନେ ଥରେ ।

ସୃଷ୍ଟିର ବିଧାନ ରହସ୍ୟ ମୁଣି
ଅପରନ୍ତ ବୋଲି କହିବ ଗୁଣୀ
ପ୍ରକୃତି ରୀତି
ଯୁଗେ ଯୁଗେ ରହିଥିବ ଏ ନୀତି ।

ପ୍ରାଣ ପକ୍ଷୀ ଯେବେ ଯିବରେ ଉଡ଼
ଆସିବ କି ଆଉ କେବେ ବାହୁଡ଼
ଦେଖି ସରବେ
ନ ଆସଇ ଚିନ୍ତା କାହାରି ଲବେ ।

⊙ ⊙ ⊙

ଜାଣୁଅଛି ଲୋକ କିଏ କାହାର
ଭବ ନାହିଁ କେବେ ଆପଣା ପର ।
ଅଚେତ ଦିନକୁ ଏ ଭବ ଭୂଇଁ
ହସମୁଖ ଥିବ ଏ ମାଟି ତୁଇଁ ।
କେତେ ନାଟ ଲାଗିଅଛି ଏ ଭବେ
ପଳାଉଛି କିଏ ନଜାଣି ଲବେ ।
ନ ଦେଖାଅ କେହି ଧନ ଗରବ
ଲଗିଯିବ ପକ୍ଷୀ ଦେଖେ ମାନବ ।
ମଣିଷ ଜନମ ସବୁରି ଏକା
କରିଥିଲେ ମନ୍ଦ ଫିଙ୍ଗିବେ ଠେକା ।
ଠକାମିରେ କେତେ କାଳ ବିତାଇ
ବିବେକ ବିଚାର ବୁଦ୍ଧି ହରାଇ ।
ରହିଛି ପବନ ଦେହ ଭିତରେ
ଦେଖିପାରୁଛି କି କେହି ଭବରେ ।

ଖେଳୁଛି ପବନ ଚଉଦିଗରେ
ଦେଖିପାରୁଛି କେ ମହୀ ଭିତରେ ?
ଖେଳୁଛି ସର୍ବତ୍ର ଯଥା ପବନ
ଦେଖୁଛିକି କିଏ ସାରା ଭୁବନ ।
ଚଉଦିଗେ ତଥା ଅଦୃଶ୍ୟ ଈଶ
ଭ୍ରମୁଛନ୍ତି ଭୂ-ମଣ୍ଡଳେ ଅନିଶ ।
ଏତିକି ଶିଖିଲେ ମାନବ ତତି
ପାପ କର୍ମରେ କି ରଖନ୍ତେ ମତି ।
ବିଚାର କରନ୍ତେ ନ୍ୟାୟ ଅନ୍ୟାୟ
ଚାଲନ୍ତେ ପୁବାଟେ ଖୋଜି ଉପାୟ ।

⊙ ⊙ ⊙

କିଏ ବୋଲି ନିଏ କେତେ
ଦେଖନ୍ତ ଫେରିବା ମଣିଷ ଯେତେ
ବାଇମନରେ, ବୁଦ୍ଧି ଆ ଥିବେତ କେତେ ।

ଆପଣା ଘରେ ଜନମ
ହେଉଛନ୍ତ ନିତି କେତେ ଅଧମ
ବାଇମନରେ, କେ ବୁଝେ ସୃଷ୍ଟି ମରମ ।

⊙ ⊙ ⊙

ଆହେ ପ୍ରଭୁ ଜଗନ୍ନାଥ ତୁମେ ଅନାଥର ନାଥ
ଭଜୁଅଛି ଲୋକନାଥ ଭକତି ଭରେ
ଚୌଦିଗେ ଅନୀତି ଦେଖି ବିପଦ ଦେଉଛି ଲେଖି
ଭୟକୁ ସଦା ଉପେକ୍ଷି ଆର୍ତ୍ତ ସ୍ୱରରେ
ଦିନୁଁ ଦିନ ପଶି ଅନ୍ୟାୟ
କ୍ଷମତା ବଳେ ଦଳିତ ହେଲଣି ନ୍ୟାୟ ।

ପ୍ରପଞ୍ଚ ମଞ୍ଚରେ ଲାଗିଛି ଖେଳ
ଭବିବାକୁ ନାହିଁ କାହାର ବେଳ
ଅମୃତକୁ ଛାଡ଼ ପିଇ ଗରଳ
ମାଢ଼ ଆସୁଅଛି ଆଖି ପରଳ
ସ୍ୱାର୍ଥ ଲଗାମ ହାତରେ
ଥିବାରୁ ଚୌଦିଗେ ଲାଗିଅଛି ନାଟ
ନାହିଁ ନ୍ୟାୟ କା ମନରେ ।

କି ହେଲା କି ହେଲା ଏ କଳିଯୁଗ
ଶ୍ରେଷ୍ଠ ପ୍ରାଣ ପାଇ ମାନବପୁଗ
ବିବେକ ବିଚାର ବୁଦ୍ଧି ହରାଇ
ଆପଣା ବଡାଇ ସଦା ଦେଖାଇ
କହୁଛନ୍ତ କଥା ତତି
ନ୍ୟାୟ ପଥ ତେଜି ଅନ୍ୟାୟ ମାର୍ଗରେ
ଧାଉଁଅଛି ଲୋକ ମତି ।

ମଣିଷର ଆଶା ବଢୁଛି ଯେତେ
ଅନ୍ୟାୟରେ ମନ ଧାଉଁଛି ସେତେ
ସୃଷ୍ଟିର ବିଧାନେ ରହିଲେ ଲୟ
ଆପେ ଲୁଚିଯାନ୍ତା ଅନ୍ୟାୟ ଚୟ
ନକଲେ ମନକୁ ଥୟ
କାହା ପାଇଁ ଏତେ ବଢୁଅଛି ଲୋଭ
ଭବନ୍ତୁ ଲୋକ ନିଚୟ ।

କେତେଦିନ ପାଇଁ ଆସେ ମାନବ
ବଦଳାଇ ଦିଅ ନିଜ ସ୍ୱଭାବ
ଶୁଣିବ କାହିଁକି ନିନ୍ଦା ପଛରେ
ଯିବା ତ ପଳାଇ ଖାଲି ହାତରେ
ଆଣି ନାହିଁ କିଛି କିଏ
କାହା ଲାଗି ଏତେ ଲାଗୁଛି କନ୍ଦଳ
ଭବନ୍ତୁ ଶେଷେ ସଭିଏଁ ।

ମାନସ ପ୍ରଥମେ କରିଣ ଥୟ
ଭବନ୍ତୁ ଶେଷରେ ମାନବଚୟ
ଯେବେ ଓହ୍ଲାଇଲ ଭବ ମଂଚରେ
ଅଛିକି କଅଣ କାହା ହାତରେ
ଯିବା କେଉଁ ମୁହୂର୍ତ୍ତରେ
ଜାଣୁ ନାହିଁ କେହି ଜାଣିବ ନାହିଁରେ
ଦିନ ଗତି ଯତନରେ ।

⊙ ⊙ ⊙

ରହିଅଛି ଲାଗି ଜନମ ମରଣ
ନ ଦେଖୁଛି କିଏ ତାହା ଅନୁକ୍ଷଣ ।
ପ୍ରଭୁଅଛି ପାଳି କେବେ ବା କାହାର
ଦର୍ଶନ କରି ତା ନାହିଁ କା ବିଚାର ।

କରୁଥିଲେ ଚିନ୍ତା ପାପରୁ ଓହରି,
ସଳଖ ବାଟକୁ ଥାନ୍ତା ଅନୁସରି ।
ଚାଲୁଅଛି ଦାବୀ ବର୍ଷ ବର୍ଷ ଧରି
ତେରି କେ କରୁଛି କଉଶଳ କରି ।

ଚାଲିଛି ଦେଶରେ ଅନ୍ୟାୟ ଗଡଢ
ନିର୍ବାହର ସବୁ ଯାଉଛି ମହତ୍ତ୍ୱ ।
ମରଣର ଡୋରି ବେକରେ ପକାଇ
ଆସିଛୁ ପ୍ରପଞ୍ଚେ ଯିବୁରେ ପଳାଇ ।

ଶୂନ୍ୟ ହସ୍ତେ ଆସି ଯିବା ଶୂନ୍ୟ ହସ୍ତେ
ବିଧିବିଧାନ ଦେଖନ୍ତ ସମସ୍ତେ ।
ଶିଖୁନାହିଁ କିଛି ଏ ମୂଢ଼ ମଣିଷ
ବିବେକ ବିଚାର ପାଇଛି ଅନିଶ ।

କେଉଁଠାରୁ ଆସି କେଉଁଠାକୁ ଯିବା
ଏ ଚିନ୍ତା କାହାର ଦେଖି ଯେ ନଥିବା ।
ମାତ୍ର କାହାପାଇଁ ନଥାଇ ଯତନ
ହୋଇଅଛି ସାର ବଢାଇବା ଧନ ।

ପ୍ରୀତି କଷ୍ଟ ତ୍ୟାଗ ପଦ୍ଧ ପୁରଣ
ଶିଖାନ୍ତୁ ମାନବେ ଯିଏ ନ ଜାଣ ।
ଲୋଭେ ପଡ଼ ସଦା ଚାଲେ ଅବାଟରେ
ପରିଣାମ ତା'ର ନ ବିଚାରେ ଥରେ ।

ଆପଣା କୁଟୁମ୍ବ ଭିତରେ କାହାର
ସତ୍ତା ଅବା ପଟା ରହେ କି ବିଚାର ।
ସବୁ ଜାଣି ଜାଣି ପଶି ଅଧର୍ମରେ
କରୁଛି କରମ ନ ଚିନ୍ତ ମନରେ ।

ନ୍ୟାୟ ନାହିଁ କାହିଁ ଅନ୍ୟାୟ ପସର
ଚଉଦିରେ ବ୍ୟାପି କମ୍ପାଉଛି ଧର ।

କିଏସେ ମାନୁଛି ଦେଶ ସଂବିଧାନ
ପାଇଲେ କ୍ଷମତା କାଲ୍ ଧୁଏ କାନ ।

ଭେଟିଛି କଷଣ ଯେତେ ଜୀବନେ
ଦେଇଛି ପାସୋରି ଭବି ଶୟନେ ।

ପୂର୍ବଜନ୍ମ ପାପ ଭୋଗନ୍ତ ଜନେ
ସତ୍ୟ ଅବା ମିଥ୍ୟା ଚିନ୍ତ ଜୀବନେ ।

୦ ୦ ୦

ଲକ୍ଷ ମିଛ ଟଙ୍କା ଚାଲୁଅଛି ବଣ୍ଟା
ମୁଣ୍ଡରେ ପଶିଲେ ଖଞ୍ଚୁରି କଣ୍ଟା
କାହ୍ଲ ପାରିବ କି ଚିକିତ୍ସା କାର
ସେଥିଲାଗି ଆଜି ହୋମିଓ ସାର
ଋଣ ଗଲା ବଢ଼ ବଢ଼
କଳା ବେପାରୀଏ ଅରଜନ୍ତ ଧନ
ଗରୀବ ଗଲାଣି ସଢ଼ ।

ଅଭିଆଡ଼ ଝିଅ ରହନ୍ତ କେତେ
ସେ ହିସାବ ନାହିଁ କାହିଁ ଭରତେ
ବିଧାତା ଲିଖନ ନ୍ୟାୟର ସୃଷ୍ଟି
ପଡ଼ଛିକି କା'ର ଏପଟେ ଦୃଷ୍ଟି
ଛଟପଟ ଲୋକେ ଆଜି
ପାଇଲେ କ୍ଷମତା ମୁହଁ ଉପରକୁ
ଧନ୍ୟରେ ଶାସକ ଗଢ଼ି ।

ନିକିତି ରହିଛି ଦଇବ ହାତେ
କରିଲେ ଅନ୍ୟାୟ ପଡ଼ିବ ଗାତେ
ନିଜକୁ ଚତୁର ବୋଲେ ଯେ ଭବେ
ଦିନେ ସେ ଆତୁର ହେବେ ମାନବେ
ରଖିଥାନ୍ତୁ ସଦା ମନେ
କବି ନ ଦେଖିଲେ ଦେଖିବ ତ ରବି
ଏ ନୀତି ସଦା ଭୁବନେ ।

୦ ୦ ୦

ଆମୋଦେ ପ୍ରମୋଦେ କାଳକ୍ଷେପ କରି
ଯାଉଛି ସମୟ ସାର
ଅମନୁଷ୍ୟ ବୋଲି କହିବା ତାହାକୁ
ନାହିଁ ବୁଦ୍ଧି ଲବେ ତାର ।
ଦୁନିଆଁ ନୀତିକି ନିତି ଦରଶନ
କରୁଛି ସେହି ଅବଶ୍ୟ
ସୃଷ୍ଟି ଆଦେ ମତି ନ ଦେବାରୁ ମନ
ନ ଜାଣେ ସୃଷ୍ଟି ରହସ୍ୟ ।
ଯେତେ ଜୀବଜନ୍ତୁ ପଡ଼ୁଛି ଦୃଷ୍ଟିରେ
ଆଳସ୍ୟ କରି ବର୍ଜନ
ଯେ ଯାହା ଧନ୍ଦାରେ ରହୁଛନ୍ତ ବ୍ୟସ୍ତ
ଦେଖ ବୁଲାଇ ନୟନ ।
ବାୟା ଚଢେଇଟି ସାନଟିଏ ସିନା
ଆପଣା ବସାଟି ଗଢ଼
ଖର ବର୍ଷା ଶୀତ ନିଶ୍ଚିନ୍ତରେ ରହି
ଶ୍ରମରେ ଯାଉଛି ସଢ଼ ।

ନାରିକେଳ ଅବା ତାଳ ଗଛ ଖୋଜି
ଗଢୁଛି ବସାଟି ତା'ର
ନିରାପଦେ ରହି ଯାପୁଛି ସମୟ
ଅଛି ବିବେକ ବିଚାର ।
ପିମ୍ପୁଡ଼ିଟି ସିନା କ୍ଷୁଦ୍ର ଜୀବଟିଏ
ନ ମାନି ତାପ ଖରର
ଦଳ ଦଳ ହୋଇ ଲାଗିଛନ୍ତ ଧାଡ଼
ଆଣନ୍ତ ନିଜ ଆହାର ।
ଯା ନାମ ଧଇଲେ ପାଇବ ମୁକତି
ସେ ନାମ ତୁଣ୍ଡେ ନ ଧରି
ଅଯଥା ଭାବନା ମୁଣ୍ଡରେ ପୁରାଇ
ଦିନ ଯାଉଅଛି ସରି ।

ସଦାଚାର ଆଜି ଯାଉଛି ଉଭେଇ
ଗାଆଁ ଗାଆଁ ବିଭଜନ
କେତେ ହଣାହଣି କେତେ ଟଣାଟଣି
ଦେଖୁଛି ନିତି ଲୋଚନ ।

ଗଲେ ବିଦେଶୀଏ          ରହିଲେ ଦେଶୀଏ
ସମସ୍ତେ ଲୋଡନ୍ତି ଧନ
ଆଣିନାହୁଁ କିଛି          ନେବୁ ନାହିଁ କିଛି
ନ କରେ କିଏ ଚିନ୍ତନ ।

ସାଧୁତା ହିଁ ବଳ          ଦେଉଛି ଲୋକଙ୍କୁ
ଅସାଧୁତା ପଛେ ଭାଳି
ବିଚାରୁ ମଣିଷ          ଏକୁଟିଆ ବସି
କିଏସେ ବୋଳୁଛି କାଳି ।

୦ ୦ ୦

ଯାହା ନାମ ଦୟାନିଧି
ସେ ନାମ ନେବାର ନିରତ ବିଧି
ବାଇମନରେ, ଲଭିବା ଶେଷରେ ସିଦ୍ଧି ।

ଓଲଟ ପାଲଟ ସୃଷ୍ଟି
ଏଥିପ୍ରତି କା'ର ପଡେକି ଦୃଷ୍ଟି
ବାଇମନରେ, ଦେଖୁଛୁ ଅଲୋଡା ବୃଷ୍ଟି ।

ନିରଞ୍ଜନ ଯା'ର ନାମ
ଦେଖୁଛନ୍ତି ସବୁ ଲୋକର କାମ
ବାଇମନରେ, କେବେହେଁ ନାହିଁ ବିଶ୍ରାମ ।

ମଣିଷ ଜନମ ପାଇ
ବୃଥା ଭବନାରେ କାଳ ବିତାଇ
ବାଇମନରେ, ବିବେକ ବିଚାର ଥାଇ ।

ଦିନୁ ଦିନୁ ଆୟୁ କ୍ଷୟ
ଦେଖୁନାହିଁ କିରେ ତୋ ନେତ୍ରଦ୍ୱୟ
ବାଇମନରେ, ନ ରଖିବୁ ମନେ ଭୟ ।

ଜନମ ମରଣ ନୀତି
ନ ଦେଖୁଛି କିଏ ଦୁନିଆଁ ରୀତି
ବାଇମନରେ, ନ ରଖୁ ସ୍ୱାର୍ଥରେ ପ୍ରୀତି ।

ଚିନ୍ତୁଥିବୁ ଥରେ ଥରେ
କିଏସେ କାହାର ଏହି ଭବରେ
ବାଇମନରେ, ଫେରିବା ଖାଲି ହାତରେ ।

ଗଡି ଗଡି ମିଛ ସତ
କଟୁଛି ସମୟ ଅନବରତ
ବାଇମନରେ, ନଭରି କେ ଉପିଷ୍ୟାତ ।

ଚିତ୍ତ ଯେବେ ଥିବ ଶୁଦ୍ଧି
ଆପେ ଆପେ ଆସି ଯିବରେ ବୁଦ୍ଧି
ବାଇମନରେ, ଛାଡବାକୁ ମନୁଁ ଋଦ୍ଧି ।

ପଦ କ୍ଷମତା ମୋହରେ
ଛଟପଟ ଯଥା ମୀନ ଜାଲରେ
ବାଇମନରେ, ହେଉଛି ଲୋକେ ଉତ୍ସବେ ।

ବନ୍ଧିଲେ ପାପ ହୃଦରେ
ଯେସନ ଲୁହାରେ କଳଙ୍କ ଧରେ
ବାଇମନରେ, ତେସନ ପରିମାଣରେ ।

ଲୋଭକୁ କରି ଦମନ
ଧରମେ ରଖିଲେ ସନ୍ତତ ମନ
ବାଇମନରେ, ସୁଖରେ ଯିବ ଜୀବନ ।

କ୍ଷଣସ୍ଥାୟୀ ଏ ଜୀବନ
ନ ଦେଖୁଛି କିରେ କାହା ନୟନ
ବାଇମନରେ, ଜାଣିବେ କଲେ ଚିନ୍ତନ ।

ଲଭ ମହତକୁ ଡରି
କରମ କରିବ ଧର୍ମ ଆଚରି
ବାଇମନରେ, ସ୍ୱାର୍ଥକୁ ଦମନ କରି ।

ଆପଣା ସୁଖ ନିମିତ୍ତ
ବଳୁଛି ନିରତ ଲୋଭେ ଚିତ୍ତ
ବାଇମନରେ, ଯେନ ତେନ ଅର୍ଜି ବିତ୍ତ ।

ମଦ ଭାଟି ଘରେ ଘରେ
ନ ଦେଖୁଛି କିଏ ଗ୍ରାମେ ସହରେ
ବାଇମନରେ, ଉଚ୍ଛନ୍ନ ହେଲେଣି ନରେ ।

କି ହେବ ଏ ଦେଶ ଦଶା
ନ କଲେ ଚିନ୍ତନ ଲୋକ ସହସା
ବାଇମନରେ, ହେବା ସିନା ଲୋକହସା ।

ମହାତ୍ମାଙ୍କ ଉପଦେଶ
ନାହିଁ କେଉଁଠାରେ ତହିଁରୁ ଲେଶ
ବାଇମନରେ, ନିମକ ହାରାମ ଦେଶ ।

ବର୍ଷା ଦିନେ ବେଙ୍ଗ ରଡ଼
ଶୁଣିଥିବେ ଲୋକ ଘଡ଼କି ଘଡ଼
ବାଇମନରେ, କି ଲାଭ ଦେଖାଇ ଛଡ଼ ।

ପଇଡ ଭିତରେ ପାଣି
କିପରି ଆସୁଛି ତିଳେ ନ ଜାଣି
ବାଇମନରେ, ତୁଚ୍ଛାକୁ ଢାଳନ୍ତ ପାଣି ।

ଆଲୁଅ ଅନ୍ଧାର ନୀତି
ନ ଦେଖୁଛି କିଏ ଏ କଥା ନିତି
ବାଇମନରେ, ଅଧୁ ମନେ ପ୍ରଭୁ ପ୍ରୀତି ।

ବିଚାର ବୁଦ୍ଧି ବିବେକ
ନରଖି ମଣିଷ କାହାର ଚେକ
ବାଇମନରେ, ଏ ଦେଶେ ହୋଇଣ ଏକ ।

ପୂଜାରୀ ହୋଇ ସ୍ୱାର୍ଥର
ମହତ୍ତ୍ୱ ବୁଡାଇ ଦେଲେ ଧର୍ମର
ବାଇମନରେ, ଇଜ୍ଜତ ନାହିଁ ଲୋକର ।

ନ ରହିଁ ବାଟ ଅବାଟ
ଚଳିଲେ ବସିବ ପିଠିରେ ହାଟ
ବାଇମନରେ, ସର୍ବତ୍ର ରହିଛି ଫାଟ ।

⊙ ⊙ ⊙

ମଣିଷପଣ ଥାଇ ସାହସ କରି
କରମ କରିବ ମନେ ନଡରି ।
ଅବାଟେ ନପଶି କରିବ କର୍ମ
ଯୁଗେ ଯୁଗେ ଏକା ଲୋକ ଧରମ ।
ନ୍ୟାୟକୁ ନଛୁଡ କେହି ଜୀବନେ
ବିଧିର ବିଧାନ ପଡୁ ଲୋଚନେ ।
ଉତ୍ତମ ଚରିତ୍ର ଲୋକର ନିଧି
ସଂଯମ ରଖିବା ନିରତ ବିଧି ।
ଧର୍ମ ରଥେ ଚଢ଼ କରରେ ଯୁଦ୍ଧ
ଦେଇଛନ୍ତ ଲେଖି ସର୍ବତ୍ର ବୁଧ ।
ବ୍ରହ୍ମାଣ୍ଡ କରତା ପରମେଶ୍ୱର
ଭକ୍ତି ଭରେ ନମି ସଦା ପୟର ।
ନଜାଣି କରିବା ପାପ ଜୀବନେ
ତୁମେ ଏକା ପ୍ରଭୁ ତାର ଖଣ୍ଡନେ ।
ଦୟାମୟ ବୋଲି ଡାକେ ଜଗତ
ରଖିଛି ତା ହୃଦେ ଅନବରତ ।
କେ ବୁଝି ପାରୁଛି ତୁମ ମହିମା
ତୁଚ୍ଛାକୁ ଦେଖାନ୍ତ ସଦା ଗରିମା ।
ଅଗଣିତ ଜୀବ ମଧ୍ୟେ ମଣିଷ
ପାଇଛି ଜୀବନ ଶ୍ରେଷ୍ଠ ଅନିଶ ।
ବିବେକ ବିଚାର ବୁଦ୍ଧି କି ପାଇ
ଅସଂଯତ ସଦା ତାଙ୍କୁ ହରଇ ।
ନ୍ୟାୟ ପନ୍ଥା ଭବେ ସୃଷ୍ଟିର ଧର୍ମ
ନକର ନକର ଅନ୍ୟାୟ କର୍ମ ।

⊙ ⊙ ⊙

କାଳ ସର୍ପ ରହି ଲୋକ ପଛରେ
କେବେ ମାରିଦେବ ଅଜାଣତରେ
ଖଟାଇ ବିବେକ ବିଚାର ବୁଦ୍ଧି
କରିଲେ ହେଁ କେତେ ହୃଦୟ ଶୁଦ୍ଧି
ରାବଣ ପରି ଗରବ
କିଏ ନା ଶୁଣିଛି କିଏବା ପଢ଼ିଛି
ନ କରୁ କେବେ ମାନବ ।

ଚୌଦିଗେ ଦେଖନ୍ତୁ ଈଶ୍ୱରମୟ
ଯାହାଙ୍କୁ ଭଜିଲେ ତୁଟିବ ଭୟ
ଯା ନାମ ଧଇଲେ ପାଇବ ମୁକ୍ତି
ନହୁଅ ନାସ୍ତିକ ନକର ଯୁକ୍ତି
ପାପ ପୁଣ୍ୟର ବିଚାର
ନ କରୁଥିଲେ ସେ ଦିନ ରାତି ରହି
ଅନ୍ଧାର ଥାନ୍ତା ସଂସାର ।

⊙ ⊙ ⊙

ପାଞ୍ଚଶ ବର୍ଷରୁ ଅଧିକ
ଥାଇ ପର ଅଧୀନ,
ଅରାଷ୍ଟ୍ର ସୁତାର ବଳରେ
ହେଲା ଦେଶ ସ୍ୱାଧୀନ ।

ଭରତ ମାତାର କୋଳରେ
ଜନ୍ମି ସୁଯୋଗ୍ୟ ପୁତ୍ର,
ଶିଖାଇଲେ ସତ୍ୟ ଅହିଂସା
ଦେଶ ସାର ଏ ସୂତ୍ର ।

ଅଷ୍ଟ ଦଶ ଅଣସ୍ତରୀର
ଅକ୍ଟୋବର ଦୁଇରେ
ଜାତ ହୋଇଥିଲେ ଗାନ୍ଧିଜୀ
ପୋର ବନ୍ଦରରେ ।

କା ବା ପୁତୁଳୀଙ୍କ ଔରସୁ
ଜାତ ଗଜକୋଟରେ
ପିତ୍ରାର୍ଜିତ ଧନ ନଥିଲା
କା ବା ମୃତ୍ୟୁ କାଳରେ ।

⊙ ⊙ ⊙

ଯେବେ ପ୍ରାଣପକ୍ଷୀ ଯାଉଛି ଉଡ
ଆସୁଛିକି କେବେ ଆଉ ବାହୁଡ
ହାତ ଥିଲା ଖାଲି ଆସିଲାବେଳେ
ଏବେ ସେହିପରି ଫେରିଲାବେଳେ
ଏହି ତ ସୃଷ୍ଟିର ନୀତି
କିଏ ନ ଦେଖୁଛି ଜୀଇଁବା ବେଳେ
ବିଧିର ବିଧାନ ରୀତି ।

ଯୁଗ ଯୁଗ ଧରି ଏହି ନିୟମ
ଘଟୁନାହିଁ କେବେ ତା ବ୍ୟତିକ୍ରମ
ଦେଖି ଆସୁଛନ୍ତି ସରବେ ଭବେ
ଶିଖିଛିକି କିଏ ତହିଁରୁ ଲବେ
କାହିଁକି ପଡ ଲୋଭରେ
ସୃଷ୍ଟିର ନିୟମ ଦେଖି ଦେଖି ଲୋକେ
ଚଳନ୍ତୁ ଏହି ଭବରେ ।

⊙ ⊙ ⊙

ଜନ୍ମ ପରେ ମୃତ୍ୟୁ ମୃତ୍ୟୁ ପରେ ଜନ୍ମ
ରହିଅଛି ଲାଗି ଅନବରତ
ଅଧର୍ମକୁ ଏଡ ଧର୍ମ ବାଟ ଧରି
ଫେରିଯିବା ପାଇଁ ହୁଅ ଜାଗ୍ରତ ।

ପାପାର୍ଜିତ ଧନ ରହିବ ନାହିଁରେ
ପକ୍ଷୀ ଲାଗି ଦିନେ ଉଡ ଯିବରେ
ବିଶ୍ୱ କର୍ତ୍ତାଙ୍କର ନିୟମ ଲଙ୍ଘନେ
ପାଇବା ତା ଦଣ୍ଡ ଅବିଳମ୍ବରେ ।

କଳ୍ପନା ମୂଳରେ କାଳସର୍ପ ଥାଇ
ଖେଳେ ଖେଳେ ଯେବେ ଦେଉଛି ମାରି
ସଙ୍ଗେ ସଙ୍ଗେ ପ୍ରାଣ ବାୟୁ ଯାଏ ଉଡ
ଆସୁଥାନ୍ତା ବେଳେ ବେଳ ବାହୁଡ ।

ମୋ ଦୁଃଖ କାହାଣୀ ଶୁଣୁଛି କିଏ ଲୋ
ମୋ ଦୁଃଖ କାହାଣୀ କିଏ
ଶୁଣନ୍ତ ତୁହାରି ମୋ ପ୍ରଭୁ ସିନା ଲୋ
ପ୍ରାଣ ଦେଇଛନ୍ତ ଯିଏ ଲୋ ।

⊙ ⊙ ⊙

ଶୁଣହେ ଦି'ପଦ ମୋ ଭାଇ ଭଉଣୀ
ପାଞ୍ଚ ଲକ୍ଷ କୋଟି ଦେଶ ହେଲା ଋଣୀ ।

ବିଦେଶୀ ସର୍କାର ଦେଢଶ ବରଷ
କରିଲେ ଶାସନ ଭରତ ବରଷ ।

ଦୁଇବିଂଶ ସାତ ଏବର ଶାସନ
ପାଞ୍ଚ ଲକ୍ଷ କୋଟି ଋଣ ପରିମାଣ ।

ଜନ ଗଣନାରୁ ଜାଣୁଛନ୍ତ ଲୋକେ
ରହିଥାନ୍ତୁ କିଏ ଉପାସେ ବା ଭୋକେ ।

ଅଠାଅଶି କୋଟି ପଡୁଅଛି ଭଣା
ନ ହେଲା କିଏ ଦୁଢାକୁରେ ବଣା ।

ଆମ ଜନସଂଖ୍ୟା ଊଣିଶି ସାଲର
ଊଣିଶି କୋଟି ଯେ ଥିଲା ଭରତର ।

ତେବେ ଦରଦାମ ବଢିଲା କାହିଁକି
ପଚାରୁଛି ମୁହିଁ ଶାସକ ଖଣ୍ଡିଙ୍କି ।

କିଛି ନଥାଇ ଯେ ହେଲା କୋଟିପତି
କିପରି ସେ ହେଲା କହୁ ଅଧିପତି ।
ଠକାଠକି କରି ଅର୍ଜିଲେ ଏ ଧନ
ଟିକେ ଭୁଲ ନାହିଁ ବୁଝନ୍ତୁ ସଜ୍ଜନ ।
ପାଞ୍ଚ ବରଷରେ ଥରେ ଆମ ପାଳି
ଅର୍ଥ ଧରି ହାତେ ମୁହେଁ ବୋଳୁ କାଳି ।

⊙ ⊙ ⊙

ସୁକୃତ ପୂର୍ବ ଜନ୍ମର ଭଜନ୍ତି ଥିଲେ ଈଶ୍ବର
ଚେତନ୍ତୁ ଲୋକ ନିକର ଧର୍ମ ଅଧର୍ମ
ଜୀବ ଶ୍ରେଷ୍ଠ ଏ ମଣିଷ ସୁପଥେ ଯାଉ ଅନିଶ
ପରଖି ଅମୃତ ବିଷ କରୁ ସୁକର୍ମ
ଆସୁ ଫେରୁ ଖାଲି ହାତରେ
କାହାପାଇଁ ଏତେ ଲୋଭ ବିଚାରୁ ଥରେ ।
ଧନ ଖାଇ ଲୋଭ ଧନେ କରିବା ଦେଖନ୍ତୁ ଜନେ
ଚିନ୍ତାର ଅଭାବ ମନେ ଲୋକ ଏଭଳି
ବ୍ୟାପିଛନ୍ତ ପାପ ଭବେ ନ ବିଚାରି ହୃଦେ ଲବେ
ମାତି ସଦା ଅବାସ୍ତବେ ସ୍ବାର୍ଥକୁ ବଳି
ଦେବାପାଇଁ ଏ କଳି ଯୁଗେ
ବିଚାରନ୍ତୁ ଯେଝା ମନେ ମାନବ ପୁଗେ (ସମୂହ) ।

⊙ ⊙ ⊙

ଧିକରେ ମଣିଷ ଧିକ ବିଚାର
କେଉଁଆଡେ ଗଲା ବୁଦ୍ଧି କାହାର ।
ବିବେକର ଡାକ ନ ପଶେ କାନେ
ନ ପଡ଼ଲା ଦୃଷ୍ଟି ବିଧି ବିଧାନେ ।
ସ୍ବାର୍ଥରେ ମାତିଲୁ ସଦା
ଦେଶ ଲାଗି କେବେ ନାହିଁ ଶରଧା ।
କରିବୁ କଅଣ ବଢାଇ ବିତ୍ତ
ଭାବିଲୁ କି କେବେ ତୋହର ଚିତ୍ତ ।
ନିତି ଯୋ ଦେଖୁଛୁ ଚଉଦିଗରେ
ଭାବିଲୁ କି କେବେ ତୋର ମନରେ ।
କାହାପାଇଁ ଜମା କରୁଛୁ ଏତେ
ନ ଚିନ୍ତିଲୁ କେବେ ନେବୁ ତୁ କେତେ ।
ଯାହାକୁ ଭାବୁଛୁ ନିଜ ତୋହର
ତା ଇଚ୍ଛା କରିବ କାର୍ଯ୍ୟ ନିକର ।
କିଏ ଶୁଣୁଅଛି କାହାର ଦୁଃଖ
ଦେଖୁଛି ସେ ସଦା ଆପଣା ସୁଖ ।
ଜନମ ମରଣ ନ ଦେଖେ କିଏ
ସେଥିପ୍ରତି ଲୟ କିଏ ନ ଦିଏ ।
ବୁଝୁଛି କି କିଏ କାହାର ଛନ୍ଦ
ଧନ ଅରଜନେ ମନ ଆନନ୍ଦ ।
ଦେଖନ୍ତ ସରବେ ଲୀଳା ଭବର
କିଂଚିତ ଭାବନା ନାହିଁ ଲୋକର ।
ଯେତିକି ବାର୍ଦ୍ଧକ୍ୟ ଯାଉଛି ବଢ
ସେତିକି ମଣିଷ ଲୋଭରେ ପଡ଼ ।
ଛାଡ଼ଦେଇ ମନୁଁ ଧର୍ମ ଅଧର୍ମ
କରୁଅଛି କାର୍ଯ୍ୟ ସଦା ଅକର୍ମ ।
ଦେଖିଲେହେଁ ନିତି ସୃଷ୍ଟି ବିଧାନ
ତହିଁକି ନଯାଏ ନୟନ କାନ
ଆପଣା ପାଇଁ
କରୁଛି କରମ ଯୁଗକୁ ଚାହିଁ ।
ଉଠାଣି ଗଡ଼ାଣି ଦେଖି ବାଟରେ
ନ ଭବନ୍ତ କେହି ଜୀବନେ ଥରେ
ଏଣେ ପାପରେ
ଉଠିବା ପଡ଼ିବା ପଡେ ନେତ୍ରରେ ।
ପରର ଅର୍ଥରେ ଚଳେ ଶାସନ
କହିବ ଅବଶ୍ୟ ସଦା ଭୁବନ
ବେଖାତିରିରେ
ଚାଲିଛି ଖରଚ ସଦା ମହୀରେ ।

⊙ ⊙ ⊙

ଧିକ ଧିକ ମଣିଷରେ ଧିକ ତୋ ଜୀବନ ।
ଅନ୍ୟାୟେ ପ୍ରବେଶି କରୁ ଅକର୍ମ ସାଧନ ।

ଶୁଣୁଛୁ ପ୍ରବୃତ୍ତି କଥା ନିବୃତ୍ତିକି ଛାଡ଼
ଭଲ କଥା ଶୁଣାଇଲେ ଦେଖାଉଛୁ ବାଡ଼ ।

ବିଧିର ବିଧାନ ଯେତେ ଦେଖୁଅଛୁ ନିତି
ତଥାପି ଆଶ୍ରୟ ଦେଉ ସତତ ଅନୀତି ।

ତୋ ବିନା କାହାର ନାହିଁ ବିବେକ ବା ବୁଦ୍ଧି
ଭବିଲୁକି କରିବାକୁ କେବେ ଚିତ୍ତ ଶୁଦ୍ଧି ।

ନିବୃତ୍ତିକି ତଡ଼ଦେଇ ପ୍ରବୃତ୍ତି ବଚନେ
ଶୁଣୁଅଛୁ ଅପବାଦ କିପରି ତୋ ମନେ ।

ପାପ ପୁଣ୍ୟ ସଦା ବିଚାର କରି
ଯାଉ ଏ ଜୀବନ ସଂସାରୁ ତରି ।

ପାପରେ ପ୍ରବୃତ୍ତି ବଢ଼ିବ ଯେତେ
ପର ଜନ୍ମେ ଦଣ୍ଡ ପାଇବ ସେତେ ।

ଏଣ୍ଟିପୋକଟିର ଜନ୍ମ ମରଣ
ଦେଖି ଚେତନ୍ତକି ମାନବଗଣ ।

ପାପ କରମରେ ଯାହାର ମନ
ନ ଦିଅ ତାହାକୁ କେବେ ଦର୍ଶନ ।

ଯା ମନ ରହିଛି ପକ୍ଷପାତରେ
ଅମନୁଷ୍ୟ ସେହି ଏହି ଭବରେ ।

୦ ୦ ୦

ଲୋଭକୁ ଦମନ କରି ଅନିଶ
ଚଳିଯାଅ ଭବୁଁ ସୁଖେ ମଣିଷ
ନ ଶୁଣ ନିନ୍ଦା ପଛରେ
ପାପ ପୁଣ୍ୟ ଚିନ୍ତା କରୁଅଛି ଯିଏ
ସୁଖୀ ସେ ପର ଜନ୍ମରେ ।୧।

ହେଉଛି କି କିଛି ମରଣେ ଲୋଡ଼ା
ଛ ଖଣ୍ଡି ବାଉଁଶେ ହେଉଛୁ ପୋଡ଼ା
ଜନ୍ମବେଳେ ଶୂନ୍ୟ ପାଣି (ହାତ)
ଫେରିବା ବେଳରେ ରହୁଛି ତଦ୍ରୂପ
ସରବେ ଅନ୍ତ ଜାଣି ।୨।

ଏଣ୍ଟିପୋକଟିର ଜନ୍ମ ମରଣ
ଦେଖନ୍ତୁ ଶିଖନ୍ତୁ ମଣିଷଗଣ
ଜୀବ ମାତ୍ରେ ଏକା ଦଶା
ନ ଜାଣିଛି ଯିଏ ତା ପୋଷା ବିଷୟ
ଜାଣନ୍ତୁ ଯାଇ ନିକଷା (ନିକଟକୁ) ।୩।

ପୂର୍ବ ଜନମରେ କରିଛ ଯାହା
ଭୋଗିବ ମଣିଷ ଅବଶ୍ୟ ତାହା
କାହାକୁ ନିନ୍ଦା ନକରି
ଚଳିବା ଜୀବନେ ସୁଖ ଦୁଃଖ ଭୋଗି
ନିଜ କର୍ମ ଅନୁସରି ।୪।

ବୁଲୁଛି ପବନ ଚଉଦିଗରେ
ପୁଣି ରହିଅଛି ଜୀବ ଦେହରେ
ଦେଖିପାରୁ ନାହିଁ କେହି
ଯୁଗ ଯୁଗ ଧରି ସୃଷ୍ଟିର ବିଧାନ
ଜାଣି ପାରୁଛିକି ଦେହୀ ।୫।

— ସମାପ୍ତ —